

# ବାନାମ୍ବର ଆଚାର୍ଯ୍ୟ

ବିଚିତ୍ରାନନ୍ଦ ମହାନ୍ତି

Digitized by srujanika@gmail.com

# ବାନାମ୍ବର ଆଗ୍ର୍ଯ୍ୟ

ଲେଖକ
ପ୍ରଫେସର ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି



ଓଡ଼ିଶା ସାହିତ୍ୟ ଏକାଡେମୀ

Digitized by srujanika@gmail.com

# ବାନାମ୍ବର ଆଚାର୍ଯ୍ୟ

ଲେଖକ :
**ପ୍ରଫେସର ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି**
ନିର୍ମଳକୁଟିର, ବଙ୍ଗାଳିସାହି, କଟକ-୯

ପ୍ରକାଶକ :
**ଓଡ଼ିଶା ସାହିତ୍ୟ ଏକାଡେମୀ**
ଭୁବନେଶ୍ୱର-୭୫୧୦୧୪

ମୁଦ୍ରଣକାଳ : ୨୦୦୦

ମୁଦ୍ରଣ :
**ସଂସାର ପ୍ରେସ, କଟକ-୯**

ମୂଲ୍ୟ : **୪୫.୦୦ ଟଙ୍କା ମାତ୍ର**

# BANAMBRA ACHARYA

Written by :
**Professor Dr. Bichitrananda Mohanty**
Nirmalkutir, Bangalisahi, Cuttack-9

Published by :
**Orissa Sahitya Academi**
Bhubaneswar-751014

First Edition : 2000

Printed at :
**Sansar Press, Cuttack-9**

Price : **Rupees Forty five only**

ISBN 81-7586-045-6

Digitized by srujanika@gmail.com

# ଅଗ୍ରଲେଖ

ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଜଣେ ସାରସ୍ୱତ କର୍ମଯୋଗୀ ଭାବରେ ଓଡ଼ିଶାର ସର୍ବତ୍ର ବେଶ୍ ପରିଚିତ । ସଂସ୍କୃତ ସାଙ୍ଗକୁ ପ୍ରାଚୀନ ଓଡିଆ ସାହିତ୍ୟରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ଓ ଅନୁସନ୍ଧିତ୍ସା ଆମ ସଭିଙ୍କ ସକାଶେ ପ୍ରେରଣାର ସ୍ରୋତ । କବିତ୍ୱ ଓ ଧୀମତ୍ତାରେ ସିଏ କିପରି ପାରଙ୍ଗମ ଥିଲେ, ତାହା ତାଙ୍କ ଛାତ୍ର ଛାତ୍ରୀଙ୍କ ପାଖରୁ ହିଁ ଶୁଣିବାକୁ ମିଳେ । କେନ୍ଦୁଝର-ରାଜସଭାର ପଣ୍ଡିତଠାରୁ ଖ୍ରୀଷ୍ଟ ମହାବିଦ୍ୟାଳୟ କଟକଠାରେ ଅଧ୍ୟାପନା ସବୁଠି ତାଙ୍କ ଶାସ୍ତ୍ର, ପୁରାଣର ବିଦ୍‌ବତ୍ତା ଓଡ଼ିଶାର ସୁଧୀଜନଙ୍କୁ ମନ୍ତ୍ରମୁଗ୍ଧ କରୁଥିଲା କେବଳ ସେତିକି ନୁହେଁ, ଗଭୀର ମାନବିକତାରେ ଉଦ୍‌ବୁଦ୍ଧ ଏହି ମହାନ୍ ସାଧକ ଦରିଦ୍ର ମେଧାବୀ ପିଲାଙ୍କୁ ଦରମାଛାଡ଼ରେ ମଧ୍ୟ ସାହାଯ୍ୟ କରୁଥିଲେ । ସାହିତ୍ୟ ସାଙ୍ଗକୁ ପ୍ରତ୍ନତତ୍ତ୍ୱ, ସଂଗୀତ, ଇତିହାସ, ଶିଳାଲେଖ, ତାମ୍ରଲେଖ ପ୍ରଭୃତିର ଶାସ୍ତ୍ରାନୁଶୀଳନରେ ତାଙ୍କ ଧୁରନ୍ଧରପଣିଆକୁ ଏ ଜାତି କଦାଚିତ୍ ଭୁଲିବାର ନୁହେଁ । ତାଙ୍କ ସଂପାଦନାକୃତ ଗ୍ରନ୍ଥମାନଙ୍କ ମଧ୍ୟରେ ଭକ୍ତ ବିନୋଦ, ଅମ୍ବିକା ବିଳାସ, ରସ ମୁକ୍ତାବଳୀ, ସହୃଦୟାନନ୍ଦ, ରାମଗାଥା ଓ ବଉଳାଚରିତ ଅନ୍ୟତମ । ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି'ର ବିଶେଷ ଛାନ୍ଦ, ଯାହାକି ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାର ପୃଷ୍ଠଭୂମିରେ ଲିଖିତ ଯଥା- "ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ, ବାତ୍ସଲ୍ୟ ମମତା ଘେନି ଭାଳୁଛନ୍ତି ମାତ— କଳାମାଣିକରେ"ର ସଂସ୍କୃତ ଅନୁବାଦ "କଦା ଦିନାନ୍ତେ ବିପିନଂ ଗତେ ହରୌ, ବିଳମ୍ବୟତ୍ୟେବ ନିତାନ୍ତ ଦୁଃଖିତା, ବିଭାବୟନ୍ତୀ ସୁତବତ୍ସଳା ସୁତଂ, ବିଳାପମମ୍ବ କୁରୁତେ ବିଶଙ୍କିତା"ର ଚମତ୍କାରିତାକୁ ମାନସିକ ସ୍ତରରେ ବିଶେଷ ଭାବରେ ଅନୁଭବ କରିହୁଏ । ମୋ ଭଳି ଓଡ଼ିଶାର ପରବର୍ତ୍ତୀ ପିଢ଼ିର ବହୁ ବ୍ୟକ୍ତି ତାଙ୍କ ସହିତ ବ୍ୟକ୍ତିଗତ ସଂସ୍ପର୍ଶରେ ଆସି ପାରିନାହାନ୍ତି ତେବେ ଏ ସବୁ ଦେଖି ପଢ଼ି ତାଙ୍କ ସଂପର୍କରେ ଏକ ଭାବମୂର୍ତ୍ତି ଆକଳନର ପ୍ରୟାସ ମନ ଭିତରେ ଜାହିର୍ କରି ହୁଏ ।

ସିଏ ୧୯୬୮ ମସିହାରେ ବିଶ୍ୱବିଦ୍ୟାଳୟରୁ ଅବସର ନେଇଥିଲେ ତଥା ତାର ଦଶ ବର୍ଷ ପରେ ୭୮ ମସିହାରେ ଇହଲୀଳା ତ୍ୟାଗ କରିଥିଲେ । ଜଣେ ସରଳ ନିରାଡ଼ମ୍ବର ବ୍ୟକ୍ତିମାନସ ଅବଶେଷରେ ଗୋପ ଗୀତା ଆବୃତ୍ତିର ଅମୃତ ସନ୍ଧାନୀ ମୁହୂର୍ତ୍ତରେ ଏଇ ପୃଥିବୀରୁ

Digitized by srujanika@gmail.com

ଚିର ବିଦାୟ ଘେନିଥିଲେ ସୁଦ୍ଧା ତାଙ୍କ ପ୍ରତିଭାମୟ [illegible] ଆଜି ବି ଆମ ଆଗରେ ଦେଦୀପ୍ୟମାନ ।

ସାହିତ୍ୟ ଏକାଡେମୀ ଏହି ମହାନ୍ ବ୍ୟକ୍ତିଙ୍କର ମନୋଗ୍ରାଫ୍‌ଟିକୁ ପ୍ରଫେସର ଡକ୍ଟର ବିଚିତ୍ରାନନ୍ଦ ମହାନ୍ତିଙ୍କ ଶୁଦ୍ଧ ପ୍ରୟାସ ହେତୁ ଆଜି ତା'ଗି ପାଠକମାନଙ୍କୁ ସମର୍ପଣ କରି ପାରିବାର କ୍ଷମତା ହାସଲ କରିଛି । ସେମାନେ ଏହାର କିଂଚିତ୍ ସ୍ୱାଦ ଉପଭୋଗ କରି ପାରିଲେ ଆମର ତଥା ଲେଖକଙ୍କର ଶ୍ରମ ସାର୍ଥକ ହେଲା ବୋଲି ବୁଝିବାକୁ ପଡ଼ିବ । କିମଧିକମ୍ ।

**ଅଶ୍ୱିନୀ କୁମାର ମିଶ୍ର**

୨୧.୧୦.୨୦୦୦ — ସଂପାଦକ, ଓଡ଼ିଶା ସାହିତ୍ୟ ଏକାଡେମୀ

Digitized by srujanika@gmail.com

# ଅନୁକ୍ରମ





Digitized by srujanika@gmail.com

# ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ

ଉତ୍କଳ ଜାହ୍ନବୀ ପୁଣ୍ୟତୋୟା ମହାନଦୀର କନ୍ୟା କାଠଯୋଡ଼ି ନରାଜଠାରୁ ବାହାରି ମୁକାମେଶ୍ୱର ସନ୍ନିକଟରେ କୁଆଖାଇ ନାମରେ କନ୍ୟାଟିକୁ ପ୍ରବାହିତ ହେବାକୁ ଛାଡ଼ି କଟକର କୂଳେ କୂଳେ ପ୍ରବାହିତା । ପୁଣି କଟକରେ ସୀମା ଲଙ୍ଘନ ପୂର୍ବରୁ ଦ୍ୱିଧା ବିଭକ୍ତ ହୋଇ ବିରୁଆଖାଇ ଓ ଶିତୁଆ ନାମରେ ଆଉ ଏକ ଶାଖା ବିସ୍ତାର କରି ମଧ୍ୟବର୍ତ୍ତୀ ଦୋଆବ ଅଞ୍ଚଳ ବୟାଳିଶ ମୌଜା ସୃଷ୍ଟି କରିଅଛି । ଏହି ବୟାଳିଶ ମୌଜାରେ ବେଣ୍ଟକାର ନାମକ ଏକ ଗ୍ରାମପଞ୍ଚାୟତ ଅବସ୍ଥିତ । ଏହି ବେଣ୍ଟକାରର ପ୍ରାଚୀନ ନାମ ବେଣ୍ଟକାରପୁର (ପାଟଣା)— ଏକଲବ୍ୟର ସାଧନାସ୍ଥଳ । କାଠଯୋଡ଼ି ନଦୀର ଅପରପାର୍ଶ୍ୱରେ ପରମହଂସନାଥ ଶିବଲିଙ୍ଗ ପୂଜା ପାଉଛନ୍ତି । କିମ୍ବଦନ୍ତୀ ଅଛି ଯେ ଶବରରାଜ ବିଶ୍ୱାବସୁ ଏହିଠାରେ ନୀଳମାଧବଙ୍କୁ ପୂଜା କରୁଥିଲେ । ଏହି ଦେବତାଙ୍କ ପାର୍ଶ୍ୱବର୍ତ୍ତୀ ଏକ ସ୍ଥାନକୁ ଶବରପଲ୍ଲୀ ଭାବରେ ଚିହ୍ନିତ କରାଯାଏ । ସେଠାରେ ମୁଖଶାଳାରେ ଗୋଟିଏ ପ୍ରସ୍ତରରେ ଆଦିମାତା ଓ ମାଧବ ମୂର୍ତ୍ତି ଏବଂ ତା' ତଳେ ଗୋଟିଏ ଉପବୀତଧାରୀ ପୁରୁଷ ଓ ଗୋଟିଏ ଆଦିବାସୀ ନାରୀମୂର୍ତ୍ତି ଥିବାରୁ ଏହା ଶବରଦୁହିତା ଲଳିତା ଓ ବ୍ରାହ୍ମଣ ଯୁବକ ବିଦ୍ୟାପତିଙ୍କର ମୂର୍ତ୍ତି ଖୋଦିତ ହୋଇଥିବାର ବୋଧହୁଏ । ତେଣୁ ସମ୍ପ୍ରତି ବେଣ୍ଟକାର ନାମରେ ନାମିତ ଅଞ୍ଚଳ ପୌରାଣିକ ବେଣ୍ଟକାରପୁର ହୋଇଥିବା ସମ୍ଭବ ।

ସାରଳା ଦାସ ମହାଭାରତରେ ଋଦ୍ରାନଦୀ(ଯେଉଁ ନଦୀ କଦମପଡ଼ା ପାଖରୁ ବାହାରି ଗୁହୁଲି ପାଖରେ ମିଶିଛି, ତା'ର ସାଂପ୍ରତିକ ନାମ ମଳିଆ ବା ମଲା ନଈ)ର ଅବସ୍ଥିତି ସମ୍ପର୍କରେ ଯେଉଁ ବର୍ଣ୍ଣନା ଅଛି, ଅନୁମାନ ତାହା ଶୂଦ୍ରା ବା ଶିତୁଆ ହେବ । ପୁରାଣକାର ମହାଦେବ ଦାସଙ୍କ ଜନ୍ମସ୍ଥାନ ଏହି ବୟାଳିଶ ମୌଜାର ଧୂଳିସର ଗ୍ରାମ । ଏହିପରି ଏକ ପାବନ ଭୂମିରେ ବେଣ୍ଟକାର ସନ୍ନିକଟ ପଟଣା ଗ୍ରାମରେ ମହାଦେବ ଆଚାର୍ଯ୍ୟଙ୍କ ପୌତ୍ର ତଥା ସର୍ବେଶ୍ୱରଙ୍କର ପୁତ୍ର ରୂପେ ୧୯୦୧ ମାର୍ଚ୍ଚ ୨୧ତାରିଖରେ ଭୂମିଷ୍ଠ ହୋଇଥିଲେ ବାନାମ୍ବର ।

ଶୈଶବରେ ବିଦ୍ୟାର୍ଜନ ପାଇଁ ଯଥେଷ୍ଟ ସୁବିଧା ନଥିଲା । କାଠଯୋଡ଼ି ନଦୀରେ ପୋଲ ନଥିଲା । ଯାତାୟାତର ପଥ ଦୁର୍ଗମ । ବିଦ୍ୟାଳୟ ମଧ୍ୟ ସ୍ଥାପିତ ହୋଇ ନ ଥିଲା । ତଥାପି ଏ ଅଞ୍ଚଳରୁ କେତୋଟି ପରିବାର କଟକ ଯାଇ ପଢ଼ାପଢ଼ିର ସୁଯୋଗ ପାଇଥିଲେ । ହରେକୃଷ୍ଣ ମହାନ୍ତି ନାମକ ଜଣେ ନିକଟବର୍ତ୍ତୀ ଗ୍ରାମବାସୀ ପ୍ରଥମ ଡେପୁଟି ମାଜିଷ୍ଟ୍ରେଟ୍ ହୋଇଥିଲେ । ତାଙ୍କର ସନ୍ତାନମାନଙ୍କ ମଧ୍ୟରୁ ରାଇକୃଷ୍ଣ ମହାନ୍ତି ସ୍ୱାସ୍ଥ୍ୟ

Digitized by srujanika@gmail.com

ନିର୍ଦ୍ଦେଶକ, ଭବକୃଷ୍ଣ ମହାନ୍ତି ରାଜସ୍ୱ ସଚିବ, ବାଳକୃଷ୍ଣ ମହାନ୍ତି ପୁରୀ ମ୍ୟୁନିସିପାଲ୍‌ଟିରେ ଡାକ୍ତର କାର୍ଯ୍ୟ କରିଥିଲେ ।

ଦୁଃଖର କଥା, ବାନାମ୍ବର ଅଧ୍ୟୟନର କୌଣସି ସୁବିଧା ପାଇନଥିଲେ। ତାଙ୍କର କକେଇ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଦାରୋଗା ହୋଇଥିଲେ । କକେଇ ପୁଅ ଭାଇ ଦୟାନିଧି କବିରାଜୀ ପଢ଼ି କଟକରେ ଚିକିତ୍ସା କରୁଥିଲେ । ଟିଉସନ୍ ପାଇଁ ସ୍ୱରଣା (ପଚିଶ ପଇସା) ପଡୁଥିଲା । ତାହା ମଧ୍ୟ ଠିକ୍ ସମୟରେ ଯୋଗାଡ଼ କରିପାରିଲେ ନାହିଁ । ବାଲିକୁଦା ଓ ଟାଉନ୍ ଭିକ୍ଟୋରିଆ (ଭକ୍ତମଧୁ ବିଦ୍ୟାପୀଠ) ହାଇସ୍କୁଲରେ ପଢ଼ିବାକୁ ଉଦ୍ୟମ କରିଥିଲେ ହେଁ ପ୍ରୟାସ ବିଫଳ ହେବାରୁ ଜନୈକ ଗ୍ରାମବାସୀ ଈଶ୍ୱର ମହାନ୍ତିଙ୍କ ସଙ୍ଗେ ଭାଗ୍ୟପରୀକ୍ଷା ନିମନ୍ତେ ଟାଟା ନଗର ଗଲେ । ଜାମ୍‌ସେଦ୍‌ଜୀ ଟାଟାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ଲୁହା କାରଖାନା ଓ ଅଧିବାସୀଙ୍କ ପାଇଁ ଟାଟା ନଗର । ସେଠାରେ ଜୁବିଲି ପାର୍କରେ ଥିବା ଟାଟାଙ୍କ ପ୍ରତିମୂର୍ତ୍ତି ପାଖରେ ଆପଣାର ଗୁହାରି ଜଣାଇଲେ ବାନାମ୍ବର ।

ସ୍ୱର୍ଗତ ଟାଟାଙ୍କ ସୁଦୟାରୁ ହେଉ ବା ଈଶ୍ୱର ମହାନ୍ତିଙ୍କ ସୁପାରିଶରୁ ହେଉ ବାନାମ୍ବରଙ୍କୁ କଣ୍ଟ୍ରାକ୍ଟର ପାଖରେ ଗୋଟିଏ ସୁପର୍‌ଭାଇଜର୍ କାମ ମିଳିଲା । ଟାଟା କମ୍ପାନୀର ରଙ୍ଗଦେବା କାମ ବହୁତ ଓ ତହିଁରେ ଅଧିକ ଲାଭ ହୋଇପାରେ ଭାବି ପେଣ୍ଟର୍ କାମ ଶିଖି ସେ କାର୍ଯ୍ୟ କରିବାରେ ଲାଗିଲେ । ତାଙ୍କର କାମ ତଦାରଖ କରିବାକୁ ଆସିଥିବା ଆଂଲୋଇଣ୍ଡିଆନ୍ ସାହେବର କଟୂକ୍ତିରେ ବିଚଳିତ ହୋଇ ସ୍ୱାଭିମାନୀ ବାନାମ୍ବର ମନରେ ଘୋର ଦୁଃଖ ଅନୁଭବ କଲେ । ଏ କାର୍ଯ୍ୟକରି ଜୀବିକା ନିର୍ବାହ ସମ୍ଭବ ନୁହେଁ । ପାଠ ପ୍ରତି ଆଗ୍ରହ ବେଳୁବେଳ ବୃଦ୍ଧି ପାଇବାରେ ଲାଗିଲା । କାମଟିକୁ ଛାଡ଼ିଦେଲେ ।

ଟାଟା ଛାଡ଼ି ସଙ୍ଗେ ସଙ୍ଗେ କିଛି ଉପାୟ ନ ଦେଖି ଓଡ଼ିଶାକୁ ଫେରିଆସି ସେ ବାଲେଶ୍ୱରରେ ପହଞ୍ଚିଲେ । ସେ ସମୟରେ ସେଟ୍‌ଲମେଣ୍ଟ ଚାଲିଥିବାରୁ କେମ୍‌ନେ କାମଟିଏ ମିଳିଥିଲା । କିଛିଦିନ ସେ କାର୍ଯ୍ୟ କଲା ପରେ ତହିଁରେ ଆଉ ମନ ବଳିଲା ନାହିଁ । କକେଇଙ୍କ ସାହାଯ୍ୟରେ ପୁରୀ ସଦାଶିବ ସଂସ୍କୃତ କଲେଜରେ ନାମ ଲେଖାଇ ପଢ଼ିବାରେ ଲାଗିଲେ । ପ୍ରଥମା ପରୀକ୍ଷାରେ ବିହାର ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରି ବୃତ୍ତି ଲାଭ-କଲେ । ବୃତ୍ତିଲାଭ ଯୋଗୁଁ ଆଉ ଅଧ୍ୟୟନରେ ଅସୁବିଧା ହେଲା ନାହିଁ । ଏଣିକି ମାତା ସରସ୍ୱତୀଙ୍କ ମନ୍ଦିରର ଦ୍ୱାର ତାଙ୍କ ପାଇଁ ଉନ୍ମୁକ୍ତ ହୋଇଗଲା । ଦେବୀ ବୀଣାପାଣି ସନ୍ତାନ ବାନାମ୍ବରଙ୍କ ପ୍ରତି ପ୍ରସନ୍ନା ହେବାର ପ୍ରମାଣ ମିଳିଲା ବାନାମ୍ବରଙ୍କର ସଂସ୍କୃତ, ପ୍ରାଚୀନ ଓଡ଼ିଆ ଓ ହିନ୍ଦୀ ସାହିତ୍ୟରେ ଗଭୀର ଅଭିନିବେଶ ପ୍ରଦର୍ଶନ ଫଳରେ । ଏହି ସମୟରୁ ତାଙ୍କ ମନରେ ଗବେଷଣା ଓ ସାଂସ୍କୃତିକ ଅନୁସନ୍ଧିତ୍ସା ଜାଗ୍ରତ ହେଲା ।

ବିଳମ୍ବରେ ବର୍ଣ୍ଣ ପରିଚୟ ଓ ଅଠରବର୍ଷ ବୟସରେ ପ୍ରକୃତ ବିଦ୍ୟାରମ୍ଭ । ସେହି ଜ୍ଞାନପିପାସୁ ବିଦ୍ୟାର୍ଥୀ ପକ୍ଷରେ ବିଦ୍ୟାର୍ଜନ ନିମିତ୍ତ ଅଧ୍ୟବସାୟର ତୁଳନା ନାହିଁ । ଜୀବନରେ

Digitized by srujanika@gmail.com

ଦାରିଦ୍ର୍ୟର ସୀମା ଓ ଉତ୍ତରକାଳର ବିଦ୍ୟା-ସୀମାର କଥା ବିଚାରକଲେ ବିଦ୍ୟାସାଗରଙ୍କ ସ୍ମୃତି ମନରେ ଉଦ୍ରେକ ହୁଏ । 'ପ୍ରଥମା' ପରୀକ୍ଷା ପାଇଁ ପ୍ରସ୍ତୁତି କାଳରେ ପ୍ରଥମାଷ୍ଟମୀ ପଡ଼ିଲା । ଅର୍ଥାଭାବ ଓ ପରୀକ୍ଷା ଉଭୟ କାରଣରୁ ସେ ପୁରୀଠାରେ ଅଟକି ରହିଲେ । ତେଣୁ ହାସ୍ୟପ୍ରିୟ ଆଚାର୍ଯ୍ୟ କଥାଟାକୁ ବଡ଼ ଲଘୁଭାବରେ ଉଡ଼ାଇ ଦେବାକୁ ଗୋଟିଏ କୌତୁକିଆ ଶ୍ଳୋକ ରଚନା କଲେ ।

''ଅଷ୍ଟମ୍ୟାଂ ପିଷ୍ଟକାଭାବାତ୍ ତୁଷ୍ଟିସ୍ତିଷ୍ଠତି ପୃଷ୍ଠତଃ
ସ୍ରଷ୍ଟା ଯଦ୍‌ବିହିତଂ କଷ୍ଟଂ ପରିମାର୍ଷ୍ଟୁଂ କ୍ଷମେତ କଃ ।''

ଅର୍ଥାତ୍— ଆଜି ଏ ଆମୋଦଦାୟକ ପୋଡୁଅାଁ ଅଷ୍ଟମୀରେ ଘରଠାରୁ ଦୂରରେ ଥାଇ, ପିଠା ଅଭାବରୁ ମୋର ତୁଷ୍ଟି ଅର୍ଥାତ୍ ପାଟିର ତୃପ୍ତି ମୋର ପିଠିପଟେ ରହିଗଲା । ସୃଷ୍ଟିକର୍ତ୍ତା ଯେଉଁ କଷ୍ଟ ମୋତେ ଦେଇଛନ୍ତି, ତାକୁ ଦୂର କରିବାକୁ କିଏ ବା ସମର୍ଥ ହେବ ?

ଏଥିରେ ଦାରିଦ୍ର୍ୟକୁ ଉପହାସ କରି ଆପଣାର ଅନମନୀୟତାର ପରିଚୟ ଦେଇଥିଲେ ବିଦ୍ୟାପୀଠର 'ପ୍ରଥମା' ଶ୍ରେଣୀର ବିଦ୍ୟାର୍ଥୀ ଆଚାର୍ଯ୍ୟ ।

ମଧ୍ୟମା ଶ୍ରେଣୀର ଛାତ୍ର ଥିବାବେଳେ ବାନାମ୍ବର ରଚିତ ପ୍ରଥମ ଦେବ (ସଂସ୍କୃତ) ଶ୍ଳୋକ ତାଙ୍କ କବିତ୍ୱ, ଧୀମତ୍ତା ଓ ପାଣ୍ଡିତ୍ୟର ପରିଚୟ ଦିଏ ।

''ଭାଭାଭାତି ବିଧୁର୍ବିଭାତି ପବନୋ ବାତୀହ ଯସ୍ୟାଜ୍ଞୟା,
ଦାଦାଦାୟ ଚ ଯଃ ସୁରେନ୍ଦ୍ର ଭବନାତ୍ ପୁଷ୍ପଂ ପ୍ରିୟା ପ୍ରୀତୟେ
ନାନାନାଘକୃତାଂ ବରଃ ସକୃଦପି ପ୍ରୋଚ୍ଚୈତ ଯନ୍ନାମକଂ
ପାପାପାର ପୟୋନିଧେଃ ପରତଟଂ ଦେବାୟ ତସ୍ମୈ ନମଃ ।।''

—ଯାହାଙ୍କ ଆଜ୍ଞାରେ ସୂର୍ଯ୍ୟ ତେଜୋଦୀପ୍ତ, ଚନ୍ଦ୍ର ସ୍ନିଗ୍ଧ, ପବନର ପ୍ରବାହ (ମନ୍ଦ ଓ କ୍ଷିପ୍ର) ନିୟନ୍ତ୍ରିତ, ପ୍ରିୟାଙ୍କ ପ୍ରୀତି ସମ୍ପାଦନାରେ ଇନ୍ଦ୍ରଭୁବନର ପାରିଜାତ ପୁଷ୍ପ ଯାହାଙ୍କ ପକ୍ଷେ ଅଦେୟ ନୁହେଁ, ପାପ ବିନାଶନ ପାଇଁ ଯେ ବରଦାତା, ଯାହାଙ୍କ ନାମୋଚ୍ଚାରଣରେ ପୁଣ୍ୟ ପ୍ରତିଷ୍ଠିତ ହୁଏ, ଅପାର ପାପ ସାଗର ପାର କରାଇବାରେ ଯେ ପାରଗ, ସେହି ଦେବତା ନାରାୟଣଙ୍କୁ ପ୍ରଣାମ ।

ପୁରୀ ସଦାଶିବ ସଂସ୍କୃତ କଲେଜ ଶିକ୍ଷା ଶେଷରେ ଗୁରୁଗଣ ଗୋଟିଏ ଆଣ୍ଠୁଆଗୋପାଳ ମୂର୍ତ୍ତି ଆଶୀର୍ବାଦସ୍ୱରୂପ ତାଙ୍କୁ ପ୍ରଦାନ କରିଥିଲେ । ୧୯୨୮ ମସିହାରେ ସାହିତ୍ୟାଚାର୍ଯ୍ୟ ଉପାଧିପ୍ରାପ୍ତ ହୋଇ ପଣ୍ଡିତ ବାନାମ୍ବର କଟକ ପ୍ରିଣ୍ଟିଂ କମ୍ପାନୀରେ ଚାକିରି କଲେ । ମାତୃଭୂମିର ପ୍ରତିଷ୍ଠାତା-ସମ୍ପାଦକ ବାଳକୃଷ୍ଣ କର, ସମାଜର ବାର୍ତ୍ତା-ସଂପାଦକ

Digitized by srujanika@gmail.com

ଭାବେ ଅବସର ନେଇଥିବା ପଣ୍ଡିତ ଉଦୟନାଥ ଷଡ଼ଙ୍ଗୀ ଓ କବିରାଜ ପୂର୍ଣ୍ଣଚନ୍ଦ୍ର ମିଶ୍ର (ଭାରତର ବିଶିଷ୍ଟ ହୃଦ୍‌ରୋଗ ବିଶେଷଜ୍ଞ ଡାକ୍ତର କବିପ୍ରସାଦ ମିଶ୍ର ଓ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ପୂର୍ବତନ ପ୍ରଶାସକ ରବୀନ୍ଦ୍ରନାଥ ମିଶ୍ରଙ୍କ ପିତା) ତାଙ୍କର ସେଠାରେ ସହକର୍ମୀ ଥିଲେ ।

ଏହାପରେ କଟକସ୍ଥ ଗ୍ରାଦିନୀଚୌକଠାରେ ନ୍ୟାୟମୂର୍ତ୍ତି ସ୍ୱର୍ଗତ ହରିହର ମହାପାତ୍ରଙ୍କ ଗୃହ ନିକଟରେ ଗୋଟିଏ ସଂସ୍କୃତ ଟୋଲ୍ ଖୋଲି ଶିକ୍ଷାଦାନ କରୁଥିଲେ । ତା'ପରେ କଟକ ମ୍ୟୁନିସିପାଲ୍‌ଟି ନିକଟବର୍ତ୍ତୀ ଲକ୍ଷ୍ମୀନାରାୟଣ ସଂସ୍କୃତ ବିଦ୍ୟାଳୟରେ ଅଧ୍ୟାପନା କଲେ । ୧୯୩୨ ମସିହାରେ କେନ୍ଦୁଝର ରାଜା ବଳଭଦ୍ର ନାରାୟଣ ଭଞ୍ଜଙ୍କ ଆହ୍ୱାନକ୍ରମେ କେନ୍ଦୁଝର ଯାତ୍ରାକରି ସେଠାରେ ବଳଭଦ୍ର ନାରାୟଣ ସଂସ୍କୃତ ବିଦ୍ୟାଳୟ (ଚତୁଷ୍ପାଠୀ)ରେ ଆଚାର୍ଯ୍ୟ ବା ପ୍ରଧାନ ଅଧ୍ୟାପକ ପଦରେ ନିଯୁକ୍ତ ହେଲେ । କେନ୍ଦୁଝରର ଶାସନୀ ବ୍ରାହ୍ମଣମାନେ ପଣ୍ଡିତ ବାନାମ୍ବରଙ୍କ ସହ ଅସହଯୋଗ କଲେ ଓ ସେ ଶାସ୍ତ୍ରାନଭିଜ୍ଞ ବୋଲି ରାଜାଙ୍କ ଆଗରେ ଅଭିଯୋଗ କଲେ । ରାଜସଭାରେ ତର୍କ ହେଲା । ତର୍କରେ ପଣ୍ଡିତ ବାନାମ୍ବରଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ମହାରାଜା ତାଙ୍କୁ ରାଜସଭାର ପଣ୍ଡିତ ଭାବେ ସ୍ୱୀକୃତି ଦେଲେ ଓ ସେ ସଭାପଣ୍ଡିତ ଭାବରେ ନିଯୁକ୍ତି ପାଇଲେ ।

ସେ କାଳରେ କେନ୍ଦୁଝରଠାରେ ବହୁତ ବିଦ୍ୱାନ ଲୋକଙ୍କର ସମାବେଶ ଘଟିଥିଲା । ସ୍ୱର୍ଗତ ବଂଶୀଧର ମହାନ୍ତି, ପ୍ରାଣବଲ୍ଲଭ ପଟ୍ଟନାୟକ, ଗିବ୍‌ସନ୍ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବଗ୍ରାହୀ ମହାନ୍ତି, ସହକାରୀ ପ୍ରଧାନ ଶିକ୍ଷକ ଜଗବନ୍ଧୁ ତ୍ରିପାଠୀ, ବନମାଳୀ ମିଶ୍ର ଓ କ୍ଷେତ୍ରମୋହନ ମିଶ୍ର ଆଦି-ବିଜ୍ଞ ବ୍ୟକ୍ତି ପଣ୍ଡିତଜୀଙ୍କ ସହ ଯୋଗଦେଇ ''ବଳଭଦ୍ର ସାହିତ୍ୟ ପରିଷଦ'' ଗଠନ କଲେ । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ । ମହାଯୁଦ୍ଧକାଳୀନ କାଗଜ ଦୁର୍ମୂଲ୍ୟ ସତ୍ତ୍ୱେ 'ବନବୀଣା' ନାମରେ ଏକ ମାସିକ ପତ୍ରିକା ନିୟମିତ ଭାବରେ ପ୍ରକାଶ ପାଇଲା । ପୂର୍ବରୁ ପଣ୍ଡିତ ଆଚାର୍ଯ୍ୟ ଏକାକୀ ସାଧନା ଆରମ୍ଭ କରିଥିଲେ । ମାତ୍ର ଏମାନଙ୍କ ସମୂହ ପ୍ରଚେଷ୍ଟାରେ 'କେନ୍ଦୁଝର ଗ୍ରନ୍ଥମାଳା' ପ୍ରକାଶିତ ହେଲା । ପଣ୍ଡିତ ଆଚାର୍ଯ୍ୟ କେନ୍ଦୁଝରର ପୂର୍ବତନ ରାଜା ପ୍ରତାପ ବଳଭଦ୍ର ଭଞ୍ଜ (୧୭୬୪-୧୭୯୨ ଖ୍ରୀଷ୍ଟାବ୍ଦ)ଙ୍କ କୃତ 'ଅମ୍ବିକା ବିଳାସ'ର ସଂପାଦନା କରିଥିଲେ । ଏହାର ପ୍ରକାଶ ପୂର୍ବରୁ କାବ୍ୟର ପାଣ୍ଡୁଲିପି ଦେଖି ୬।୧୧।୧୯୩୬ରେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସଂକଳକ ଓ ସଂପାଦକ ୰ ଗୋପାଳ ଚନ୍ଦ୍ର ପ୍ରହରାଜ ଓ ତାହାଙ୍କ ସହକର୍ମୀଗଣ ଯଥା-- ବିଚ୍ଛନ୍ଦ ଚରଣ ପଟ୍ଟନାୟକ, କୁଳମଣି ଦାଶ, ଶଶିଭୂଷଣ ରାୟ, କୃଷ୍ଣଚନ୍ଦ୍ର ସେନଗୁପ୍ତ, କୃଷ୍ଣଚନ୍ଦ୍ର କର ଏବଂ ପରୀକ୍ଷିତ ଖଣ୍ଡୁଆଳ ଆଦି ମତ ଦେଇଥିଲେ—

''କେନ୍ଦୁଝର ରାଜ୍ୟର ସ୍ୱର୍ଗୀୟ ରାଜା ବଳଭଦ୍ର ଭଞ୍ଜଙ୍କ ବିରଚିତ 'ଅମ୍ବିକା ବିଳାସ' କାବ୍ୟର ପାଣ୍ଡୁଲିପି ଆଚାର୍ଯ୍ୟ ପଣ୍ଡିତ ଶ୍ରୀ ବାନାମ୍ବର ସାହିତ୍ୟାଚାର୍ଯ୍ୟଙ୍କ ସର୍ବଦୁର୍ଲଭା ଟୀକା ଓ

Digitized by srujanika@gmail.com

ମୁଖବନ୍ଧ ଦେଖିବାର ସୁଯୋଗ ଆମ୍ଭେମାନେ ପାଇଅଛୁ । ଉତ୍କଳର ପ୍ରାଚୀନ କବିମାନଙ୍କ ମଧ୍ୟରେ ଏହାକୁ ନିର୍ବିବାଦରେ କବିଗୁରୁ ଶ୍ରେଣୀରେ ଗଣନା କରାଯାଇପାରେ । ଉତ୍କଳର ପ୍ରାଚୀନ କବିବୃନ୍ଦ କାବ୍ୟ ଜଗତରେ ଯେଉଁ ଅନନ୍ୟ ସାଧାରଣ ସାଧନା କରିଥିଲେ, ସେହି ସାଧନା ବୃକ୍ଷର ଏ କାବ୍ୟ ଗୋଟିଏ ଅମୃତମୟ ରସାଳ ଫଳ ଅଟେ ।''

ତତ୍କାଳୀନ ସାହିତ୍ୟ ପତ୍ରିକା 'ସହକାର'ର ସଂପାଦକ ୰ ବାଳକୃଷ୍ଣ କରଙ୍କ ମନ୍ତବ୍ୟ— ''କେନ୍ଦୁଝରାଧୀଶ୍ୱର ଶ୍ରୀ ପ୍ରତାପ ବଳଭଦ୍ର ଭଞ୍ଜଙ୍କ କୃତ 'ଅମ୍ବିକା ବିଳାସ' କାବ୍ୟର ପାଠୋଦ୍ଧାର କରି ତାହାକୁ ପ୍ରକାଶଯୋଗ୍ୟ କରିବାଦ୍ୱାରା ପଣ୍ଡିତ ବାନାମ୍ବର ଆଗ୍ରର୍ଯ୍ୟ ଉତ୍କଳର ସାହିତ୍ୟ ରସିକମାନଙ୍କର ଅଶେଷ ଶ୍ରଦ୍ଧାଭାଜନ ହୋଇଅଛନ୍ତି ।''

ସଂପାଦକ ପଣ୍ଡିତ ଆଗ୍ରର୍ଯ୍ୟ ଏହାର ମୁଖବନ୍ଧରେ ଲେଖିଥିଲେ, ''ଉତ୍କଳର ରାଜନ୍ୟମଣ୍ଡଳୀ ମଧ୍ୟରେ ଭଞ୍ଜବଂଶୀୟ ରାଜାଗଣ ଉତ୍କଳ ଭୂମିରେ କେତେବେଳେ ମସୀ ଲେଖନୀ ଧରି କବିରୂପେ, କେତେବେଳେ ବା ଅସିଚର୍ମଧର ଯୋଦ୍ଧୃରୂପେ ଅପୂର୍ବ କୌଶଳ ପ୍ରଦର୍ଶନ କରିଅଛନ୍ତି ।

ଏମାନଙ୍କ ମଧ୍ୟରୁ ପ୍ରାଚୀନ କାଳରେ ହରିହରପୁରର ଭଞ୍ଜବଂଶ, ଅର୍ଥାତ୍ ଅଧୁନାତନ ମୟୂରଭଞ୍ଜ ଓ କେନ୍ଦୁଝର ରାଜବଂଶଦ୍ୱୟ ପ୍ରାଚୀନତମ । 'ଅମ୍ବିକା ବିଳାସ'ର କବି ବଳଭଦ୍ର ଭଞ୍ଜ କେନ୍ଦୁଝରର ଅଧିପତି ଦାନବୀର ଶ୍ରୀ ଜଗଦୀଶ୍ୱର ଭଞ୍ଜଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ ।

x x x x

ଅଧୁନା ୰ ପ୍ରତାପ ବଳଭଦ୍ର ଭଞ୍ଜଙ୍କ ପ୍ରଣୀତ 'ଅମ୍ବିକା ବିଳାସ' ଏହି ଗ୍ରନ୍ଥମାଳାର ଦ୍ୱିତୀୟ ପୁସ୍ତକରୂପେ ପ୍ରକାଶିତ ହେଲା ।

ପଣ୍ଡିତ ଆଗ୍ରର୍ଯ୍ୟଙ୍କ ସହଯୋଗୀ ବନ୍ଧୁ ସାହିତ୍ୟିକମାନଙ୍କ ମଧ୍ୟରେ ବଂଶୀଧର ମହାନ୍ତି ଅମିତ୍ରାକ୍ଷର ଛନ୍ଦରେ ନଳଚରିତମୂଳକ 'ପୁଣ୍ୟଶ୍ଳୋକ' କାବ୍ୟ ରଚନା ସହିତ ମେଘଦୂତ ଓ ହଂସଦୂତର ସର୍ବୋତ୍ତମ ଓଡ଼ିଆ ଅନୁବାଦ ପ୍ରକାଶ କରିଥିଲେ ।

ପ୍ରଧାନ ଶିକ୍ଷକ ଭାବଗ୍ରାହୀ ମହାନ୍ତି ପାଠମଞ୍ଜରୀ ଓ ପାଠକୁସୁମ ପରି ପାଠ୍ୟପୁସ୍ତକ ଏବଂ କ୍ଷେତ୍ରମୋହନ ମିଶ୍ର 'କେନ୍ଦୁଝର ଇତିହାସ' ପ୍ରଣୟନ କରିଥିଲେ । ଦାମୋଦର ମିଶ୍ର ସୂର୍ଯ୍ୟଶତକ ଓ ଚଣ୍ଡୀଶତକ ପରି 'ଗନ୍ଧମାଦନ ଶତକ' ନାମକ ମୁକ୍ତକ କାବ୍ୟ ରଚନା କରିଥିଲେ ।

ସେ କାଳରେ କେନ୍ଦୁଝରରେ ଏହି ସମସ୍ତ ସାହିତ୍ୟିକଙ୍କର କେନ୍ଦ୍ରବିନ୍ଦୁ ଥିଲେ ପଣ୍ଡିତ ବାନାମ୍ବର । ସାହିତ୍ୟ ଚର୍ଚ୍ଚା ନିମିତ୍ତ ପାଲାଗାୟନ ଗୋଟିଏ ଉପଯୁକ୍ତ ମାଧ୍ୟମ । କେନ୍ଦୁଝରକୁ ବହୁ ପାଲାଗାୟକ ରାଜ-ପୃଷ୍ଠପୋଷକତା ପାଇଁ ଆସୁଥିଲେ ଏବଂ ପାଲାଗାୟନ ଆସରରେ

Digitized by srujanika@gmail.com

ସାହିତ୍ୟାନୁରାଗୀମାନଙ୍କର ମିଳନ ଘଟୁଥିଲା । ପାଲାଗାୟକମାନଙ୍କ ପାଇଁ ପଣ୍ଡିତ ଆଚାର୍ଯ୍ୟ ନୂତନ ଚାତୁରୀପୂର୍ଣ୍ଣ ଉଭଟଶ୍ରେଣୀୟ ଶ୍ଳୋକମାନ ରଚନାକରି ଦେଉଥିଲେ । ଏକପକ୍ଷରେ ଶେଉଳ ଖଟା ଓ ଅନ୍ୟ ପକ୍ଷରେ ଲକ୍ଷ୍ମୀ ବନ୍ଦନାମୂଳକ ଆଶୀର୍ବାଦ । କେତେବେଳେ ସାତ ବା ଆଠ ପ୍ରକାର ଓଡ଼ିଆ ଖାଦ୍ୟପେୟର ନାମ ଥାଇ ବିଷ୍ଣୁ ଆଶୀର୍ବାଦ ଶ୍ଳୋକ-- ଏପରି ଶ୍ଳେଷ ବା ଛଳୋକ୍ତି ଥାଇ ରଚିତ ହେଉଥିଲା । ପଣ୍ଡିତ ଆଚାର୍ଯ୍ୟଙ୍କ ଉଭଟ ଶ୍ଳୋକଗୁଡ଼ିକ କୌତୁକିଆ ଓ ଜନପ୍ରିୟ ଥିଲା । ରାଜସମ୍ମାନ ଓ ଲୋକସମ୍ମାନ ଉଭୟର ଅଧିକାରୀ ଓ ଜନପ୍ରିୟତା ଅର୍ଜନ କରି ସୁଦ୍ଧା ସେ ଥିଲେ ନିରଭିମାନୀ ଓ ନିରହଙ୍କାର ।

କେନ୍ଦୁଝର ରାଜା ବଳଭଦ୍ର ନାରାୟଣ ଭଞ୍ଜଙ୍କ ସହାୟତା ଓ ସୁପାରିଶ କ୍ରମେ ନବସ୍ଥାପିତ ମିଶନ କଲେଜ ବା ଉତ୍କଳ ଖ୍ରୀଷ୍ଟିଆନ୍ କଲେଜରେ ସଂସ୍କୃତ ଓ ଓଡ଼ିଆ ଅଧ୍ୟାପକ ଭାବେ ୧୯୪୪ ଅଗଷ୍ଟ ୧୫ ତାରିଖଠାରୁ ନିଯୁକ୍ତ ହେଲେ ପଣ୍ଡିତ ବାନାମ୍ବର ।

ସରକାରୀ ଧାର୍ଯ୍ୟ ଦରମାହାର ଅନୁସାରେ ସେତେବେଳେ ଅଧ୍ୟାପକମାନଙ୍କର ବେତନ ଥିଲା ୧୨୫ ଟଙ୍କା । ମାତ୍ର ପଣ୍ଡିତ ଆଚାର୍ଯ୍ୟଙ୍କ ମାଟ୍ରିକ୍ ସାର୍ଟିଫିକେଟ୍ ଅଭାବରୁ କଲେଜ ପରିଚାଳନା ସମିତି ତାଙ୍କର ମାସିକ ଦରମା ୭୫ ଟଙ୍କା ଧାର୍ଯ୍ୟ କଲେ । ଏହା ଉତ୍କଳ ବିଶ୍ୱବିଦ୍ୟାଳୟକୁ ମଞ୍ଜୁରୀ ପାଇଁ ପଠାଯାଆନ୍ତେ ତଦାନୀନ୍ତନ କୁଳସଚିବ (ରେଜିଷ୍ଟ୍ରାରେ) ପ୍ରଫେସର ଭି.ଭି. ଜନ୍— ଏହା ଏକ ଗର୍ହିତ ବ୍ୟାପାର ବୋଲି ଦୃଢ଼ ବିରୋଧ କଲେ । ଫଳରେ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ଏ ବିଷୟ ଆଲୋଚନା କରି ପଣ୍ଡିତ ଆଚାର୍ଯ୍ୟଙ୍କ ଦରମା ଅନ୍ୟାନ୍ୟ ଅଧ୍ୟାପକମାନଙ୍କ ସମତୁଲ କରିବାକୁ କଲେଜ କର୍ତ୍ତୃପକ୍ଷଙ୍କୁ ପରାମର୍ଶ ଦେଲେ ଓ ତାହା ଉପଯୁକ୍ତ ସମ୍ମାନ ଲାଭ କଲା ।

ଖ୍ରୀଷ୍ଟ ମହାବିଦ୍ୟାଳୟର ସଂସ୍କୃତ ଓ ଓଡ଼ିଆ ବିଭାଗ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଶ୍ରୀଯୁକ୍ତ ଶ୍ରୀଧର ଦାସ, ଶ୍ରୀଯୁକ୍ତ ଗୌରୀକୁମାର ବ୍ରହ୍ମା ଆଦିଙ୍କ ଦ୍ୱାରା ପରିପୁଷ୍ଟ ଥିଲା । କେବଳ ଏହି ବିଭାଗ ନୁହେଁ, ସମଗ୍ର ମହାବିଦ୍ୟାଳୟର ଅଧ୍ୟାପକ ଓ କର୍ମଚାରୀବୃନ୍ଦ ପଣ୍ଡିତଜୀଙ୍କର ସ୍ନେହଲାଭ କରୁଥିଲେ । ଶାସ୍ତ୍ର, ପୁରାଣ, କାବ୍ୟାଦି ବିଷୟରେ ଏମାନେ ଥିଲେ ଚଳନ୍ତି ଜ୍ଞାନକୋଷ । ପଣ୍ଡିତ୍‌ଜୀଙ୍କ ବିଦ୍‌ବତ୍ତା ସମସ୍ତଙ୍କୁ ମୁଗ୍ଧ ଚକିତ କରୁଥିଲା ଓ ସେ ଥିଲେ ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ । କେବଳ ଜ୍ଞାନଚର୍ଚ୍ଚା ନୁହେଁ, ବ୍ୟକ୍ତିଗତ ଓ ପାରିବାରିକ ସମସ୍ୟାର ସମାଧାନ ପାଇଁ ସୁଦ୍ଧା ସହକର୍ମୀମାନେ ପଣ୍ଡିତ୍‌ଜୀଙ୍କ ମତ ଲୋଡୁଥିଲେ । ସାରା କଲେଜ ଯେପରି ଏକ ପାରିବାରିକ ସୂତ୍ରରେ ବନ୍ଧା ଥିଲା । କେବଳ ସେତିକି ନୁହେଁ, ଖ୍ରୀଷ୍ଟିଆନ୍ ଏଜୁକେଶନ୍ ବୋର୍ଡ଼ ଦ୍ୱାରା ପରିଚାଳିତ ମିଶନ ସ୍କୁଲ୍ (ଖ୍ରୀଷ୍ଟ କଲେଜିଏଟ୍ ସ୍କୁଲ୍)ର ପରିଚାଳନା ସମିତିରେ ସେ ଥିଲେ ଏକମାତ୍ର ହିନ୍ଦୁ ବ୍ରାହ୍ମଣ ସଭ୍ୟ । ସେତେବେଳେ ଏହା ଥିଲା ଏକ ଚମକ୍‌ପ୍ରଦ ତଥା ଅବିଶ୍ୱସନୀୟ ଘଟନା । ସେଠାରେ ସେ ବହୁ ଦରିଦ୍ର ମେଧାବୀ ପିଲାଙ୍କୁ ଦରମାଛାଡ଼ରେ ସାହାଯ୍ୟ କରିଥିଲେ ।

Digitized by srujanika@gmail.com

ଖ୍ରୀଷ୍ଟ କଲେଜରେ ଦିନକର ଘଟନା । ଅଧ୍ୟକ୍ଷ ରେଭରେଣ୍ଡ ବ୍ରଜାନନ୍ଦ ମହାନ୍ତି ଥିଲେ ଧର୍ମପ୍ରାଣ, ଗମ୍ଭୀର ଓ ଶୃଙ୍ଖଳାପ୍ରିୟ । ଅଧ୍ୟକ୍ଷ ମହାଶୟ ଶ୍ରେଣୀ ପରିଦର୍ଶନ କରି ଅଫିସ୍‌କୁ ଫେରିବାବେଳେ ଷ୍ଟାଫ୍‌ରୁମ୍‌ର ଘମାଘୋଟ ଆଲୋଚନା ତାଙ୍କ କାନରେ ପଡ଼ିଲା । କି କଥା ପଡ଼ିଛି ଜାଣିବାପାଇଁ ଉତ୍ସୁକ ହୋଇ ରୁମ୍ ଭିତରକୁ ଆସି ଘଟଣା କଣ ଜାଣିବାକୁ ଚାହିଁଲେ । ଅଧ୍ୟାପକ ବ୍ରହ୍ମା ବୁଝାଇଦେଲେ, ଆଲୋଚନାଟି ଥିଲା ପିଲାମାନେ ଦେଉଥିବା ମିଛ ମେଡିକାଲ୍ ସାର୍ଟିଫିକେଟ୍‌କୁ କେନ୍ଦ୍ରକରି । ପିଲାଟିଏ ଦୁଇଟି ଟଙ୍କା ଖର୍ଚ୍ଚ କରି ଡାକ୍ତରୀ ସାର୍ଟିଫିକେଟ୍ ଦେଇ ଅନୁପସ୍ଥିତି ସାବ୍ୟସ୍ତ କରୁଛି । (ଏ ଲେଖକ ଜାଣିବାରେ ସେତେବେଳେ ଜଣେ ଡାକ୍ତର ✓ ମହେନ୍ଦ୍ର କୁମାର ସାହୁଙ୍କ ଠାରୁ ଏକ ଟଙ୍କା ଦେଇ.ଆଠଜଣ ମେଡିକାଲ୍ ସାର୍ଟିଫିକେଟ୍ ଆଣି କଲେଜରେ ଦାଖଲ କରି ପରୀକ୍ଷା ନ ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ ।) ପଣ୍ଡିତ ବାନାମ୍ବର କହିଲେ, "ସାର୍, ଆମେ ସମସ୍ତେ ଅନୁଭବ କରୁଛୁ, ଏପରି ମିଥ୍ୟା ସାର୍ଟିଫିକେଟ୍ ଦେବାଠାରୁ ଷ୍ଟାଫ୍ ମେମ୍ବରଙ୍କ ମଧ୍ୟରୁ କେହି ଭଲଭାବେ ପିଲାକୁ ଜାଣିଥିବା ବ୍ୟକ୍ତି ଯଦି ବେମାର ବିଷୟରେ ପ୍ରମାଣପତ୍ର ଦିଅନ୍ତି, ତାର ମୂଲ୍ୟ କଣ ତା'ଠାରୁ କୌଣସି ଗୁଣରେ ଊଣା ହେବ ? ଏ ସମ୍ପର୍କରେ ଦୃଷ୍ଟାନ୍ତ ଦେଇ ପଣ୍ଡିତ ଆଗ୍ରୁର୍ଯ୍ୟ ଆପଣାର ପ୍ରତିବେଶୀ ଜଣେ ଛାତ୍ର ଅସୁସ୍ଥତା ବେଳେ ନିଜେ ବରାବର ଦେଖିଥିବାରୁ ସେ ପିଲାକୁ ତାର ଅସୁସ୍ଥତା ପାଇଁ ପ୍ରମାଣପତ୍ର ଦେଲେ ତାହାକୁ ଗୁରୁତ୍ୱ ଦିଆଯିବ ନାହିଁ କି ?" ସଦାଗମ୍ଭୀର ଅଧ୍ୟକ୍ଷ କହିଲେ, "ହଁ, ଏଥିରେ ଖୁବ୍ ସତ୍ୟତା ରହିଛି ।" ଷ୍ଟାଫ୍ ମେମ୍ବରମାନଙ୍କ ସହ ବିଗ୍ଭରକ୍ରମେ ଏହା ପରେ କାର୍ଯ୍ୟକାରୀ ହେଲା । ଏଥିରୁ ପଣ୍ଡିତ ଆଗ୍ରୁର୍ଯ୍ୟଙ୍କ ବିଗ୍ଭରବୁଦ୍ଧିର ପରିଚୟ ମିଳେ ।

ଶାସ୍ତ୍ରୀୟ ଶ୍ରୋତ୍ରୀୟ ପଣ୍ଡିତ ଆଗ୍ରୁର୍ଯ୍ୟ ଓ ନିଷ୍ଠାପର ଖ୍ରୀଷ୍ଟିଆନ୍ ଅଧ୍ୟାପକ ଜାକୋବ୍-ଉଭୟେ କାନ୍ଧରେ ହାତ ପକାପକି ହୋଇ ଯିବା ଓ ଚଣ୍ଡୀ ହୋଟେଲ୍‌ରେ ଏକା ପ୍ଲେଟ୍‌ରେ ଖାଇବା ଦୃଶ୍ୟ-- ଛାତ୍ରମାନଙ୍କୁ ମୁଗ୍ଧ କରେ । ଜାକବ୍ କେରଳୀ, ଓଡ଼ିଆ ଜାଣନ୍ତି ନାହିଁ । ପଣ୍ଡିତ ମହାଶୟ ଇଂରାଜୀ କିଯତ୍ ପରିମାଣରେ କହିପାରନ୍ତି । ତାଙ୍କୁ ଏକାକୀ ପ୍ରଶ୍ନକଲେ କହନ୍ତି, "ଆମେ ପରସ୍ପର ଭାବ ବୁଝୁ ।" ହାସ୍ୟରସିକ ପଣ୍ଡିତ୍‌ଜୀ ଶ୍ରେଣୀରେ ନିର୍ବିକାର ଭାବରେ କହନ୍ତି, "ମୋତେ ୨୧ ବର୍ଷ ହେବାଯାଏ ପୁଝାରୀ କାମ କରୁଥିଲି । ତା'ପରେ ପାଠପଢ଼ି ଅଧ୍ୟାପନା କରୁଛି । ମୋତେ ଇଂରାଜୀ ଘୁସି ମାରିବ ନାହିଁ ଟି ।" (ଫକୀରମୋହନଙ୍କ ଡାକମୁନ୍‌ସୀ ଗଳ୍ପର ଗୋପାଳକୁ ଉପଲକ୍ଷ୍ୟ କରି ଏ କଥା କହନ୍ତି) ।

ରସିକ ଅଧ୍ୟାପକ ଜୟକୃଷ୍ଣ ମିଶ୍ର **M.A.D.E.d.**— ତାଙ୍କୁ ପଣ୍ଡିତ୍‌ଜୀ ଥଟ୍ଟାରେ କହନ୍ତି **Maded** । (ପାଗଳ ହୋଇଛନ୍ତି ) । ସେହିପରି ଶବ୍ଦମାନଙ୍କରେ ରସିକତା— ପଲ୍ଲୀରେ ପଶି ଟିକସ୍ ଉଠାଇବା ପାଠ ହେଲା ପଲିଟିକ୍‌ସ୍ ।

Digitized by srujanika@gmail.com

ପଣ୍ଡିତ୍‌ଜୀଙ୍କର ଅସାଧାରଣ ବିଦ୍‌ବତ୍ତା ଓ ଶାସ୍ତ୍ରାନୁଶୀଳନ ଥିବାରୁ ସେ ତନ୍ମୟ ହୋଇ ବୁଝାଇ ଚାଲନ୍ତି । ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦର ପ୍ରଥମ ପଦ "ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧାହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।" —ବୁଝାଇବାକୁ ତାଙ୍କୁ ଦୁଇ ତିନୋଟି ପିରିଅଡ୍ ଲାଗିଯାଏ ।

ଶବ୍ଦଗୁଡ଼ିକର ଗଠନ ସୂତ୍ର ବୁଝାଇବାରେ ସେ ଥିଲେ ଧୂରୀଣ । ହସି ହସାଇ ଓ ରସି ରସାଇ ପଢ଼ାଇବାରେ ସେ ଅନନ୍ୟ । ଥରେ ବିଦଗ୍ଧ ଚିନ୍ତାମଣି ପଢ଼ାଇବାବେଳେ ଜଣେ ଦୁଷ୍ଟ ଛାତ୍ର ସାର୍‌ଙ୍କୁ ଅପ୍ରସ୍ତୁତ କରିବାକୁ ପଚାରିଦେଲା, "ସାର୍ ସୁରତିର ଅର୍ଥ କଣ ?" ରସିକ ସାର୍ ତତ୍‌କ୍ଷଣାତ୍ ଉତ୍ତର ଦେଲେ, "ରାତିରେ ଡିକ୍‌ସନାରୀ ନେଇ ଦେଖିବ । ଡିକ୍‌ସନାରୀର ପ୍ରଥମାର୍ଦ୍ଧରେ ନ ମିଳିଲେ ଦ୍ୱିତୀୟାର୍ଦ୍ଧରେ ନିଶ୍ଚୟ ଅର୍ଥ ବାହାରିବ ।" ପିଲା ଚୁପ୍ । ସବୁରି ହସ । ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ଥିବାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍ ସଭ୍ୟ ଭାବରେ ନିର୍ବାଚିତ ହୋଇ ମହାବିଦ୍ୟାଳୟକୁ ପ୍ରତିନିଧିତ୍ୱ କରୁଥିଲେ । ସେ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ ସମିତି ସଭ୍ୟ ଥିଲେ । ସଂସ୍କୃତ ପରିଷଦର ମନୋନୀତ ସଭ୍ୟ ଏବଂ ସଂଗ୍ରହାଳୟ, ସାଂସ୍କୃତିକ ବ୍ୟାପାର ପରାମର୍ଶଦାତା ସମିତିର ସଦସ୍ୟ ଥିଲେ । ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ଝଙ୍କାର ସଂପାଦନା ମଣ୍ଡଳୀ ସହ ମଧ୍ୟ ସଂପୃକ୍ତ ଥିଲେ ।

ପ୍ରାଚୀନ ଓଡ଼ିଆ ସାହିତ୍ୟ, ପ୍ରତ୍ନତତ୍ତ୍ୱ, ସଙ୍ଗୀତ, ଇତିହାସ, ଶିଳାଲେଖ, ତାମ୍ରଲେଖ ପ୍ରଭୃତିର ଅନୁଶୀଳନ ଓ ପର୍ଯ୍ୟାଲୋଚନା, ଧର୍ମ, ଦର୍ଶନ, ସାହିତ୍ୟ ସଂପର୍କରେ ତାଙ୍କର ଅଗାଧ ଜ୍ଞାନ ଥିଲା । ତେଣୁ ସେ ବୈଷ୍ଣବ, ବୌଦ୍ଧ ଓ ଜୈନ ଧର୍ମ ଏବଂ ଦର୍ଶନ ସଂପର୍କରେ ବହୁତ ମୌଳିକ ତଥ୍ୟ ପରିବେଷଣ କରୁଥିଲେ ।

ସାଂସ୍କୃତିକ କର୍ମକେନ୍ଦ୍ର କଟକଠାରୁ ଦୂରରେ ଏକ ପୂର୍ବତନ ଗଡ଼ଜାତ କେନ୍ଦୁଝରଠାରେ ରହି ସୁଦ୍ଧା ଭକ୍ତ ବିନୋଦ, ଅମ୍ବିକାବିଳାସ, ରସ ମୁକ୍ତାବଳୀ, ସହୃଦୟାନନ୍ଦ, ରାମଗାଥା ଓ ବଉଳାଚରିତ ପରି ଗ୍ରନ୍ଥମାନ ସମ୍ପାଦନା କରିପାରିଥିଲେ । ଏ କ୍ଷେତ୍ରରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ତାହାଙ୍କ ପ୍ରାଚୀ ସମିତି ଥିଲା ପଣ୍ଡିତଜୀଙ୍କର ଆଦର୍ଶ ।

ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପନା କାଳରେ ନବାଗତ ତରୁଣ ଅଧ୍ୟାପକମାନଙ୍କୁ ଉତ୍ସାହ, ଆଶ୍ୱାସନା ଓ ଆଶୀର୍ବାଦ ଦେବା ସହିତ ଆପଣା ଗୃହରେ ଆତିଥ୍ୟଦେଇ ଚର୍ଚ୍ଚା କରିବାରେ ସେ ଆନନ୍ଦ ଅନୁଭବ କରୁଥିଲେ । କବି ରାଧାମୋହନ ଗଡ଼ନାୟକ ମେଘଦୂତର ଅନୁବାଦ ଘେନି ପଣ୍ଡିତ୍‌ଜୀଙ୍କ ପାଖକୁ ଆସୁଥିଲେ ଓ ପଣ୍ଡିତ୍‌ଜୀ ତାଙ୍କୁ ଚର୍ଚ୍ଚାରେ ଆପ୍ୟାୟିତ କରିବା ସଙ୍ଗେ ସଙ୍ଗେ ଛନ୍ଦୋବଦ୍ଧ ଅନୁବାଦ ଦିଗରେ ସାହାଯ୍ୟ କରୁଥିଲେ ।

ସଂସ୍କୃତ କଲେଜରେ ଅଧ୍ୟୟନ କାଳରେ ତାଙ୍କର ତଳଶ୍ରେଣୀରେ ପଢୁଥିଲେ ପଣ୍ଡିତ ସଦାଶିବ ଦାଶ । ପଣ୍ଡିତ ଦାଶ ଛାତ୍ରାବସ୍ଥାରେ ସର୍ବଦା ପ୍ରଥମ ସ୍ଥାନ ଅଧିକାର କରୁଥିଲେ ।

Digitized by srujanika@gmail.com

ତାଙ୍କର ପ୍ରତିଭା ଯୋଗୁଁ ସେ ବିଦ୍ୱାନ୍ ଭାବରେ ସମାଦୃତ ହୋଇ ପଣ୍ଡିତମଣ୍ଡଳୀ ଶୋଭିତ କାଶୀଧାମରେ ଅଠର ବର୍ଷ କାଳ କଟାଇଥିଲେ । ସଂସ୍କୃତରେ 'କୋକିଳ ଦୂତ' ନାମକ ଦୂତକାବ୍ୟ ଲେଖିଥିଲେ । ଏହି ଅସାଧାରଣ ବିଦ୍ୱାନ୍ ପଣ୍ଡିତ, ପଣ୍ଡିତପ୍ରବର ବାନାମ୍ବରଙ୍କୁ ସର୍ବାଧିକ ପ୍ରଶଂସା ଓ ସମ୍ମାନ ପ୍ରଦାନ କରୁଥିଲେ ।

କେନ୍ଦୁଝର ରହଣିକାଳରେ ସେ ସେହି ସ୍ଥାନର ସାହିତ୍ୟ, ସଙ୍ଗୀତ, ପ୍ରତ୍ନତତ୍ତ୍ୱ ଓ ଇତିହାସକୁ ଲୋକଲୋଚନକୁ ଆଣିବା ପାଇଁ ସର୍ବଦା ସଜାଗ ଓ ସଚେଷ୍ଟ ଥିଲେ । ରାଜପୁତ୍ରଙ୍କୁ ବିଦ୍ୟାଶିକ୍ଷା ପଦ୍ଧତି ସଂପର୍କରେ କହନ୍ତି— ଖଡ଼ିପାଠ ଶିଖାଇବାବେଳେ ପଣ୍ଡିତ (ଅବଧାନ)ଙ୍କୁ କହିବାକୁ ହୁଏ, ''ଶ୍ରୀଅଙ୍ଗକୁ ଯେବେ ଅଳସ ନ ଲାଗୁଚି କହି ଆଜ୍ଞା ହେଉ 'ଅ' ।'' ରାଜାପୁଅ କେବଳ ଉଚ୍ଚାରଣ କରନ୍ତି 'ଅ' । 'ଅ' ଅକ୍ଷରଟିକୁ ରଜାପୁଅଙ୍କୁ ଶିକ୍ଷା ଦେବାକୁ ଅବଧାନଙ୍କ ଗଳଦଘର୍ମ ପରିଶ୍ରମର ଏ ଗୋଟିଏ ନମୂନା । ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କ ଚର୍ଯାଗୀତି ଆଲୋଚନାରେ ତାଙ୍କର ଗଭୀର ପ୍ରବେଶ ଥିଲା । ସିଦ୍ଧାଚାର୍ଯ ଶାନ୍ତିଦେବ ଓରଫ୍ ଭୁସୁକୁ ରାଉତଙ୍କ ''ଶ୍ରୀଗୁହ୍ୟସମମହାଯୋଗ ତନ୍ତ୍ର ବଳିବିଧି'' ଗ୍ରନ୍ଥରେ ଆପଣାକୁ ଜହୋରବାସୀ ବୋଲି ପରିଚୟ ଦେଇଛନ୍ତି । ଜହୋର୍ ରାଜ୍ୟ କେଉଁଝର ବୋଲି ପଣ୍ଡିତ ମହାଶୟଙ୍କ ମତ ଥିଲା ।

ଶାନ୍ତିଦେବଙ୍କ ପୀଠ କେଉଁଝର ଅନ୍ତର୍ଗତ 'ସୀତାବିଂଝି' ବୋଲି ତାଙ୍କର ମତ ଥିଲା । ଏହା ସନ୍ତେଇ ଭଞ୍ଜ (ଶାନ୍ତିଦେବଙ୍କ କୁଳନାମ ଶାନ୍ତିଭଞ୍ଜ)ରୁ ଅପଭ୍ରଂଶ ହୋଇ ସୀତାବିଂଝି ବା ସୀତାବିଂଝି ହୋଇଥିବା ସେ ବିଶ୍ୱାସ କରୁଥିଲେ । ଏଠାରୁ ଅଳ୍ପ ଦୂରବର୍ତ୍ତୀ ବୈତରଣୀ ନଦୀତଟରେ ବୌଦ୍ଧ ମହାଯାନୀ ସଂସ୍କୃତିର ଅଞ୍ଚଳ ବା ମଣ୍ଡଳ ଥିଲା । ସୀତାବିଂଝି ନିକଟବର୍ତ୍ତୀ ଫୁଲପାହାଡି ବା ଫୁଲଗ୍ରୁଡି ହୁଏନ୍‌ସାଂଙ୍କ ବର୍ଣ୍ଣିତ 'ପୁଷ୍ପଗିରି ବିଶ୍ୱବିଦ୍ୟାଳୟ' ଥିଲା ବୋଲି ସେ ବହୁ ପ୍ରମାଣ ଦେଇଛନ୍ତି । ଏ ସ୍ଥାନରୁ ଛ' ସାତ ମାଇଲ ଦୂରବର୍ତ୍ତୀ ଢିଙ୍କିକୋଟଠାରେ ସିଦ୍ଧାଚାର୍ଯ୍ୟ ଢିଙ୍କିପା'ଙ୍କର ପୀଠ ଥିବା ସେ ନିର୍ଣ୍ଣୟ କରିଥିଲେ । ଏ ସଂପର୍କରେ ଆଶ୍ଚର୍ଯ୍ୟ ଚର୍ଯାଚୟର ପ୍ରଣେତା ତଥା ବୌଦ୍ଧଗାନ ଓ ଦୋହାଗୁଡିକ ଓଡିଶାର ପ୍ରମାଣିତ କରିଥିବା ଡକ୍ଟର କରୁଣାକର କର ମଧ୍ୟ ମତ ଦିଅନ୍ତି ଯେ ସିଦ୍ଧାଚାର୍ଯ୍ୟ 'ଲୁଇପା' ଓଡିଶାର କୌଣସି ରାଜା ଓ ମନ୍ତ୍ରୀଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରି 'ଦାରିକ' ଓ 'ଢିଙ୍କି' ନାମରେ ନାମିତ କରିଥିଲେ ।

ସୀତାବିଂଝିଠାରୁ ଆଠ-ଦଶ ମାଇଲ ଭିତରେ 'କୁକୁରକଟା' ନାମରେ ଉପନଦୀଟିଏ ବୈତରଣୀ ସହିତ ମିଳିତ ହୋଇଛି । ସେହି ଅଞ୍ଚଳରେ ସିଦ୍ଧାଚାର୍ଯ କୁକୁରୀପାଁଙ୍କର ସାଧନାପୀଠ ଥିବା ତାଙ୍କର ବିଶ୍ୱାସ ଥିଲା । ଡିମ୍ବୋ, ଡୁମୁରିଆ ଓ ବୀଣାଝରୀ ନାମ ଚିହ୍ନିତ ଗ୍ରାମମାନଙ୍କରେ ଡୋମ୍ବୀପା ଓ ବୀଣାପା ଆଦି ସିଦ୍ଧଙ୍କର ସାଧନା-ପୀଠ ଥିବା ତାଙ୍କର ମତ । ବୈତରଣୀ ନଦୀ ତଟରେ ତତ୍‌କାଳୀନ ମହାଯାନୀ ବା ବଜ୍ରଯାନୀ—ସହଜଯାନୀ ବୌଦ୍ଧ ସଂସ୍କୃତି ଓ ସାଧନାର

Digitized by srujanika@gmail.com

କ୍ଷେତ୍ର ଥିବା ସମ୍ବନ୍ଧେ ସେ ବହୁ ପ୍ରବନ୍ଧ ରଚ଼ନା କରିଛନ୍ତି । ଆନନ୍ଦପୁର ନିକଟବର୍ତ୍ତୀ 'ବଇଦାଖିଆ'ଠାରେ ବୌଦ୍ଧ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ବିଷୟରେ ସେ ନିର୍ଦ୍ଦେଶିତ କରିଥିଲେ ହେଁ ସେସବୁ ସ୍ଥାନ ଅଦ୍ୟାବଧି ଅନାଲୋଚିତ ।

ପ୍ରାଚୀନ ଗ୍ରନ୍ଥ ଅନୁଶୀଳନ କରି ସେ 'କେନ୍ଦୁଝରରେ ସୁନାଖଣି' ଥିବା କଥା ଉଲ୍ଲେଖ କରି ପ୍ରବନ୍ଧ ପ୍ରକାଶ କରିଥିଲେ । ଏବେ ଅନୁସନ୍ଧାନ ଫଳରେ ତାହା ବାସ୍ତବ ପ୍ରମାଣିତ ହେଉଛି ।

ପ୍ରାଧ୍ୟାପକ ବେଣୁଧର ରାଉତ୍ ପଣ୍ଡିତଜୀଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିଥିଲେ ତାଙ୍କର ପାରିବାରିକ ବନ୍ଧୁତ୍ୱ କାରଣରୁ । ପଣ୍ଡିତଜୀଙ୍କ ସହ ଆଲୋଚନା କରିବାରୁ ସେ ଜାଣିଥିଲେ— ଯେ ଚଂପୁ କେବଳ ଗଦ୍ୟପଦ୍ୟ ମିଶ୍ରିତ ସାହିତ୍ୟକୃତି ନୁହେଁ, ତାହା ନିର୍ଦ୍ଦିଷ୍ଟସଂଖ୍ୟକ ସର୍ଗସଂବଳିତ ଗୀତବିଶେଷ । କବିସୂର୍ଯ୍ୟ ବଳଦେବ ରଥ ସ୍ୱୟଂ ସଙ୍ଗୀତ ଶାସ୍ତ୍ରଜ୍ଞ ଥିବାରୁ ସେ ଭିନ୍ନ ସଂଜ୍ଞା ଗ୍ରହଣ କରି କିଶୋର ଚନ୍ଦ୍ରାନନ୍ଦ ଚଂପୁର ଓଡ଼ିଆ ଗୀତଭାଗ ରଚ଼ନା କରିଛନ୍ତି । ପୁଣି 'ସଂଗୀତ ରତ୍ନାକର' ଭିତ୍ତିରେ ଓବୀ ଓ ଲୋଲୀ ପ୍ରସଙ୍ଗରୁ ଓଡ଼ିଆ 'କୋଇଲି' ଗୀତର ଉଦ୍ଭବ ହୋଇଥିବା ସେ ସମ୍ଭାବନା କରି ଏ ଦୁଇଟିଯାକ ତଥ୍ୟ ପଣ୍ଡିତ ନୀଳକଣ୍ଠଙ୍କୁ ଜଣାଇ-ଥିଲେ । ପଣ୍ଡିତ ନୀଳକଣ୍ଠ ଦାସ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' ପୁସ୍ତକରେ ଏହି ଦୁଇତଥ୍ୟ ଆପଣା ନାମରେ ପ୍ରକାଶ କରିଥିଲେ ହେଁ ପଣ୍ଡିତ ବାନାମ୍ବରଙ୍କ ଆବିଷ୍କାର ପାଇଁ ସ୍ୱୀକୃତି ସୁଦ୍ଧା ଦେଇନାହାନ୍ତି । ଏହିପରି 'ରସ କଳ୍ପଦ୍ରୁମ' ଓ 'ଭକ୍ତିବୈଭବ' ଗ୍ରନ୍ଥର କେତେକ ଶ୍ଳୋକ ମଧ୍ୟ ସେ ପଣ୍ଡିତ ଦାସଙ୍କୁ ଦେଇଥିଲେ । ସେ ସବୁକୁ ସେ ମହାଶୟ ସ୍ୱକୀୟ ପ୍ରଗ୍ରନ୍ଥ ଉଦ୍ଦେଶ୍ୟରେ ସମସ୍ତ ବ୍ୟବହାର କରିଥିଲେ ହେଁ ଓ ଋଣସ୍ୱୀକୃତି ନିମନ୍ତେ ସାମାନ୍ୟତମ ଉଦାରତା ପ୍ରଦର୍ଶନ କରି ନ ଥିଲେ ହେଁ ପଣ୍ଡିତ ବାନାମ୍ବର ସେଥିପାଇଁ ଥିଲେ ଉଦାର, ନିର୍ଲିପ୍ତ ଓ କ୍ଷମାଶୀଳ । ସେ ନିଜେ ଈର୍ଷାଳୁ ନ ଥିଲେ ହେଁ ଅନ୍ୟ ପଣ୍ଡିତମାନେ ତାଙ୍କ ପ୍ରତି ଈର୍ଷାପରବଶ ଥିଲେ ।

ଓଡ଼ିଶାର ପ୍ରଖ୍ୟାତ ଐତିହାସିକ ପ୍ରଫେସର ଘନଶ୍ୟାମ ଦାଶ ପଣ୍ଡିତ ଆଚାର୍ଯ୍ୟଙ୍କଠାରୁ ପାଲି, ପ୍ରାକୃତ, ଅପଭ୍ରଂଶ ଓ ସଂସ୍କୃତ ଶିକ୍ଷା କରୁଥିଲେ । ତାମ୍ରଲେଖ ଓ ଶିଳାଲେଖ ଆଦି ପାଠ କରିବାରେ ପଣ୍ଡିତ ଆଚାର୍ଯ୍ୟ ତାଙ୍କୁ ସାହାଯ୍ୟ କରୁଥିଲେ ।

ବହୁମୁଖୀ ଜ୍ଞାନର ଅଧିକାରୀ ଏହି ପ୍ରତିଭାଧର ପଣ୍ଡିତଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରଣୟନ ହେଉଥିବା 'ଓଡ଼ିଆ ଜ୍ଞାନକୋଷ'ର ସଂପାଦନା କାର୍ଯ୍ୟରେ ସହାୟତା କରିବା ପାଇଁ ଆହ୍ୱାନ ଆସିଲା । ମୁଖ୍ୟ ସଙ୍କଳକ ଓ ସଂପାଦକ ଥିଲେ ଡକ୍ଟର ମାୟାଧର ମାନସିଂହ । ଶିଳ୍ପୀ ଗୋପାଳ କାନୁନ୍‌ଗୋ ଓ ଶ୍ରୀ ଚକ୍ରଧର ମହାପାତ୍ର ଆଦି ଏ କାର୍ଯ୍ୟରେ ତାଙ୍କର ସହକର୍ମୀ ଥିଲେ । ସାହିତ୍ୟ, ସଂସ୍କୃତି ଓ କଳା ସଂପର୍କରେ ବହୁ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବନ୍ଧମାନ ପ୍ରାଚ୍ୟ ବିଦ୍ୟାକ୍ଷେତ୍ରରେ ପ୍ରସ୍ତୁତ କରି ସେ 'ଜ୍ଞାନକୋଷ'ର ପୃଷ୍ଠା ପୂର୍ଣ୍ଣ କରି ଦେଇଛନ୍ତି ।

Digitized by srujanika@gmail.com

ପଣ୍ଡିତଜୀଙ୍କ ପତ୍ନୀ ଯଶୋଦା ଦେବୀ ସଦା ସାହାଯ୍ୟକାରିଣୀ ଓ ସେବିକା । ପାରିବାରିକ ଜୀବନ ସୁଖମୟ । ପୁତ୍ରମାନେ ହେଲେ ବିଭୁତିଭୂଷଣ, ଇନ୍ଦୁଭୂଷଣ, ଶଶିଭୂଷଣ ଓ ଶେଷଭୂଷଣ । କନ୍ୟାମାନେ ହେଲେ ମନୋରମା (ସ୍ୱା. ପରମାନନ୍ଦ), ରେଣୁକା (ସ୍ୱା. ରାଜକିଶୋର), ସ୍ୱରୁପ୍ରଭା (ସ୍ୱା. ଦୁର୍ଗାଚରଣ), ମଞ୍ଜୁଲତା (ସ୍ୱା. ସଞ୍ଜୟ) ମୀନାକ୍ଷୀ (ସ୍ୱା. ଦେବପ୍ରସାଦ) ଓ ଚିନ୍ମୟୀ (ସ୍ୱା. ବିଶ୍ୱଭୂଷଣ) ।

୧୯୬୨ ଖ୍ରୀଷ୍ଟାବ୍ଦରେ ଭାରତକୁ ଚୀନ ଆକ୍ରମଣ କରିବା ସମୟରେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ପଣ୍ଡିତଜୀ ଲେଖିଥିଲେ—

'ଜାଗୃହି ଜାଗୃହୀ ଭାରତ ଜନତେ ରକ୍ଷ ନବ ଗଣତନ୍ତ୍ରଂ
ଗର୍ଜତି ହିମଗିରି--ଗହ୍ୱର ଦାରଣ--ପର-ପର ମରଣ ଯନ୍ତ୍ରମ୍ ।

x x x x

ପରିହୃତ ତବଦ୍ରଂ ବ୍ରଜରଣରଂଗଂ କୁରୁ କରେ ଗୁରୁହେତିଂ
ପାତୟ ଶତ୍ରୋରଥ ନିଜମସ୍ତଂ ସ୍ମରପରହା ଦିବମେତି ।

x x x x

ଶୃଣୁ ତୁହି ନାଚଳସୀମ୍ନି ଦେବଭୁର୍ବି ଦାନବ ତୂର୍ଯ୍ୟ ନିନାଦଂ
ନ କୁରୁ ବିଳମ୍ବଂ ହରପର ଦମ୍ଭଂ ବିସ୍ମୃତ ସର୍ବ ବିବାଦମ୍ ।

ପଣ୍ଡିତଜୀଙ୍କ ସାହିତ୍ୟସେବା, ଧର୍ମ, ଦର୍ଶନ, ସଂସ୍କୃତି ଆଦି ବିଷୟରେ ଆଲୋଚନା ଦେଶବାସୀଙ୍କୁ ମୁଗ୍ଧ କରିଥିଲା । କେଉଁଝର ରାଜା ତା୧୬.୨.୧୯୪୭ରେ ପଣ୍ଡିତଜୀଙ୍କୁ 'ବିଦ୍ୟାଭୂଷଣ' ଉପାଧିରେ ବିଭୂଷିତ କରିଥିଲେ ।

ଭୁବନେଶ୍ୱର ଓଡ଼ିଶା ସାହିତ୍ୟ ଏକାଡେମୀ ତା୨୭.୮.୬୭ରିଖରେ ପଣ୍ଡିତଜୀଙ୍କୁ ଓଡ଼ିଆ ଓ ସଂସ୍କୃତ ଭାଷାରେ ଲିଖିତ ପ୍ରାଚୀନ ଉତ୍କଳୀୟ ବାଣୀ-ସାଧକମାନଙ୍କ ଗ୍ରନ୍ଥର ସଙ୍କଳନ, ସଂଶୋଧନ ଓ ସମୀକ୍ଷଣ କ୍ଷେତ୍ରରେ ଅଧ୍ୟବସାୟ ଏବଂ ମନୀଷାର ପ୍ରମାଣ ଦେଇଥିବା ଯୋଗୁଁ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ।

ଉତ୍କଳ ସାହିତ୍ୟ ସମାଜ ହୀରକ ଜୟନ୍ତୀ ପାଳନ ଅବସରରେ ୮.୫.୧୯୬୨ରେ ପଣ୍ଡିତଜୀଙ୍କର ''ଜୀବନବ୍ୟାପୀ ନିରବଚ୍ଛିନ୍ନ ପ୍ରଗାଢ଼ ଅଧ୍ୟବସାୟ, ମନନଶୀଳତା, ଦେଶାନୁରାଗ ଓ ମାନବିକତାବୋଧ'' ଘେନି ଉତ୍କଳର ସାହିତ୍ୟ ଓ ସଂସ୍କୃତିକୁ ନିଜର ପ୍ରତିଭାରେ ଭାସ୍ୱର କରିବା ସଙ୍ଗେ ସଙ୍ଗେ ଭବିଷ୍ୟତ ଲାଗି ନୂତନ ସଂକେତ ଦେଇଥିବାରୁ ଗଭୀର ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିଥିଲେ ।

Digitized by srujanika@gmail.com

ପଣ୍ଡିତ ବାନାମ୍ବରଙ୍କ କବିତ୍ୱ ଶକ୍ତି ଥିଲା ଅସାଧାରଣ । ନବଭାରତ ମକର ୧୩୫୫ ପୃଷ୍ଠା ୪୬ରେ ପ୍ରକାଶିତ ଶ୍ଳୋକ—

## ମହାମୃନ୍

ଫଁଳୈର୍ମିଷ୍ଟୈଃ ପୁଷ୍ଟୈଃ ସୁଲଳିତ ଦଦୈର୍ଘ୍ରାଣ ସୁଖଦୈ-
ର୍ଘନାଭିଶ୍ଛାୟାଭିଃ ଶମିତ ଜନତା ପଣ୍ଡରୁବରଃ ।
ଯଥା କୃତ୍ୱା ଲୋକୋପକୃତିମସମାଂ ହନ୍ତ ଭଜତେ
କୁଠାରେଣୋଚ୍ଛେଦଂ ତ୍ୱମପି ଚ ମହାମୃନ୍ନସି ତଥା ।।

## ନଦୀ ପ୍ରତି

ପାଷାଣି ତ୍ୱଂ ତରଳହୃଦୟା ସାମ୍ପ୍ରତାତ୍ୱଂ ବିସେନା
ଯୁକ୍ତା ନିମ୍ନାଭିଗମନପରାଃ ମ୍ଭୋନିଧେ ତ୍ୱଂ ପ୍ରିୟାଃସି ।
ଗମ୍ଭୀରାଃପି ସ୍ଫୁଟକଳରବାଃ ନାରତଂ ତ୍ୱଚ୍ଚରିତ୍ରଂ
ବ୍ୟକ୍ତିର୍ବକ୍ତୁଂ ପ୍ରଭବତି କଦା କାଃପି ଧାତ୍ରା ବିନୈବ ।

ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବା ପାଇଁ ତାହାଙ୍କ ରଚିତ ସମରସଙ୍ଗୀତ ମନରେ ବୀରଭାବ ଜାଗ୍ରତ କରିଥାଏ—

ଜହି ଜହି ଜହି ସୋଦରଚୟ ଶାତ୍ରବ ମଭିଯାୟିନଂ
ଶୀଳ ସକଳ ବଞ୍ଚକମିମମବିନୟମିତି ମାୟିନମ୍ ।।
ମାତୃମୁକୁଟ ରତ୍ନହରଣ କର୍ମଣି କୃତ ମାନସଂ
ଦନୁଜନୁଷଂ ମନୁ ସନ୍ତତି ଧର୍ଷଣ ଧୃତ ସାହସମ୍ ।।

ଗୋଟିଏ ଆଶୀର୍ବାଦାତ୍ମକ (ଶ୍ଳେଷ) ଶ୍ଳୋକ—

ବାଲ୍ୟେ ତୁ କୌତୁକ ବଶାଦହିରାଜ ମର୍ଦ୍ଦୀ
ଯଃ କାକରାଧିପସୁତା ରସକେଳି ଲୋଲଃ ।
ନିତ୍ୟାନିରୁଦ୍ଧ ସୁଖଦୋଃସ୍ତୁ ଗଜାର୍ତ୍ତିହନ୍ତା
କୋରାଟ୍ କରୋତୁ ସବରାହିତ ନାଶମାଶୁ ।।
ନଦୀଶକୁଳସଂଭବାଚ୍ୟୁତ ରସାମୃତା ପ୍ଲାବିତା
ଦ୍ରବତ୍ କନକକାନ୍ତିଭାଗ୍ ରୁଚିରବେଶବାରୋଜ୍ଜ୍ୱଳା
ମହୋନ୍ନମନଦା ତୁ ଯା ଭବତି ଭକ୍ତରାଜେଃ କ୍ଷଣାଦ୍
ପ୍ରସାଦୟତୁ ସା ରସାରମଣତେ ମନଃ ଶ୍ରୀଃ ସଦା ।।

ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୬୭ରେ ଅବସର ଗ୍ରହଣ କଲାପରେ ପଣ୍ଡିତଜୀ ଜ୍ୟେଷ୍ଠପୁତ୍ର ବିଭୁତିଭୂଷଣଙ୍କ ନିକଟରେ ଭୁବନେଶ୍ୱର ସୈନିକ ସ୍କୁଲ ପରିସରରେ ଅବସ୍ଥାନ

Digitized by srujanika@gmail.com

କରୁଥିଲେ । ସେହି ସମୟରେ ଦ୍ୱିତୀୟ ଜାମାତା ଅଧ୍ୟାପକ ରାଜ କିଶୋର ମିଶ୍ର ବକ୍ସି-ଜଗବନ୍ଧୁ ମହାବିଦ୍ୟାଳୟର ଇଂରାଜୀ ଅଧ୍ୟାପକଙ୍କ ବାସଭବନରେ ମଧ୍ୟ କେତେକ ସମୟ ଅବସ୍ଥାନ କରୁଥିଲେ । ଅଧ୍ୟାପକ ମିଶ୍ର ଓ ଓଡ଼ିଆ ଅଧ୍ୟାପକ ବେଣୁଧର ରାଉତ ଆଦିଙ୍କ ଅନୁରୋଧ କ୍ରମେ ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣିର ସଂସ୍କୃତ ଅନୁବାଦ କରିଥିଲେ । ବିଦଗ୍ଧ ଚିନ୍ତାମଣିର ୨୫ ଛାନ୍ଦର ଅନୁବାଦ ୧୯.୮.୭୦ ମସିହାରେ ଶେଷକରି ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାର ଗୋଚାରଣ ଛାନ୍ଦର ଅନୁବାଦ କଲେ ଲୋତକାପ୍ଲୁତ ନୟନରେ—

ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ,
ବାତ୍ସଲ୍ୟ ମମତା ଘେନି ଭାଳୁଛନ୍ତି ମାତ —କଳାମାଣିକରେ । ୧ ।
ନିର୍ଦ୍ଧନ ସଞ୍ଚାଳି ମୋର ଦରିଦ୍ରପସରା
ଅନ୍ଧର ଲଉଡ଼ି ବାବୁ ହୃଦରତ୍ନ ହାରା —କଳାମାଣିକରେ । ୨ ।

ଏହାର ଅନୁବାଦ ହେଲା—

କଦା ଦିନାନ୍ତେ ବିପିନଂ ଗତେ ହରୌ
ବିଳମ୍ବୟତ୍ୟେବ ନିତାନ୍ତ ଦୁଃଖିତା
ବିଭାବୟନ୍ତୀ ସୁତବତ୍ସଳା ସୁତଂ
ବିଳାପମନ୍ୱ କୁରୁତେ ବିଶଙ୍କିତା ।।
ନିଧ୍ୱର୍ଦରିଦ୍ରସ୍ୟ ମମାସି ସାମ୍ପ୍ରତଂ
ତ୍ୱମେବ ଚକ୍ଷୁରହିତସ୍ୟ ଯଷ୍ଟିକା
ତ୍ୱମେବ ବକ୍ଷଃସ୍ଥିତ ରତ୍ନମାଳିକା
ତ୍ୱମେବ ପିତ୍ରୋରସି ଦୃଷ୍ଟିତର୍ପଣଃ ।। ଇତ୍ୟାଦି ।

## ପଣ୍ଡିତଜୀଙ୍କ କଥିତ କେତୋଟି ଶ୍ଲୋକ

ପ୍ରାକ୍ ପାଦୟୋ ପତତି, ଖାଦତି ପୃଷ୍ଠ ମାଂସଂ
କର୍ଣ୍ଣେ କିମପି ରୌତି, ଶନୈ ର୍ବିଚିତ୍ରମ୍,
ଛିଦ୍ରଂ ନିରୂପ୍ୟ ସହସା ପ୍ରବିଶତ୍ୟଶଙ୍କଃ
ସର୍ବଂ ଖଳସ୍ୟ ଚରିତମ୍ ମଶକଃ କରୋତି ।

—ମଶାଟିଏ । ଆଗେ ପାଦ ପାଖରେ ବୁଲେ, ପାଦତଳେ ପଡ଼େ । ପିଠିଆଡ଼େ ଉଡ଼ି ମାଂସ ଝୁଣେ । କାନ ପାଖରେ ଆସି ଗୁଣୁଗୁଣୁ ହୁଏ, ଧୀରେ ଧୀରେ ଚଳି ବାଟ ଖୋଜୁଥାଏ । ହଠାତ୍ ଛିଦ୍ର ଦେଖି ପ୍ରବେଶ କରି ଶଙ୍କିତ କରିଦିଏ । ସବୁ ଖଳଲୋକଙ୍କ ଚରିତ୍ର ଏହିପରି । ତେଣୁ ଖଳ ଓ ଦୁର୍ଜନମାନଙ୍କ ଠାରୁ ଦୂରରେ ରହିବ ।

Digitized by srujanika@gmail.com

ପିକାଃ କୃଷ୍ଣିକୃତ୍ୟ ଯେନ ହଂସାଶ୍ଚ ଧବଳିକୃତା,
ମୟୂରାଃ ଚିତ୍ରିତ ଯେନ ସ ମେ ବୃତ୍ତି ବିଧାସ୍ୟତି ।

—କୋକିଳ କୃଷ୍ଣବର୍ଣ୍ଣ, ହଂସ ଧବଳ ବର୍ଣ୍ଣ, ମୟୂର ଚିତ୍ରିତ, ମାତ୍ର ଯେ ଯାହାର ବୃତ୍ତି ଆଚରଣ କରିବା ବିଧାତା ପ୍ରଦତ୍ତ ।

ଗୋଟିଏ କୌତୁକିଆ ଶ୍ଳୋକ କହନ୍ତି । ଶ୍ୱଶୁର ଘରେ ଚାରି ଜୋଇଁ ରହି ଭୂରିଭୋଜନ ପାଇବାରୁ ଆଉ ଯିବାକୁ ମନକଲେ ନାହିଁ । ସେମାନଙ୍କୁ କିପରି ଦୂର କରାଯିବ, ସେଥିପାଇଁ ବେଳୁବେଳ ହତାଦର କରାଗଲା । ଭାତରେ ଘିଅ ଦିଆ ନ ଯାଆନ୍ତେ ହରି ଚାଲିଲେ, ପୀଢ଼ା ନ ଦେବା ଦେଖି ମାଧବ ଗଲେ । ମୋଟା ବଗଡା ଚାଉଳର ଭାତ ଦେବା ଦେଖି ପୁଣ୍ଡରୀକାକ୍ଷ ଗଲେ । ଶେଷ ଯାଏ ରହିଗଲେ ଧନଞ୍ଜୟ । ତାଙ୍କ ପାଇଁ ପ୍ରହାର ବ୍ୟବସ୍ଥା କରିବାକୁ ପଡ଼ିଲା ।

ହବିର୍ବିନା ହରି ଯାତି, ବିନା ପୀଠେନ ମାଧବ,
ତଣ୍ଡୁଳେନ ପୁଣ୍ଡରୀକାକ୍ଷ, ପ୍ରହାରେଣ ଧନଞ୍ଜୟ ।

ଆଉ ଗୋଟିଏ ହରି ଓ ହରିତକୀ (ହରିଡା) ସମ୍ବନ୍ଧେ—

ହରି ହରିତକୀଚୈବ, ଗାୟତ୍ରୀ ଜାହ୍ନବୀଜଳଂ
ଅନ୍ତର୍ମଳ ବିନାଶାୟ, ଭଜେତ୍, ଖାଦେତ୍, ଜପେତ୍, ପିବେତ୍ ।

ଇଦମ୍ (କ୍ଳୀବଲିଙ୍ଗ) ଇୟମ୍ (ସ୍ତ୍ରୀଲିଙ୍ଗ), ଅୟମ୍ (ପୁଂଲିଙ୍ଗ) ବିଶେଷଣ ଯୁକ୍ତ କରି ଅନ୍ୟ ଏକ ଶ୍ଳୋକ ହେଲା—

ଇଦମେବ ହି ପାଣ୍ଡିତ୍ୟଂ,
ଇୟମେବ ବିଦଗ୍ଧତା,
ଅୟମେବ ପରୋଧର୍ମଃ
ଆୟାଦଳ୍ପତରୋ ବ୍ୟୟଃ ।

—ଇଦମ୍‌ରେ ପାଣ୍ଡିତ୍ୟ, ଇୟମ୍‌ରେ ବିଦଗ୍ଧତା, ଚାତୁରୀ; ଅୟମ୍ ଲାଗିଲେ ପରମଧର୍ମ । ସବୁଠୁ ବଡ଼ କଥା ହେଲା— ଆୟଠାରୁ ଅଳ୍ପ ବ୍ୟୟ କର ।

ସରଳ, ନିରାଡମ୍ବର ଜୀବନ ଅତିବାହିତ କରିଥିଲେ ଜୀବନସାରା । ହେଲେହେଁ ଅତିଥିବତ୍ସଳତା ଓ ବନ୍ଧୁପ୍ରୀତି ଥିଲା ତାଙ୍କର ଚିରସହଚର । ଏ ସଂପର୍କରେ ଗୋଟିଏ ବ୍ୟକ୍ତିଗତ ଅନୁଭୂତି । ପ୍ରାୟ ୧୯୫୭ ମସିହାର ଘଟନା । ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଡଗରପଡ଼ା ବାସଭବନରେ କବିଙ୍କ ପୁତ୍ର ହେମନ୍ତ କିଶୋର ବଳଙ୍କୁ ମୋର ସଦ୍ୟ ପ୍ରକାଶିତ 'ପଲ୍ଲୀକବି ପରିଚୟ' ପୁସ୍ତକଟିଏ ଦେବାକୁ ଯାଇଥାଏ । ସେଠାରେ ଜଣେ ଗାଉଁଲି ଭଦ୍ରଲୋକଙ୍କ ସହିତ ଦେଖାହେଲା । କଥାପ୍ରସଙ୍ଗରେ ସେ କହିଲେ— ସେ ବେଣ୍ଟକାରବାସୀ ଏବଂ ପଣ୍ଡିତ

Digitized by srujanika@gmail.com

ବାନାମ୍ବରଙ୍କ ବାଲ୍ୟବନ୍ଧୁ । ତାଙ୍କ ସହିତ ଦେଖାହେଲେ ଖୁସି ହୁଅନ୍ତେ । ମୁଁ ପଣ୍ଡିତ୍‌ଜୀଙ୍କ ଘର ଠିକଣା ଜାଣେ କହିବାରୁ ସେ ମୋ ସହିତ ଡଗରପଡ଼ାରୁ ଚାଲିଚାଲି ପଣ୍ଡିତଜୀଙ୍କ ତତ୍କାଳୀନ ଆବାସସ୍ଥଳୀ ଦେଉଳସାହିସ୍ଥିତ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଗୃହକୁ ଗଲେ । ତାଙ୍କୁ ଦେଖି ପଣ୍ଡିତ୍‌ଜୀ ଆତ୍ମହରା ହୋଇଗଲେ । ଆନନ୍ଦରେ କୁଣ୍ଢାଇ ପକାଇଲେ । ମୋତେ ବୋଧହେଲା— ସତେ ଯେପରି ଶ୍ରୀକୃଷ୍ଣ ଓ ସୁଦାମାଙ୍କ ଭେଟ ହେଲା ପରା ! ସଙ୍ଗେ ସଙ୍ଗେ ପିଲାମାନଙ୍କୁ ଡାକି ପରିଚିତ କରାଇଲେ । କହିଲେ, ''ଦେଖ, ଏ ତୁମର ମଉସା ହେବେ । ଏହାଙ୍କ ପାଇଁ ତୁରନ୍ତ ଜଳଖିଆ ବନ୍ଦୋବସ୍ତ କର ।'' ସଙ୍ଗେ ସଙ୍ଗେ ଲୁଚି ଓ ଆଳୁଭଜା ପ୍ରସ୍ତୁତ ହେଲା ଓ ମଉସାଙ୍କ ସହିତ ତାହାଙ୍କ ଗାଇଡ୍ ଥିବାରୁ ମୁଁ ମଧ୍ୟ ଆପ୍ୟାୟିତ ହେଲି । ଏ ଖରାଟାରେ ତାଙ୍କର ବାଲ୍ୟବନ୍ଧୁଙ୍କୁ ନେଇ ସାକ୍ଷାତ୍ କରାଇଥିବାରୁ ପଣ୍ଡିତ୍‌ଜୀ ମୋତେ ମଧ୍ୟ ଆଶୀର୍ବାଦ କଲେ । ଘଟନାଟି ଛୋଟ ହେଲେ ବି ପଣ୍ଡିତଜୀଙ୍କ ଉଦାର ଭାବ ଓ ସ୍ନେହଶୀଳ ବାକ୍ୟ ଅଦ୍ୟାବଧି କର୍ଣ୍ଣକୁହରରେ ଗୁଞ୍ଜରିତ ହୁଏ ।

ସୈନିକ ସ୍କୁଲ୍‌ରେ ବଡ଼ପୁଅଙ୍କ ସହିତ ଅବସ୍ଥାନ ପରେ କଟକରେ ଶେଷଜୀବନ କଟାଇବା ମାନସରେ ଦ୍ୱିତୀୟ ପୁତ୍ର ଇନ୍ଦୁଭୂଷଣଙ୍କ ବାସଭବନରେ ଆସି ରହିଥିଲେ । ଶାରୀରିକ କଷ୍ଟ ବା ରୋଗର ଯାତନା ପ୍ରତି ସେ ଭ୍ରୂକ୍ଷେପ କରୁନଥିଲେ । ଲୁଗାପଟା ତଳେ ଲୋଟିପଡ଼େ । ପେଟତଳେ ତକିଆଟିଏ ଭରାଦେଇ ସାରସ୍ୱତ ସାଧନାରେ ନିବିଷ୍ଟ ରହନ୍ତି । ଚାରିପଟେ ଇତସ୍ତତଃ ହୋଇ ରହିଥାଏ କେତେ ପ୍ରକାର ପୁସ୍ତକ, ଲିଖନ ଉପକରଣ, ପ୍ରିୟ ତିଲକ୍ ମହାରାଜଙ୍କ ସମ୍ପାଦିତ ଭଗବଦ୍‌ଗୀତା, ଅମରକୋଷ ଓ ଦର୍ଶନ ସାର ସଂଗ୍ରହ ଆଦି ପୁସ୍ତକମାନ । ପତ୍ନୀ ଯଶୋଦା ଦେବୀ ପତିଙ୍କର ପାଖେ ପାଖେ ରହି ସର୍ବଦା ସାହାଯ୍ୟ ତତ୍ପରା ।

୧୯୬୮ ମସିହାରେ ବିଶ୍ୱବିଦ୍ୟାଳୟରୁ ଅବସର ନେଲା ପରେ କଟକରେ ଭଡ଼ାଘର ଛାଡ଼ି ଦେଇଥିଲେ । ୧୯୭୮ ମସିହା ଜାନୁଆରୀ ମାସରେ ତାଙ୍କୁ ଚିକିତ୍ସା ପାଇଁ କଟକ ବଡ ଡାକ୍ତରଖାନାକୁ ଅଣାଗଲା । ତାଙ୍କର ଅବସ୍ଥା ଶୋଚନୀୟ ହୋଇପଡ଼ିଥିଲା । ଖୁବ୍ କଷ୍ଟରେ ଟିକେ ଟିକେ ତରଳ ଖାଦ୍ୟ ଦିଆଯାଉଥିଲା । ସ୍ୱର କ୍ଷୀଣ । କଥା ପ୍ରାୟ ବୁଝିହେଉ ନ ଥିଲା ।

କେତେ ମାସ ଚିକିତ୍ସା ଚାଲିବା ପରେ ବିଗତ ଦିନର ବାସସ୍ଥଳୀର ସ୍ମୃତି ପାଇଁ ତାଙ୍କୁ ଦେଉଳସାହି ସ୍ଥିତ ଏକ ଭଡ଼ାଘରକୁ ଅଣାଗଲା । ସେଠାରେ ମଧ୍ୟ ଚିକିତ୍ସା ଚାଲିଲା । ଅବସ୍ଥାରେ କିଛି ଉନ୍ନତି ଘଟିଲା । ମାତ୍ର ସେଠାକାର ପରିବେଶ ତାହାଙ୍କ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ନ ଥିବାରୁ ଶେଷରେ ତାଙ୍କ ପୂର୍ବ ବାସସ୍ଥାନ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଘରକୁ ଅଣାଗଲା । ସ୍ୱାସ୍ଥ୍ୟରେ କିଛି ଉନ୍ନତି ହୋଇଥିଲେ ହେଁ ସେ ଚଳତ୍‌ଶକ୍ତିହୀନ ହୋଇ ପଡ଼ିରହୁଥିଲେ ।

Digitized by srujanika@gmail.com

ତା୨୮.୮.୭୮ ସନ୍ଧ୍ୟା । ଅଧ୍ୟାପକ ବନ୍ଧୁ ଶ୍ରୀଧର ଦାସ ଆଉ ଜଣେ ବନ୍ଧୁଙ୍କ ସହ ପଣ୍ଡିତଜୀଙ୍କୁ ଦେଖିବାପାଇଁ ଯାଇଥିଲେ । ଦୁହେଁ ପଣ୍ଡିତଜୀଙ୍କ ରୋଗଶଯ୍ୟା ପାଖରେ ବସିଲେ । ତାଙ୍କ ନିର୍ଦ୍ଦେଶରେ ତାହାଙ୍କ ପତ୍ନୀ ଦୁଇବନ୍ଧୁଙ୍କୁ ପାନ ଖାଇବାକୁ ଦେଲେ । ସେଦିନ ସେ ଅନ୍ୟ ଦିନ ଅପେକ୍ଷା ପ୍ରଫୁଲ୍ଲ ଥିବା ମନେ ହେଉଥିଲା । ପଣ୍ଡିତ୍‌ଜୀ ଡକ୍ଟର ପରିଜା ଓ କାଳୀବାବୁଙ୍କ ମୃତ୍ୟୁ ଏବଂ ସେମାନଙ୍କର ଶୁଦ୍ଧି-କ୍ରିୟା ବିଷୟ ପଚାରି ବୁଝିଲେ । ଦେଶର ରାଜନୀତି ଖବର ମଧ୍ୟ ଜାଣିବାକୁ ଚାହିଁଲେ । ତା'ପରେ ଟିକେ କଣେଇ ହୋଇ ଶୋଇବାପାଇଁ ଇଚ୍ଛା ପ୍ରକାଶ କରନ୍ତେ ବନ୍ଧୁଦ୍ୱୟ ତାଙ୍କୁ ଧରାଧରି କରି ସେହିପରି ଶୁଆଇଦେଲେ । ସେ ଆଖି ବୁଜିବାରୁ ବିଶ୍ରାମରେ ବାଧା ଦେବା ଉଚିତ୍ ନୁହେଁ ଭାବି ବନ୍ଧୁଦ୍ୱୟ ବିଦାୟ ନେଇ ଚାଲିଆସିଲେ । ଡାର ଘଣ୍ଟାକପରେ ତାଙ୍କର ପୁଅ ଶ୍ରୀଧରବାବୁଙ୍କୁ ଖବର ଦେଲେ, ପଣ୍ଡିତ୍‌ଜୀ ଆଉ ନାହାନ୍ତି ।

ଏଥିରୁ ଏତିକି ପ୍ରତୀତ ହୁଏ ଯେ ଭଗବାନ୍‌ଙ୍କ ପାଦପଦ୍ମରେ ସର୍ବଦା ମତି ରଖିଥିବା ବ୍ୟକ୍ତି ସଜ୍ଞାନରେ ବିଦାୟ ନିଅନ୍ତି । ସେହି ସରଳ, ନିରଳସ, ନିରାଡମ୍ବର ବ୍ୟକ୍ତି ସର୍ବଦା ଗୋପୀ ଗୀତା ଗାନ କରି ଭଗବାନ୍ ଶ୍ରୀକୃଷ୍ଣଙ୍କ ପଦାରବିନ୍ଦରେ ଆପଣାକୁ ଉତ୍ସର୍ଗ କରିଥିବାରୁ ଏପରି କ୍ଳେଶହୀନ ଭାବରେ ଅମୃତତ୍ୱ ପ୍ରାପ୍ତ ହେଲେ ।

ବିଦ୍ୟାଭୂଷଣଙ୍କ ବିୟୋଗ ଫଳରେ ଉତ୍କଳର ପଣ୍ଡିତମଣ୍ଡଳୀ ମଧ୍ୟରୁ ଗୋଟିଏ ନକ୍ଷତ୍ର ଅସ୍ତମିତ ହେଲା । ସେ ଥିଲେ ଯଥାର୍ଥରେ ପଣ୍ଡିତ । ଅନ୍ୟ ସଂସ୍କୃତଜ୍ଞମାନଙ୍କ ପରି ସେ ଶବ୍ଦ ଅର୍ଥ ଭିତରେ ଆପଣାକୁ ଆବଦ୍ଧ କରୁନଥିଲେ । ବରଂ ସମାଲୋଚକର ଦୃଷ୍ଟିରେ ଅନୁଧ୍ୟାନ ଓ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରି ଏକ ସିଦ୍ଧାନ୍ତରେ ଉପନୀତ ହେବା ଥିଲା ତାଙ୍କର ବୈଶିଷ୍ଟ୍ୟ ।

ତାଙ୍କର ତିରୋଧାନରେ ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକବୃନ୍ଦ, ପତ୍ରପତ୍ରିକା, ଉତ୍କଳ ବିଶ୍ୱବିଦ୍ୟାଳୟ, ଓଡ଼ିଶା ସାହିତ୍ୟ ଏକାଡେମୀ, ଉତ୍କଳ ସାହିତ୍ୟ ସମାଜ, ଭାରତୀୟ ବିଦ୍ୟାଭବନର ଓଡ଼ିଶା ଶାଖା, ବଡଜେନା ସଂସଦ, ଖ୍ରୀଷ୍ଟ କଲେଜ ଆଦି ଅନୁଷ୍ଠାନ ଶୋକବାର୍ତ୍ତାମାନ ପ୍ରେରଣ କରିଥିଲେ ଓ ବାଣୀଭୂଷଣଙ୍କ ସ୍ମୃତିରକ୍ଷା ପାଇଁ ବ୍ୟବସ୍ଥା କରିବା ନିମନ୍ତେ ଇଚ୍ଛାପ୍ରକାଶ କରିଥିଲେ । ତାହାଙ୍କ ପ୍ରଥମ ବାର୍ଷିକ ଶ୍ରାଦ୍ଧୋତ୍ସବ ଉପଲକ୍ଷେ ବଲାଙ୍ଗୀରର "ଆତ୍ମପ୍ରକାଶନୀ" ଅନୁଷ୍ଠାନ 'ବିଦ୍ୟାଭୂଷଣ ସ୍ମରଣେ' ଶିରୋନାମାରେ ଏକ ସ୍ମରଣିକା ପ୍ରକାଶ କରିଥିଲେ ।

ପଣ୍ଡିତଜୀଙ୍କର ବହୁ ରଚନା ଅଦ୍ୟାବଧି ଅପ୍ରକାଶିତ ଓ କେତେକ ଦୁଷ୍ପ୍ରାପ୍ୟ । କବି ଡିଣ୍ଡିମ ଜୀବଦେବାଚାର୍ଯ୍ୟଙ୍କ 'ଭକ୍ତି ବୈଭବ' ନାଟକର ମୁଦ୍ରଣ ପାଇଁ ସାଂସ୍କୃତିକ ବ୍ୟାପାର ବିଭାଗକୁ ଦେଇଥିବା ପାଣ୍ଡୁଲିପି କୌଣସି ସୁଧୀ ସାହିତ୍ୟିକଙ୍କ ଦ୍ୱାରା ଅପହୃତ ହୋଇଥିବା ଓ ପୁନରୁଦ୍ଧାର ସମ୍ଭବ ନଥିବା ସେ ଜୀବଦ୍ଦଶାରେ ଜାଣିଥିଲେ । ଏହାଠାରୁ ବଳି ଆଉ କି ଦୁର୍ଭାଗ୍ୟ ଥାଇପାରେ !

— ୦ —

Digitized by srujanika@gmail.com

# ଅମ୍ବିକା ବିଳାସ

'ଅମ୍ବିକା ବିଳାସ' କାବ୍ୟଟି କେନ୍ଦୁଝରର ରାଜକବି ମହାରାଜା ପ୍ରତାପ ବଳଭଦ୍ର ନାରାୟଣ ଭଞ୍ଜଙ୍କ କୃତ ଥିବାରୁ ବିଦ୍ୟାଭୂଷଣ ବାନାମ୍ବର ୧୯୩୭ରେ ଏହାକୁ 'କେନ୍ଦୁଝର ଗ୍ରନ୍ଥମାଳା' ମଧ୍ୟରେ ସଂପାଦନା କରି ପ୍ରକାଶ କରିଥିଲେ । ସାଧାରଣତଃ ରାଜାମାନଙ୍କ ରାଜସଭାର ଦରବାରୀ ପଣ୍ଡିତ ବା କବିମାନେ କାବ୍ୟରଚନା କରି ରାଜାମାନଙ୍କ ନାମରେ ଭଣିତାପୂର୍ବକ ପାରିତୋଷିକ ଲାଭ କରିବା ଏକ ରାଜକୀୟ ପରଂପରା ଥିଲା । ମାତ୍ର ଭଞ୍ଜବଂଶୀୟ ରାଜାମାନେ ସ୍ୱୟଂ ବିଦ୍ୱାନ୍ ଓ କବି ଥାଇ ସ୍ୱକୀୟ ପାଣ୍ଡିତ୍ୟ ଓ ପ୍ରତିଭାର ନିଦର୍ଶନ ଦର୍ଶାଇ ଯାଇଛନ୍ତି । ଘୁମୁସର (ଭଞ୍ଜନଗର) ରାଜବଂଶରେ ଧନଞ୍ଜୟ ଭଞ୍ଜ ଓ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କୃତି ବିଷୟ କାହାରିକୁ ଅବଦିତ ନାହିଁ ।

କେନ୍ଦୁଝର ରାଜବଂଶର ମହାରାଜା ଗୋବିନ୍ଦ ଭଞ୍ଜ (୧୬୦୪-୩୪ ଖ୍ରୀ.ଅ) ଗଜପତି ନରସିଂହଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ପୁରୀରେ ରଥଯାତ୍ରା ଦର୍ଶନ କାଳରେ ଆଶୁ କବିତ୍ୱ ପ୍ରଦର୍ଶନ ପାଇଁ ଦଶପଦିଆ 'ଜଗନ୍ନାଥ ଜଣାଣ' ରଚନା କରିଥିଲେ । 'ବଉଳା ଚରିତ', 'ରାମଗାଥା', 'ଶ୍ରୀ ଚରଣ ସୁଧାନିଧି' ଓ 'ଭକ୍ତ ବିନୋଦ' ମଧ୍ୟ ଏହି ରାଜକବିଙ୍କ ରଚନା । ତନ୍ମଧ୍ୟରୁ ବଉଳା ଚରିତ, ରାମଗାଥା ଓ ଭକ୍ତବିନୋଦ ପଣ୍ଡିତ ବାନାମ୍ବରଙ୍କ ଦ୍ୱାରା ଓ ଶ୍ରୀଚରଣ ସୁଧାନିଧି ଅଧ୍ୟାପକ ରଘୁନାଥ ମହାପାତ୍ରଙ୍କ ଦ୍ୱାରା ସଂପାଦିତ ଓ ପ୍ରକାଶିତ । ଏହି ରାଜାଙ୍କର 'ରସପୋଇ' ନାମରେ ଏକ କାବ୍ୟ ଅଛି ।

ମହାରାଜା ଲକ୍ଷ୍ମୀନାରାୟଣ ଭଞ୍ଜ (୧୬୫୨-୮୮ ଖ୍ରୀଷ୍ଟାବ୍ଦ) ପ୍ରଖ୍ୟାତ ବଳଦେବ ଜୀଉଙ୍କ ପ୍ରତିଷ୍ଠାତା । "ରାଧାକାନ୍ତ ରାଧାମୋହନ ହେ ଗୋବିନ୍ଦ ଲବେ ଦୟା ନାହିଁ କି" ଜନପ୍ରିୟ ଜଣାଣର ସେ ରଚୟିତା ।

ମହାରାଜା ଜଗନ୍ନାଥ ଭଞ୍ଜ (୧୬୮୮-୧୭୦୦ ଖ୍ରୀ.ଅ.) 'ହେରା ଗୀତ' ବା 'ଲକ୍ଷ୍ମୀନାରାୟଣୀ ବଚନିକା' ପାଇଁ ବିଖ୍ୟାତ ।

ଗୋପୀନାଥ ଭଞ୍ଜ (୧୭୧୯-୧୭୩୬) ବହୁ ଚଉପଦୀର ସ୍ରଷ୍ଟା ଥିଲେ । ପଣ୍ଡିତ ଆଗ୍ନର୍ଯ୍ୟଙ୍କ ସଂପାଦିତ କେନ୍ଦୁଝର ଗ୍ରନ୍ଥମାଳାରେ ପ୍ରକାଶିତ ଅଶ୍ୱଶାସ୍ତ୍ରର ସ୍ରଷ୍ଟା ଜଗତେଶ୍ୱର (ଜଗଦୀଶ୍ୱର) ନାରାୟଣ ଭଞ୍ଜ (୧୭୫୮-୧୭୬୪ ଖ୍ରୀ.ଅ.)ଙ୍କ ପୁତ୍ର ଥିଲେ ରାଜକବି ପ୍ରତାପ ବଳଭଦ୍ର ନାରାୟଣ ଭଞ୍ଜ (୧୭୬୪-୧୭୯୨ ଖ୍ରୀ.ଅ.) ଅମ୍ବିକା ବିଳାସର ରଚୟିତା । ଏହି କାବ୍ୟର ରଚନାକାଳ ସମ୍ବନ୍ଧରେ କେନ୍ଦୁଝରର ଗବେଷକ ଶ୍ରୀ ଭରତ ଚନ୍ଦ୍ର ଦାସ ବହୁ

Digitized by srujanika@gmail.com

ଆୟାସ ସ୍ୱୀକାର କରି ଅମ୍ବିକା ବିଳାସ କାବ୍ୟର ୧୫ଶ ଛାନ୍ଦ ୧୭ ପଦର ଅର୍ଥ ତର୍ଜମା କରିଅଛନ୍ତି । ତହିଁରେ ଅଛି—

ଅଠର ପଦ ସରସ ରସ ପ୍ରବନ୍ଧ
ଅଙ୍କ ଗଣ ହର ମଲ ବଣ ଶକ ବନ୍ଧ ।

ଏହି ଦ୍ୱିତୀୟ ପାଦର ପାଠାନ୍ତର ଭାବରେ ସୁଧାକର ପଟ୍ଟନାୟକଙ୍କ ସମ୍ପାଦିତ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ବ୍ରଜନାଥ ଗ୍ରନ୍ଥାବଳୀ ପୁସ୍ତକରେ 'ଅଙ୍କଗଣ ହୃଦୟ ଲବଣ କବନ୍ଧ' ଲିଖିତ ଥିବାରୁ ଏହି ପଦ ଉପରେ ଗୁରୁତ୍ୱ ଦିଆଯାଇନାହିଁ । ଶ୍ରୀଯୁକ୍ତ ଭରତ ଚନ୍ଦ୍ର ଦାସ ଏହାର ଟୀକା କରିଛନ୍ତି—

ଅଙ୍କ— କେନ୍ଦୁଝରର ସିଂହାସନରେ ଅଭିଷିକ୍ତ ରାଜାଙ୍କ ଅଙ୍କ - ୩ ।
ଗଣ— ଜ୍ୟୋତିଷ ଶାସ୍ତ୍ରମତେ ଦେବ, ନର ଓ ରାକ୍ଷସ । ତେଣୁ ଗଣ ସଂଖ୍ୟା ୩ ।
ହର— ପ୍ରଣବ ଓଁ (ଅ ଉ ମ) ମଧ୍ୟରେ ବର୍ଣ୍ଣର କ୍ରମ - ୩ ।
ମଲ— (ମଲ୍ଲ) ଯୋଦ୍ଧା, ପୁରାଣରେ ପ୍ରସିଦ୍ଧ ଅଷ୍ଟମଲ୍ଲ - ୮

ବଣ— ପୌରାଣିକ ୧୨ବଣ (ବୃହଦ୍‌ବନ, ମଧୁବନ, ତାଳବନ, କାମ୍ୟକବନ, ବହୁଳ ବନ, କୁମୁଦ ବନ, ଖଦିର ବନ, ଭଦ୍ର ବନ, ଭାଣ୍ଡୀର ବନ, ଶ୍ରୀବନ, ଲୋହ ବନ ଓ ବୃନ୍ଦାବନ) —ଏଣୁ ସଂଖ୍ୟା ୧୨ । ଅତଏବ, ଏମାନଙ୍କ ସମଷ୍ଟି ରାଶିଟି ହେଲା (୩+୩+୮+୧୨) = ୨୬ ।

ଏଥିରୁ ମହାରାଜା ବଳଭଦ୍ର ଭଞ୍ଜଙ୍କର ୨୬ ଅଙ୍କ ସୂଚିତ ହେଉଅଛି । ଅଙ୍କ ଗଣନାରେ ୧,୬,୧୦ (୦ଯୁକ୍ତ ଅଙ୍କ), (୧୬ଯୁକ୍ତ ଅଙ୍କ) ଓ ୨୦ ଗଣ୍ୟ ହେଉନଥିବାରୁ ଏହା ରାଜତ୍ୱର ୨୧ବର୍ଷ (୧୭୬୪+୨୧) ୧୭୮୫ ଖ୍ରୀଷ୍ଟାବ୍ଦ ପୂର୍ବରୁ ଲେଖାଯାଇଥିବା ଏହି ଅନ୍ତର୍ନିହିତ ପ୍ରମାଣରୁ ଜଣାଯାଏ ।

ଏହି ପଦ ଶେଷରେ ଥିବା 'ଶକ ବନ୍ଧ'କୁ ଭରତବାବୁ ଶକାବ୍ଦରେ ହିସାବ କରି ୧୭୦୭ ଶକାବ୍ଦ ଓ ଓଡ଼ିଆ ୧୧୯୨ ସାଲ ଓ ଏଠାରେ କାବ୍ୟ ବନ୍ଧ ବା ବନ୍ଦ ହୋଇ ପରେ ୧୭୮୪ରେ ବାମଣ୍ଡା ଓ ପାଲଲହଡା ଯୁଦ୍ଧ ଶେଷ ପରେ ଲେଖିଥିବା ଅନୁମାନ କରିଛନ୍ତି ।

ଏହି ଛାନ୍ଦ ଅବନା ନିୟମ — ପ୍ରାନ୍ତ ଯମକରେ ମଙ୍ଗଳ ରାଗରେ ରଚିତ । ଏହି ରାଗ ଦୁଇପାଦରେ ଏକ ପଦ ଓ ପ୍ରତ୍ୟେକ ପାଦ ତେର ଅକ୍ଷର ବିଶିଷ୍ଟ ହେଲେହେଁ ଦ୍ୱିତୀୟ ପାଦଟି ୧୪ ଅକ୍ଷର ବିଶିଷ୍ଟ ହୋଇଥିବାରୁ ପୋଥି ଲେଖନକାରଙ୍କ ଭ୍ରାନ୍ତି ସମ୍ବନ୍ଧେ ସନ୍ଦେହ ଉପୁଜୁଛି । ଏହି ଛାନ୍ଦଟି ପ୍ରାନ୍ତ ଯମକ ଥିବାରୁ 'ପ୍ରବନ୍ଧ' ସହିତ 'କବନ୍ଧ' ପଦ ମିଳୁଛି । ମାତ୍ର

Digitized by srujanika@gmail.com

କବନ୍ଧର କୌଣସି ଅର୍ଥ ପ୍ରକାଶିତ ହେଉନାହିଁ । ଏଠାରେ 'ଶକ' ଶବ୍ଦ ମଧ୍ୟ ଶକାବ୍ଦ ଶବ୍ଦର ସୂଚକଭାବେ କାର୍ଯ୍ୟ କରୁନାହିଁ । ସୁଧାକରବାବୁଙ୍କ ଲିଖିତ ପାଠାନ୍ତରରେ 'ଶ' ନ ଥାଇ ୧୩ ଅକ୍ଷର ବିଶିଷ୍ଟ ହୋଇଛି ଏବଂ 'ହର ମଲ ବଣ' ସ୍ଥାନରେ 'ହୃଦୟ ଲବଣ' ଲିଖିତ ହୋଇ ତେର ଅକ୍ଷର ବିଶିଷ୍ଟ ହୋଇଛି । ଅମ୍ବିକାବିଳାସ ପରି ଉଚ୍ଚମାନର କାବ୍ୟର ରଚୟିତା ଏପରି ଅକ୍ଷର ପ୍ରୟୋଗ କରିବା ସମୀଚୀନ ବୋଧ ହେଉନାହିଁ । ଏହାକୁ 'ଅଙ୍କ ଗଣ ହର ମଲ ବଣକ ବନ୍ଧ' ରୂପେ ପାଠ କରିବା ଉପଯୁକ୍ତ ହେବ । 'କ' ଏକ ସ୍ୱାର୍ଥ ପ୍ରତ୍ୟୟ ହୋଇଥିବାରୁ ଏହା ଯୁକ୍ତ ହୋଇଥିବା ଶବ୍ଦକୁ ପରିପୁଷ୍ଟ କରୁଥିବା ସମ୍ଭବ । ଏହି ସମୟ ପର୍ଯ୍ୟନ୍ତ ଲେଖା ସରିବା ପରେ ପୋଥି ବନ୍ଧା ହେଲା ଓ ପରେ ପୁଣି ଲେଖାହେବା ସୂଚିତ କରେ ।

୧୭୮୪ରେ ବାମଣ୍ଡା ରାଜବଂଶ ସହିତ ଭ୍ରାତୃବିବାଦ ଯୋଗୁଁ ବଳଭଦ୍ର ବାମଣ୍ଡା ଆକ୍ରମଣ କରି ଜୟଲାଭ କଲେ । 'ବାମଣ୍ଡା କୋଇଲି'ରେ ଏହାର ସୂଚନା ରହିଛି—

"ରାଢ଼େ ବଜାଇ ଜୟ ନାଗରା
ସୈନ୍ୟଙ୍କର କି କହିବା ତ୍ୱରା ଯେ,
ଧଣ୍ଡା ଆଗେ ଚଳଇ
ନିଜ ରାଜ୍ୟକୁ ବିଜେ ବେନିଭାଇ ।

୧୯୩୮-୩୯ରେ କେନ୍ଦୁଝରରୁ ପ୍ରକାଶିତ ପତ୍ରିକା 'ବନବୀଣା'ରେ ବାମଣ୍ଡା କୋଇଲି ସଂପର୍କରେ ଆଲୋଚନା ହୋଇଥିଲା ଓ ତାହାର ସମାଲୋଚନା ପରବର୍ତ୍ତୀ କାଳରେ ଶଙ୍ଖ ପତ୍ରିକାରେ ପ୍ରକାଶ ପାଇଥିଲା ।

ବାମଣ୍ଡା ଯୁଦ୍ଧ ପରେ ପାଲଲହଡାରେ ସ୍ୱତ୍ୱାଧିକାର ପାଇଁ ବିଦ୍ରୋହ ହେବାରୁ ବଳଭଦ୍ର ସସୈନ୍ୟ ସେଠାକୁ ଯାଇ ନିଃସନ୍ତାନ ମୃତ ମୁନିପାଳଙ୍କ ଦାସୀପୁତ୍ର (ଅନ୍ତର ପୁଅ) ଭୀମପାଳଙ୍କୁ ବନ୍ଦୀ କରି ସେଠାରେ ଶାନ୍ତି ପ୍ରତିଷ୍ଠା କଲେ ।

'ଅମ୍ବିକା ବିଳାସ'ର ଚତ୍ୱାରିଂଶ ଛାନ୍ଦରେ ସ୍ୱପ୍ନାଦେଶ ଓ ରାଜନୀତି ବର୍ଣ୍ଣନ କରାଯାଇଅଛି । କବି ବଳଭଦ୍ର ଉଲ୍ଲେଖ କରିଛନ୍ତି, "ଅକଳ୍ମଷ ମନରେ ଅମ୍ବିକା-ବିଳାସ ଗୀତ ସମ୍ପୂର୍ଣ୍ଣ ହେବା ପରେ ସହୃଦୟ କବି ବିବେକୀ ପଣ୍ଡିତମାନଙ୍କୁ ଡକାଇଲେ ।"

ଅପାର ଆଦରେ ଏମାନଙ୍କୁ ଅଣାଇ
ଅନୁଆନେ ସର୍ବ ଛାନ୍ଦମାନ ଶୁଣାଇ
ଅଥ ଶ୍ଳିଷ୍ଟାଶ୍ଳିଷ୍ଟ ଶବ୍ଦ ଶ୍ଳେଷ କଠିନେ
ଅଦୋଷ ଦୋଷ ବା ଅଛି ଯେ ଯେଉଁ ସ୍ଥାନେ ।

Digitized by srujanika@gmail.com

ବିଦୁଷମାନେ ଏ ବିଷୟମାନ ଅନୁଭାବି ଏ ଗୀତ ଅଦୋଷେ ହୋଇଛି ବୋଲି ତୋଷଭରେ କହିଲେ ।

କାବ୍ୟ ଶେଷ ହୋଇଥିବା ଆନନ୍ଦରେ ଦିନେ ଶୋଇଥିବାବେଳେ ସ୍ୱପ୍ନରେ ଦେଖିଲେ— ଈଶ୍ୱର ପାର୍ବତୀ ଆସି କହୁଛନ୍ତି, ''ରାଜା ! ଅମ୍ବିକା-ବିଳାସ ଗୀତରେ ପ୍ରସନ୍ନ ହୋଇ ତୋତେ ଅନୁକମ୍ପା କରି ଦର୍ଶନ ଦେଲୁ । ତୋର ଅଭୀଷ୍ଟ ପୂର୍ଣ୍ଣ ହେଉ ଓ ଅଚିନ୍ତାରେ ଜୟଯୁକ୍ତ ହୋଇ ସଂସାର କର । କାଲି ଏକ ବ୍ରାହ୍ମଣ ଆସି ଯାହା କହିବ, ତାହା ଆମ୍ଭର ଅନୁଜ୍ଞା (ଆଦେଶ) ଭାବେ ଗ୍ରହଣ କରିବୁ ।''

ତତ୍ପରଦିନ ସକାଳେ ରାଜା ସଭାରେ ବସିଥିବାବେଳେ ଜଣେ ତେଜସ୍ୱୀ ବ୍ରାହ୍ମଣ ଆସି ଉପସ୍ଥିତ ହେଲେ । ରାଜାଙ୍କୁ ରାଜବିଧି, ପ୍ରଜାପାଳନ, ଗଡ ନିର୍ମାଣ ଆଦି ବିଷୟରେ ଉପଦେଶ ଦେଲେ ।

୪୧ ଛାନ୍ଦରେ ବୈତରଣୀ ନଦୀର ଉଦ୍ଭବ ସ୍ଥଳ ଗୋନାସିକା ତୀର୍ଥ ଓ ନଦୀର ପବିତ୍ରତା ସଂପର୍କରେ ବର୍ଣ୍ଣନା କରିଛନ୍ତି । ସେହି ନଦୀତୀରରେ ରହି ସେ ପବିତ୍ର ଜଳରେ ସ୍ନାନ ଓ ତାହା ପାନ କରିବା ଉଲ୍ଲେଖ କରି ଲେଖିଛନ୍ତି—

''ଅବତୀର୍ଣ୍ଣ ଯା ଗିରୀଶଠାରୁ ପରକାଶ ସେ ରସ ଯୋଗେ ହୁଅନ୍ତି ତୋଷ,
ଅନୁଗତିକୁ ପଥରେ କରି କୁପଥରେ ଗତି କଲା କର୍ମ କରେ ନାଶ ।
ଅଘ ସଂଘଟନ ପ୍ରାଣୀମାନଙ୍କ ନିଶାଣୀ ସ୍ୱର୍ଗ ଅପବର୍ଗମାନଙ୍କୁ ଯେ,
ଅନୁସ୍ନାନ ପାନ କରି ସୁଖେ କେନ୍ଦୁଝରୀ— ନୃପ ବଳଭଦ୍ର ଭଞ୍ଜ ମଜ୍ଜେ ।''

କେନ୍ଦୁଝର ଦ୍ୱିତୀୟ ରାଜଉଆସ ବୈତରଣୀ ନଦୀ କୂଳରେ ଥିଲା । ରାଜକବି ସେଠାରେ ଅବସ୍ଥାନ କରି ହରପାର୍ବତୀଙ୍କ ସେବା ପୂଜା ସହିତ ପୂତ ବୈତରଣୀରେ ସ୍ନାନ ଓ ଜଳପାନ କରିଥିବା ସଙ୍କେତ ଦେଇଛନ୍ତି । ତେଣୁ ଆନନ୍ଦପୁର ରାଜଉଆସରେ ରହି ଅମ୍ବିକାବିଳାସ ରଚନା କରିଥିବା ସ୍ପଷ୍ଟଭାବେ ସୂଚିତ ହୁଏ ।

'ଅମ୍ବିକାବିଳାସ'ର ପ୍ରଥମ ସଂପାଦକ ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଲେଖିଥିଲେ, ''ଉତ୍କଳର ରାଜନ୍ୟମଣ୍ଡଳୀ ମଧ୍ୟରେ ଭଞ୍ଜବଂଶୀୟ ରାଜାଗଣ ଉତ୍କଳ ଭୂମିରେ କେତେବେଳେ ମସୀ ଲେଖନୀଧର କବିରୂପେ, କେତେବେଳେ ବା ଅସିଚର୍ମଧର ଯୋଦ୍ଧୃରୂପେ ଅପୂର୍ବ କୌଶଳ ପ୍ରଦର୍ଶନ କରିଛନ୍ତି ।''

x x x x

ଏମାନଙ୍କ ମଧ୍ୟରୁ ପ୍ରାଚୀନକାଳର ହରିହରପୁରର ଭଞ୍ଜବଂଶ ଅର୍ଥାତ୍ ଅଧୁନାତନ ମୟୂରଭଞ୍ଜ ଓ କେନ୍ଦୁଝର ରାଜବଂଶଦ୍ୱୟ ପ୍ରାଚୀନତମ । (ଇତିହାସରେ ଉଲ୍ଲେଖ ଅଛି ଯେ

Digitized by srujanika@gmail.com

ଆଦିଭଞ୍ଜ ଓ ଜ୍ୟୋତିଭଞ୍ଜ ଦୁଇଭାଇ ସୂର୍ଯ୍ୟବଂଶୀ କ୍ଷତ୍ରୀୟ ଥିଲେ ଓ ସେମାନେ ମୟୂରଭଞ୍ଜ ଓ କେନ୍ଦୁଝରରେ ଭଞ୍ଜବଂଶ ପ୍ରତିଷ୍ଠାତା ଥିଲେ ।) ଏ ସଂପର୍କରେ ଅମ୍ବିକାବିଳାସ ୪୧ ଛାନ୍ଦର ଦ୍ୱିତୀୟ ପୋଇ ପରବର୍ତ୍ତୀ ଗୀତରେ କବି ଉଲ୍ଲେଖ କରିଛନ୍ତି,

''ଅର୍କ ବଂଶେ ଜାତ କ୍ଷିତିଏ ବିଦିତ ଭଞ୍ଜ ସଂଜ୍ଞା କ୍ଷିତି-ଖ୍ୟାତ,
ଅସି ବର୍ଲୁ କରି ଯେହୁ କେନ୍ଦୁଝରୀ ରାଜ୍ୟେ ହେଲେ ନରନାଥ । ୧ ।
ଅନୁ ପୁରୁଷେ ପୃଥ୍ୱୀକି ଭୋଗ କଲେ ଯଥାବିଧି ରାଜପଣେ
ଅର୍ଚ୍ଚିତ ଜଗଦୀଶ୍ୱର ଭଞ୍ଜ ମହାରାଜା ସକଳ-- ଲକ୍ଷଣେ । ୨ ।
ଅଙ୍ଗସିନ୍ଧୁରୁ ତାଙ୍କର ଇନ୍ଦୁ ପରକାର ସମ୍ଭୂତ ହେଲି ମୁଁ ପୂର୍ବ ଫଳେ
ଅଙ୍କ ପରିସରି ଅରି ମୋ'ଠାରେ ଆବୋରି ରହିଲେ ଦଳବ-ଯୋଗବଳେ'' । ୩ ।

ଏହିସବୁ ଉଦ୍ଧୃତିରୁ ସ୍ପଷ୍ଟ ହୁଏ— ରାଜକବି ବଳଭଦ୍ର ସ୍ୱୟଂ ଏହି କାବ୍ୟର ଜନକ । ପଣ୍ଡିତ ବାନାମ୍ବର ଏ ସଂପର୍କରେ ଉଲ୍ଲେଖ କରିଛନ୍ତି, ''ଅଧୁନା ପ୍ରତାପ ବଳଭଦ୍ର ଭଞ୍ଜଙ୍କ ପ୍ରଣୀତ 'ଅମ୍ବିକା ବିଳାସ' କେନ୍ଦୁଝର ଗ୍ରନ୍ଥମାଳାର ଦ୍ୱିତୀୟ ପୁସ୍ତକରୂପେ ପ୍ରକାଶିତ ହେଲା। 'ଅମ୍ବିକା ବିଳାସ' ନାମ ବ୍ରଜନାଥ ବଡ଼ଜେନାଙ୍କ 'ରାଜସଭା' ପୁସ୍ତକରେ ଉଲ୍ଲେଖ ଅଛି—

ଅ ଅକ୍ଷର ନିୟମ ଅମ୍ବିକା ବିଳାସ ନାମ
କୁମାର ଚରିତ ଶିବ ଉମା ବିବାହ
ଛାନ୍ଦ ଶ୍ଳେଷ ଅନୁପ୍ରାସ ଅକ୍ଷର ଅବନା ନ୍ୟାସ
ଶୃଙ୍ଗାର କୁତୁକ ରସ ସନ୍ଦର୍ଭ ଉହ
ଅଳଙ୍କାର କାବ୍ୟ ଲକ୍ଷଣ
ପ୍ରଶ୍ନୋତ୍ତର ଭଙ୍ଗୀ ଅର୍ଥ ବହୁ ଲକ୍ଷଣ । ୨୩.ପଦ

ଏହି 'ଅମ୍ବିକାବିଳାସ'ର ଅନ୍ୟତମ ସଂପାଦକ ସୁଧାକର ପଟ୍ଟନାୟକ ଏହା ବ୍ରଜନାଥଙ୍କର ବୋଲି ଉଲ୍ଲେଖ କରିଛନ୍ତି ଓ ସେ ଢେଙ୍କାନାଳରେ ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ''କେତେବର୍ଷ କେନ୍ଦୁଝର ଅନ୍ତର୍ଗତ କାଳିଆହତା ଜମିଦାରିରେ ରହିଥିଲେ ଓ ରାଜା ପ୍ରତାପ ବଳଭଦ୍ର ଭଞ୍ଜଙ୍କ ସଭାପଣ୍ଡିତ ଥାଇ ଏ ଗ୍ରନ୍ଥ ରଚନା କରି ବଳଭଦ୍ରଙ୍କ ନାମରେ ଭଣିତା କଲାପରେ ମନାନ୍ତର ହେବାରୁ ପୁଣି ନିଜ ରାଜ୍ୟକୁ ଫେରିଆସି 'ଅମ୍ବିକାବିଳାସ'କୁ ନିଜ ନାମରେ ଚଳାଇଲେ ।'' (ବ୍ରଜନାଥ ଗ୍ରନ୍ଥାବଳୀ ମୁଖବନ୍ଧ ପୃ. ୨୯)

ରାଜାମାନେ କବିମାନଙ୍କୁ ପଟ୍ଟବସ୍ତ୍ର, ଉପାଧି, ଅଳଙ୍କାର, କଉଡ଼ିମୁଦ୍ରା ବା ଜାଗିରି ଜମିଦାରି ଦେଉଥିଲେ । ବ୍ରଜନାଥଙ୍କୁ କୌଣସି ଜାଗିରି ଜମିଦାରୀ ଦିଆଯାଇଥିଲେ ତାହା ସରକାରୀ ସିରସ୍ତାରେ ଥାଆନ୍ତା, ଏବଂ କାଳିଆହତାଠାରେ ତାଙ୍କର ବଂଶଧର ରହିଥାଆନ୍ତେ । ମାତ୍ର କବିଙ୍କ ବଂଶାବଳୀରେ ସ୍ୱୟଂ ସୁଧାକରବାବୁ ଉଲ୍ଲେଖ କରିଛନ୍ତି;

Digitized by srujanika@gmail.com

"ବ୍ରଜନାଥ (୧୭୩୦-୯୯) କୋରନ୍ଦା ଓ କପିଳାସ ଅନ୍ତଃପାତି କାବରାରେ ଥିଲେ । ତାଙ୍କର ଭାଇ ଗୋପୀନାଥ ଢେଙ୍କାନାଳଗଡ଼, ଜଗନ୍ନାଥ କବିଭୂଷଣ ମହୁଲପାଳ ଗ୍ରାମ ଏବଂ ଲୋକନାଥ (ରାଉତରା) କମଗରା ଗ୍ରାମରେ ରହୁଥିଲେ । ତାଙ୍କର ବଂଶଧର ମଧ୍ୟ କେହି କେନ୍ଦୁଝରରେ ବାସ କରିନାହାନ୍ତି ।

ବ୍ରଜନାଥ ୧୭୩୦ ରୁ ୧୭୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ । ପ୍ରତାପ ବଳଭଦ୍ରଙ୍କ ରାଜତ୍ୱ କାଳ ୧୭୬୪ ଠାରୁ ୧୭୯୫ । ଏଣୁ ୧୭୬୪ରୁ ୧୭୯୨ ମଧ୍ୟବର୍ତ୍ତୀ ସମୟ ବ୍ରଜନାଥଙ୍କ କେନ୍ଦୁଝର ରାଜସଭାକୁ ଆସିବା ସଂପର୍କରେ ବିଗ୍ଚର୍ଯ୍ୟ ।

ଢେଙ୍କାନାଳ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁର ମରହଟ୍ଟା ସୁବେଦାର ରାଜାରାମ ପଣ୍ଡିତଙ୍କୁ ପେସ୍‌କସ୍ ନ ଦେବାରୁ ୧୭୭୯ ଖ୍ରୀଷ୍ଟାବ୍ଦରେ ରାଜାରାମ ଢେଙ୍କାନାଳ ଆକ୍ରମଣ କଲେ । ମୋଟଗୀଠାରେ ହୋଇଥିବା ଯୁଦ୍ଧରେ ମରହଟ୍ଟାମାନେ ପରାସ୍ତ ହେଲେ । ଏହି ଯୁଦ୍ଧ ଉପାଖ୍ୟାନ ବ୍ରଜନାଥଙ୍କ 'ସମର ତରଙ୍ଗ'ରେ ଉଲ୍ଲିଖିତ । ଦ୍ୱିତୀୟବାର ଢେଙ୍କାନାଳ ଆକ୍ରମଣ କଲେ ୧୭୮୦ରେ ମାଧୋଜୀଙ୍କ ପୁତ୍ର ଚିମନ୍‌ଜୀ । ୧୭୮୧ରେ ଏହାର ସମାଧାନ ହେଲା । କବି ବଡଜେନାଙ୍କ ସମର ତରଙ୍ଗରେ ଏ ଯୁଦ୍ଧ ଓ ତ୍ରିଲୋଚନଙ୍କ ରାଜପ୍ରଶସ୍ତି ଉଲ୍ଲେଖ କରି ବ୍ରଜନାଥ ବ୍ରାହ୍ମଣୀ କୂଳସ୍ଥିତ ନୂଆଗାଁ ଗ୍ରାମ ଶାନ୍ତିଆଇ ଜାଗିରି-ସ୍ୱରୂପ ପାଇଲେ । ଏଣୁ ୧୭୮୧ ପର୍ଯ୍ୟନ୍ତ ବଡଜେନା ଢେଙ୍କାନାଳରେ ଥିବା ନିଶ୍ଚିତ । ବ୍ରଜନାଥଙ୍କ 'ରାଜନଙ୍କୁ ଛନ୍ଦୋକ୍ତି' ରଚନାରୁ ଜଣାଯାଏ ସେ ନୂଆଗାଁରେ ସାତବର୍ଷ ରହି ଜମି ପଡ଼ିଆ ପଡ଼ିବାରୁ ଦୁଃଖରେ ରହିଥିବା ଜଣାଉଛନ୍ତି—

"ନୂଆଗାଁ ମୋତେ ଦିଆହୋଇଛି ଯେ ଯୁଗଯୁଗାନ୍ତର ପଡ଼ିଆ
ବାଘ ପୁଅ ତହିଁ ସାକ୍ଷାତ ଜନ୍ମାଏ ପ୍ରଭୁ ଜାଣିଅଛ ତାହା ଯେ,

x x x

ସାତ ବରଷ ହୋଇଥିଲା ସାତପଣ ଶ୍ରୀ ଛାମୁରୁ ନ ପାଇଲି
ନିମକହାରାମ ହୋଇ କଉଁ କାମ କୋଠର ବା ହାନି କଲି ।"

ଏଣୁ ୧୭୮୨ରୁ ୧୭୮୮ ପର୍ଯ୍ୟନ୍ତ ନୂଆଗାଁରେ ଥିବାରୁ କେନ୍ଦୁଝର ଯିବା ସମ୍ଭବ ନୁହେଁ । ଢେଙ୍କାନାଳ ରାଜାଙ୍କ ନିମକହାରାମ ହୋଇନାହାନ୍ତି ।

ରାଜା ତ୍ରିଲୋଚନ କବିଙ୍କର ଦୁଃଖ ଅନୁଭବ କରି ତାଙ୍କୁ ସାହାଯ୍ୟ ଦେବାରୁ ସେ ଢେଙ୍କାନାଳରେ ସ୍ୱଚ୍ଛନ୍ଦରେ ଜୀବନ ବିତାଇ ପୁରୀ ଗଜପତି ୨ୟ ଦିବ୍ୟସିଂହ ଦେବଙ୍କ ରାଜତ୍ୱ (୧୭୯୫-୧୭୯୮) ମଧ୍ୟରେ ପୁରୀରେ ଅବସ୍ଥାନ କରି 'ଗୁଣ୍ଡିଚ୍ଚା ବିଜେ' ଗଜପତିଙ୍କୁ ଭେଟି ଦେଇଥିବେ ଓ ସେଠି ୧୭୯୨ରେ ଇହଲୀଳା ସାଙ୍ଗ କରିଥିବେ । ଏଣୁ ସ୍ୱୟଂ

Digitized by srujanika@gmail.com

ବ୍ରଜନାଥ କେନ୍ଦୁଝରର ଅବସ୍ଥାନ ସଂପର୍କରେ ଉଲ୍ଲେଖ କରିନାହାନ୍ତି କିମ୍ବା ରାଜସ୍ୱ ରେକର୍ଡରେ ତାଙ୍କ ସଂପର୍କରେ କେନ୍ଦୁଝରରେ କୌଣସି ଉଲ୍ଲେଖ ନାହିଁ । ଜନଶ୍ରୁତି ସର୍ବଦା ବିଶ୍ୱାସଯୋଗ୍ୟ ନ ହୋଇଥିବାରୁ ବ୍ରଜନାଥ 'ଅମ୍ବିକାବିଳାସ' କାବ୍ୟ କେନ୍ଦୁଝରରେ ରହି ବଳଭଦ୍ରଙ୍କ ନାମରେ ଭଣିତା କରିବାର ପ୍ରଶ୍ନ ଉଠୁନାହିଁ ।

ଏ ସଂପର୍କରେ ଆଉ ଏକ ଆଭ୍ୟନ୍ତରୀଣ ବଳିଷ୍ଠ ପ୍ରମାଣ ପାଠକସମାଜ ସମ୍ମୁଖରେ ଉପସ୍ଥାପିତ କରୁଛି । କୌଣସି ଆଲୋଚକଙ୍କର ଏଥିପ୍ରତି ଦୃଷ୍ଟି ଆକୃଷ୍ଟ ହୋଇନାହିଁ ।

ଅମ୍ବିକା ବିଳାସ ୧୯ଶ ଛାନ୍ଦରେ ୩୦ ପଦଠାରୁ ୪୯ପଦ ପର୍ଯ୍ୟନ୍ତ ଶ୍ଳେଷରେ ରଚନା କରାଯାଇଛି । ଏଥିରେ ବିଭିନ୍ନ ଜାତିର କାନ୍ତ କାନ୍ତାଙ୍କ ମଧ୍ୟରେ ରତିକାଳୀନ ବାଗ୍‌ବିଳାସ ବର୍ଣ୍ଣିତ । ସେହି ଛାନ୍ଦର ୪୯ ପଦରେ ପାଟରାଣୀଙ୍କ ପ୍ରତି ଉକ୍ତି—

"ଅନ୍ତିକେ ପାଟରାଣୀର ବୋଲଇ କେଉଁ ନାଗର
ଭିଡ଼ାଟାଏ ଦେବୁ କି ଗୋ ଆମ୍ଭଙ୍କୁ କହ
ଅନାଇ ସେ ବୋଲେ ଭିଡା-ଭିଡି ଯେବେ ଅଛି ଲୋଡ଼ା
ଆଛା ରଙ୍ଗ କରିଦେବା ସତ୍ୱର ନୋହ
ଅଛିନ୍ନ-ବରତ କି ନେବ
ଅଷ୍ଟ ଅଷ୍ଟ ଗୁଣ ବନ୍ଧନରେ ଅପୂର୍ବ ।"

ପାଟରାଣୀ ଉଦ୍ଦେଶ୍ୟରେ କୌଣସି ନାଗର କହୁଛି, "ଆମକୁ ଭିଡ଼ାଟାଏ ଦେବୁ କି ?" ପାଟରାଣୀଙ୍କ ଉତ୍ତର— "ଭିଡାଭିଡି ଲୋଡ଼ା ଥିଲେ ଶୀଘ୍ର ଶୀଘ୍ର ଆଛା କରି ରଙ୍ଗ କରିଦେବା । ଅଛିଣ୍ଡା ବ୍ରତ ନେବ କି ? ଆଠ ଆଠ ଗୁଣ ବନ୍ଧନରେ ଅପୂର୍ବ ।" ଏହାର ଗୂଢ଼ାର୍ଥ ଛିନ୍ନ ହେଉ ନ ଥିବା ଚଉଷଠି ଅପୂର୍ବ ବନ୍ଧରେ ପଟୁତା ପ୍ରକାଶିତ ।

ପାଟରାଣୀର ଅନ୍ୟ ଅର୍ଥ ରାଜାଙ୍କ ଜ୍ୟେଷ୍ଠାରାଣୀ ଥିବାରୁ ରାଜାଙ୍କ ସମ୍ମୁଖରେ କୌଣସି କବି ଏପରି ଭାଷା ପ୍ରକାଶ କରିପାରିବ ନାହିଁ । ରସିକ ରାଜା ସ୍ୱୟଂ ରସିକତାବଶତଃ ଏପରି ପରିହାସ ବଚନ କହି ବା ଲେଖିପାରନ୍ତି । ତେଣୁ ରାଜାଙ୍କ ବ୍ୟତୀତ ଏହାର ରଚୟିତା ଅନ୍ୟ କେହି ହେବା ଅସମ୍ଭବ । ତେଣୁ ଅମ୍ବିକା ବିଳାସର ପିତୃତ୍ୱ ପ୍ରତାପ ବଳଭଦ୍ର ଭଞ୍ଜଙ୍କ ଉପରେ ହିଁ ଆରୋପ କରାଯିବା ସଙ୍ଗତ ।

'ରାଜସଭା'ରେ ଉଲ୍ଲିଖିତ 'ଅମ୍ବିକା ବିଳାସ' ବଳଭଦ୍ରଙ୍କ ରଚିତ 'ଅମ୍ବିକା ବିଳାସ'ଠାରୁ ଭିନ୍ନ । କାରଣ ଦେବତାମାନଙ୍କର କୁମାର (କାର୍ତ୍ତିକ)ଙ୍କ ଜନ୍ମ ନେଇ ଚିନ୍ତିତ ହେବା 'କଥା'ରୁ ଆରମ୍ଭ ହେବାବେଳେ ବଳଭଦ୍ରଙ୍କ 'ଅମ୍ବିକା ବିଳାସ' 'ସତୀ'ଙ୍କ ବିବାହରୁ ଆରମ୍ଭ ହୋଇଅଛି ।

Digitized by srujanika@gmail.com

ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କଠାରୁ ନୂଆଗାଁ ଜାଗିରି ପାଇ ସୁଦ୍ଧା ବ୍ରଜନାଥ ତାଙ୍କ ନାମରେ କୌଣସି କାବ୍ୟ କବିତା ଭଣତି କରି ନ ଥିବାବେଳେ କେନ୍ଦୁଝର ରାଜାଙ୍କ ନାମରେ ଭଣତି କରିଦେଇ ଢେଙ୍କାନାଳରେ ରହିବା ଏକାବେଳେକେ ଅଯୌକ୍ତିକ ଓ ହାସ୍ୟାସ୍ପଦ ମନେହୁଏ ।

ପୁନଶ୍ଚ କାବ୍ୟରେ ଉଲ୍ଲିଖିତ ପଣ୍ଡିତ ସଭା ଡକାଇ କାବ୍ୟର ମୂଲ୍ୟାୟନ କରିବା କବି ବ୍ରଜନାଥଙ୍କ ପକ୍ଷେ ସମ୍ଭବ ନୁହେଁ । ସେ ବା ବଳଭଦ୍ରଙ୍କ ନାମରେ ଭଣିତା କରାଯାଇଥିବା କାବ୍ୟରେ ଏପରି କଥା କହିବାକୁ ଯିବେ କାହିଁକି ?

ଶ୍ରୀଯୁକ୍ତ ସୁଧାକର ପଟ୍ଟନାୟକଙ୍କ ସମ୍ପାଦିତ ଅମ୍ବିକା-ବିଳାସ ପ୍ରକାଶ ପରେ ପଣ୍ଡିତ ଆଗ୍ରାର୍ଯ୍ୟ ଢେଙ୍କାନାଳର ପ୍ରକାଶିତ ଗ୍ରନ୍ଥର ମୂଳପୋଥି ଦେଖିବାକୁ ଗ୍ରହିଁଥିଲେ ହେଁ ତାହାଙ୍କ ଆହ୍ୱାନର ଉତ୍ତର ଦିଆଯାଇନାହିଁ । ଯଦିଓ ଉଭୟ ସମ୍ପାଦକ ଏକ ସମୟରେ କଟକରେ ଅବସ୍ଥାନ କରୁଥିଲେ ।

ଅମ୍ବିକା-ବିଳାସରେ କେନ୍ଦୁଝରରେ ପ୍ରଚଳିତ କେତେକ ଆଞ୍ଚଳିକ ଶବ୍ଦର ପ୍ରୟୋଗ ବିଭିନ୍ନ ସ୍ଥାନରେ ରହିଛି । କେନ୍ଦୁଝରବାସୀ ଶ୍ରୀ ଭରତ ଚନ୍ଦ୍ର ଦାସ ସେଗୁଡ଼ିକୁ ଦର୍ଶାଇଛନ୍ତି ।

ଅମ୍ବକ ଦାରୁ **ବଂଦାମ** ତରୁ ଲଳିତ ଲବଙ୍ଗଲତା
ଅଳାଇଚର ତରୁ ଅପାର ଜାତିଫଳ ଅଗଣିତା ।୬।୮ (ବଦାମ -- ପିଜୁଳି)
**ଅତଡି** ଗିରି ଗଡରେ ଜାଣି । ଅମ୍ବୁଦଂ ତମ୍ଭୁ ତା ଅଛି ଟାଣି ।୧୨।୮
(ଅତଡି -- ଦୁର୍ଗମ)
ଅବିଘ୍ନ ଖତି **ପାତଇ** କେ ବାରେ ଅନିଷ୍ଟ ନିବାରେ ।୧୩।୮ (ପାତଇ -- ପକାଇ)
ଅନେକ ବ୍ୟଞ୍ଜନ ମାନ ମାନସରଞ୍ଜନ
ଅଛି ପଇତି ମହୁଲ **ପାତଲ** ଯତନ ଯେ ୨୩।୧୦
(ପାତଲ – ପତଳା ବା ପତପତିଆ ।)
ଅପୂର୍ବ ଖେଳ **ପାରୁଆ** ଲୋଚଣୀ କପୋତ । (ପାରୁଆ -- ପାରିବାର, ଦକ୍ଷ ।)

✓ସୁଧାକର ପଟ୍ଟନାୟକ ସମ୍ପାଦିତ ବ୍ରଜନାଥ ଗ୍ରନ୍ଥାବଳୀର ମୁଖବନ୍ଧରେ ଲେଖିଛନ୍ତି "୧୭୮୧ ଖ୍ରୀଷ୍ଟାବ୍ଦର ଆରମ୍ଭରେ ସଂଘଟିତ ସମରତରଙ୍ଗ ବର୍ଣ୍ଣିତ ଇତିହାସପ୍ରସିଦ୍ଧ ମରହଟ୍ଟା-- ଢେଙ୍କାନାଳ ଯୁଦ୍ଧ କବିଙ୍କର ବ୍ୟକ୍ତିଗତ ଅନୁଭୂତିର ବିଷୟ । ସେହି ଗୋଳମାଳିଆ ସମୟରେ ସେ ରାଜ୍ୟରେ ପଳଉଣି ପଡିଯାଇଥିବା ସ୍ୱାଭାବିକ । ସେତେବେଳେ କବି ମଧ୍ୟ କିଛିଦିନ ପାଇଁ ଢେଙ୍କାନାଳ ଛାଡ଼ି ଦର୍ପଣୀଗଡ଼ରେ ଯାଇ ଅବସ୍ଥାନ କରିଥିଲେ । ସମରତରଙ୍ଗ ଲେଖା ସମ୍ଭବତଃ ସେହିଠାରେ ଆରମ୍ଭ ହୋଇଥିଲା ।" ସମରତରଙ୍ଗର ପଞ୍ଚମ ଛାନ୍ଦ ପର୍ଯ୍ୟନ୍ତ ମରହଟ୍ଟା-- ଢେଙ୍କାନାଳ ଯୁଦ୍ଧ ବର୍ଣ୍ଣନା ପରେ ଷଷ୍ଠ ଛାନ୍ଦରେ ଲେଖିଛନ୍ତି—

Digitized by srujanika@gmail.com

''ସମସ୍ତେ କଲେ ପୀରତି         କେନ୍ଦୁଝରୀ ନରପତି
କେବଳ ଅପ୍ରୀତି କରି ଦ୍ୱନ୍ଦ୍ୱରୀତି ଆରମ୍ଭିଲେ କୋପେ ଅତି ।'' ୬।୯
''ଯିବାପାଇଁ କେନ୍ଦୁଝରୀ         କାଣ୍ଡ ଗୁଳି ନିକି କରି
ଫୋପଡ଼ ହଜାର ପାଞ୍ଚଶତେ ଆଉ ଭାଜିଯିବ କେନ୍ଦୁଝରୀ ।''୬।୧୪

କେନ୍ଦୁଝର ଓ ଢେଙ୍କାନାଳ ମଧ୍ୟରେ ଘୋରତର ଯୁଦ୍ଧ ହେଲା ପଳାଶୁଣିଗଡ, ତମ୍ଭୋଇ ଆଦି ଘାଟିସ୍ଥାନମାନଙ୍କରେ । ଦୁଇପକ୍ଷରେ ଲୋକକ୍ଷୟ ଘଟିଚାଲିଲା ।

''ଚଳାଇ ଆସନ୍ତେ ତେଣୁ         ଲୋକ ପହଞ୍ଚିଲେ ଏଣୁ
ହାଥମାନ ଘୋଳି ହୋଇ ଏହାଙ୍କର ତାଙ୍କୁ ମିଶି ହାଣୁହାଣୁ ।''

'ତେଣୁ' କେନ୍ଦୁଝର ଆଡୁ ଓ 'ଏଣୁ' ଢେଙ୍କାନାଳ ପକ୍ଷ ପାଇଁ ବ୍ୟବହୃତ । କେତେ ଲୋକ ମଲେ, ତାର ହିସାବ ନାହିଁ । କେତେ ରଣ ଛାଡ଼ି ଗିରି ବଣ ଭିତରେ ଲୁଚିଲେ ।

''କେବଳ ତାହାଙ୍କୁ ଏତେ         ଲୋକ ବୋଇଲେ ଜଗତେ
    କେନ୍ଦୁଝରୀ ରାଜା ଧର୍ମ ଲଂଘିଲେ ହୋ ଯଶ ମିଳିବ କେମନ୍ତେ ।
କେ ବୋଲେ ସେ ଅ-ସୁବୁଦ୍ଧି         କଲେ ଝାଡୁଆଙ୍କ ବୁଦ୍ଧି
    ପ୍ରୀତିଠାରେ ଯେ ଅ-ପ୍ରୀତି କଲେ କେହି ସହିବଟି ଏହା ବିଧି ।
ପରଜା ହେଲେ ଉଚ୍ଛନ୍ନ   ରାଜ୍ୟ ହେଲା ଖିନ୍ନଭିନ୍ନ
ବୋଲେ ବ୍ରଜନାଥ ବଡଜେନା ଏଥୁ କି କାର୍ଯ୍ୟ ଅଛିଟି ଘେନ ।'' ୬।୩୬-୩୮

କେନ୍ଦୁଝରର ତତ୍କାଳୀନ ସଭାକବି ପଣ୍ଡିତ ନୀଳକଣ୍ଠ ମିଶ୍ର କେନ୍ଦୁଝର ବଂଶାବଳୀସୂଚକ ''ଭଞ୍ଜ ମହୋଦୟମ୍'' କାବ୍ୟରେ ଏହି ଯୁଦ୍ଧର ଫଳ ସଂପର୍କରେ ଉଲ୍ଲେଖ କରିଛନ୍ତି । ତାହାଙ୍କ ପୃଷ୍ଠପୋଷକ ରାଜା ବଳଭଦ୍ର ଭଞ୍ଜ ଢେଙ୍କାନାଳ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ ।

''ବୀରୋ ନାଗପୁରାଳୟୋ ନୃପକରାଦାନାଧିକାରୋଦ୍ୟତୋ
ବିଖ୍ୟାତୋ ରଘୁ ଭୂଭୃତୋଽପ୍ୟ ବରଜୋ ଷଷ୍ଟୀସହସ୍ରାଶ୍ୱଗଃ ।
ଯେନାଷ୍ଟାଦଶଘସ୍ରମଶ୍ରମତୟା ସ୍ତବ୍ଧୀକୃତୋ ଯୁଧ୍ୟତା
ସୋଽପ୍ୟାସୀଦ୍ ବଳଭଦ୍ରଭଞ୍ଜ ଧରଣୀପାଳେନ ଯୁଦ୍ଧେ ଜିତଃ । ଶ୍ଳୋକ ୮ମ,ଅଷ୍ଟମୋଽଙ୍କଃ
(ଭଞ୍ଜ ମହୋଦୟମ୍ -- ୧୯୪୬, canto VIII - P, 70)

ନାଗପୁରରୁ ଆଗତ ନୃପତିଙ୍କ ଦ୍ୱାରା ଅଧିକୃତ ହୋଇପାରି ନ ଥିବା ବିଖ୍ୟାତ ରଘୁବଂଶ ସମ୍ଭୂତ ଷାଠିଏ ସହସ୍ର ଅଶ୍ୱାରୋହୀ ଧରି ଆସିଥିଲେ ସୁଦ୍ଧା ଯାହାଙ୍କର ଦୁର୍ଗକୁ ଅଷ୍ଟାଦଶ ଦିବସ ଘେରାଉ କରି ଯୁଦ୍ଧରେ ଜୟ କରିବାରେ ବିଫଳ ହୋଇଥିଲେ, ସେହି ଅଜେୟ (ଢେଙ୍କାନାଳ) ନୃପତିଙ୍କୁ କେନ୍ଦୁଝର ମହାରାଜ ବଳଭଦ୍ର ଭଞ୍ଜ ଯୁଦ୍ଧରେ ଜୟ କରିଥିଲେ ।

Digitized by srujanika@gmail.com

କେନ୍ଦୁଝର କବି ନୀଳକଣ୍ଠ, ବଳଭଦ୍ର ଭଞ୍ଜ ଢେଙ୍କାନାଳ ରାଜାଙ୍କୁ ଜିଣିବା ଉଲ୍ଲେଖ କଲାବେଳେ ଢେଙ୍କାନାଳ କବି ବ୍ରଜନାଥ କହନ୍ତି, "କେନ୍ଦୁଝରୀ ରାଜା ଧର୍ମ ଉଲ୍ଲଘଂନ କଲେ, ବଣୁଆ ବୁଦ୍ଧି କରି ପ୍ରୀତିରେ ଅପ୍ରୀତି କରି ପ୍ରଜାଙ୍କୁ ଉଚ୍ଛନ୍ନ ଓ ରାଜ୍ୟକୁ ଖିନଭିନ କଲେ । ଏଥିରୁ କଣ ଶତ୍ରୁ ରାଜାଙ୍କୁ ହୀନ ପ୍ରତିପନ୍ନ କରାଯିବା ଜଣାଯାଉନାହିଁ ? ନହେଲେ ତ ନିଜ ରାଜା ବିଜେତା ବୋଲି ଜୟଗାନ କରିଥାନ୍ତେ । ତାହା ପୁଣି ବ୍ରାହ୍ମଣୀ ନଦୀ କୂଳବର୍ତ୍ତୀ ହୁଦଗଡରେ ସ୍ୱୟଂ ରାଜା ଓ ପାରିଷଦ ମଣ୍ଡଳୀଙ୍କ ସମ୍ମୁଖରେ । ସମରତରଙ୍ଗ ରଚନାରେ ଖୁସି ହୋଇ ରାଜା ବ୍ରାହ୍ମଣୀ ତଟରେ 'ଅପଙ୍ଗା ବିଷେ'ର ଗୋଟିଏ ଗାଁ ନୂଆଗାଁକୁ ପାନପିକ ପ୍ରମାଣ ଦେଇ (ପକେଇବା ପାନ ଛେପ ଯେପରି ଢୋକନ୍ତି ନାହିଁ, ସେପରି ଦିଆଯାଇଥିବା ଦାନକୁ ରାଜା କିମ୍ବା ତାଙ୍କ ଉତରାଧିକାରୀ ସେହି ଉଚ୍ଛିଷ୍ଟ ପଦାର୍ଥକୁ କେହି କେବେ ଫେରାଇ ନେବେ ନାହିଁ— ଏହି ଲକ୍ଷ୍ୟରେ) ପାଞ୍ଚଶ କାହାଣ କଉଡି ଖଞ୍ଜା କଲେ । ଏଥିରେ କାର୍ଯ୍ୟ ଅଚଳ ହେଲେ ଆହୁରି ଅଧିକ ମିଳିବ ବୋଲି ହୁକୁମ କଲେ । ଗ୍ରଙ୍ଗଡ଼ା ଘରୁ ଅଣାଇ ଦୁଇଶ' ଟଙ୍କା ଓ ପାଟବସ୍ତ୍ର ତତ୍‌କ୍ଷଣାତ୍ ପ୍ରଦତ୍ତ ହେଲା ।" (ବ୍ରଜନାଥ ଗ୍ରନ୍ଥାବଳୀରେ ସନ୍ନିବିଷ୍ଟ ସମରତରଙ୍ଗ ପାଦଟୀକା ଓ ପାଠରୁ ଉଦ୍ଧୃତି ଦିଆଯାଇଛି ।)

ଏପରି ଲେଖା ଲେଖିବା ପରେ କେନ୍ଦୁଝର ରାଜାଙ୍କ ପାଖକୁ ଯିବାର ପ୍ରଶ୍ନ ନାହିଁ । ଏହା ପୂର୍ବରୁ କେନ୍ଦୁଝର ଯାଇ ରାଜାଙ୍କ ପାଇଁ ଅମ୍ବିକାବିଳାସ ଲେଖିଥିଲେ, ସେହି ରାଜାଙ୍କ ବିରୋଧରେ ଏପରି ବାକ୍ୟମାନ ପ୍ରୟୋଗ କରି ପାରି ନ ଥାନ୍ତେ । ବିଶେଷକରି ତ୍ରିଲୋଚନଙ୍କ ବିଷୟରେ ଯେତେ ପ୍ରଶଂସା ହୋଇଛି ଓ ବଂଶାନୁକ୍ରମେ ସେ ଯେପରି ସାହାଯ୍ୟପ୍ରାପ୍ତ ହୋଇଛନ୍ତି, ସେ ସବୁ ଭାବି ଭାବି ଲେଖିଛନ୍ତି—

"ଏ ସମରତରଙ୍ଗ ଗୀତ ପ୍ରସାଦେ
ସମ୍ପାଦି ହୋଇବି ମୁଁ ଅତି ପ୍ରମୋଦେ ଯେ ।
ହେ ମହାରାଜା ଦିବ୍ୟ ଚିତ୍ତରେ ହୋଉ
ମୋ'ଠାରେ ଦୟାକର କୀରତି ରହୁ ଯେ ।
ବୁଲି ବୁଲି ବହୁତ ହେଲି ଚକିତ
ଅନୁସରଣେ ରହିବାକୁ ମୋ ଚିତ୍ତ ଯେ ।
ପୁରୁଷାନୁକ୍ରମକୁ ସଙ୍ଖାଳି ହେବ
ସଂସାରେ ପ୍ରଭୁଙ୍କର ଯଶ ରହିବ ।"

କବିଙ୍କର ଏ ପ୍ରାର୍ଥନା ସ୍ୱୀକାର କରି ମହାରାଜା ଧନ ଦାନ କରିଛନ୍ତି । ଏହା ସହିତ 'ରାଜନଙ୍କୁ ଛଳୋକ୍ତି'ର ବିସ୍ତର କରି ତାହାଙ୍କ ଜୀବନୀ ପ୍ରସଙ୍ଗର ଅବତାରଣା କରାଯାଇଥିଲେ ବି କେନ୍ଦୁଝରର ବଳଭଦ୍ର ଭଞ୍ଜଙ୍କ ନାମରେ କବି ବ୍ରଜନାଥ ଅମ୍ବିକାବିଳାସ ରଚନା କରିବା ବିଶ୍ୱାସଯୋଗ୍ୟ ହେଉନାହିଁ । ଯଦିବା ଏପରି କିଛି ଇତିପୂର୍ବରୁ (ସମରତରଙ୍ଗ ରଚନା

Digitized by srujanika@gmail.com

ପୂର୍ବରୁ) କରିଥାଆନ୍ତେ, ତେବେ କେନ୍ଦୁଝରର ରାଜାଙ୍କଠାରୁ ଦାନ ଗ୍ରହଣ କରି ଓ ତାଙ୍କ ନାମରେ ଅମ୍ବିକାବିଳାସ କାବ୍ୟଟି ଲେଖିଦେଇ ପୁଣି ପରେ ତାଙ୍କ ବିରୋଧରେ ଲେଖିଥିଲେ, ସେ ତ ଅକୃତଜ୍ଞ ଭାବରେ ଗୃହୀତ ହୋଇଥାନ୍ତେ ଓ ତାଙ୍କୁ ଲୋକେ ତିରସ୍କାର କରିଥାନ୍ତେ ।

ଏ ଦୃଷ୍ଟିରୁ ବ୍ରଜନାଥ ଗ୍ରନ୍ଥାବଳୀରେ ପ୍ରକାଶିତ ଅମ୍ବିକାବିଳାସ ଯେ ବଳଭଦ୍ରଙ୍କ କୃତି— ଏହା ନିଃସନ୍ଦେହ । ମହାରାଜା ବଳଭଦ୍ର ଭଞ୍ଜ ବୈତରଣୀ କୂଳବର୍ତ୍ତୀ ଆନନ୍ଦପୁର ମୁକାମରେ ଏ ଗ୍ରନ୍ଥ ରଚନା କରିଥିଲେ ଏବଂ ଶେଷ ଜୀବନ କଟାଇଥିଲେ । ତାଙ୍କର ସମାଧିପୀଠ ବୈତରଣୀ ବନ୍ୟାରେ ଲୀନ ହୋଇଯାଇଥିବା ସମ୍ବାଦ ମଧ୍ୟ ମିଳିଅଛି ।

ପୂର୍ବରୁ ବ୍ରଜନାଥଙ୍କ ଅମ୍ବିକାବିଳାସ ଓ ବଳଭଦ୍ରଙ୍କ ଅମ୍ବିକାବିଳାସରେ ଥିବା ବିଷୟଗତ ବୈଷମ୍ୟ ସଂପର୍କରେ ଆଲୋଚିତ ହୋଇଛି । ବ୍ରଜନାଥଙ୍କ ରଚନା ଅନ୍ୟ ଏକ ଅମ୍ବିକାବିଳାସ ଗ୍ରନ୍ଥ ଥିବା ସଂପର୍କରେ ଅଧ୍ୟାପକ ବେଣୁଧର ରାଉତ ମତ ପୋଷଣ କରିଛନ୍ତି । 'ବିଦ୍ୟାଭୂଷଣ ସ୍ମରଣେ' ପ୍ରକାଶିତ ସ୍ମରଣିକାରେ ସେ ଉଲ୍ଲେଖ କରିଛନ୍ତି, "୧୯୫୨।୫୩ ସାଲ ସମୟରେ ମୁଁ ବଲାଙ୍ଗିରରେ ଥିବାବେଳେ କ୍ଷେତ୍ରବାସୀ ନାମଧେୟ ଗାୟକଙ୍କଠାରୁ ଅଂବିକାବିଳାସର ଅ-ଆଦ୍ୟ ନିୟମ ରଚିତ କେତେକ ପଦ ଶୁଣିଥିଲି । ତାଙ୍କଠାରେ ଏପରି ଦୁଇ ତିନୋଟି ଛାନ୍ଦ ଥିଲା । ମାତ୍ର ପ୍ରକାଶିତ ଗ୍ରନ୍ଥରେ ଏ ସବୁ ନ ଥିଲା ଏବଂ ତାହା ପ୍ରକ୍ଷିପ୍ତ ହୋଇଥିବା ବିଶ୍ୱାସ ହେଲା ନାହିଁ । ଫଳରେ ଅନ୍ୟ ଏକ ଅମ୍ବିକାବିଳାସର ସ୍ଥିତି ସଂପର୍କରେ ମୋର ସନ୍ଦେହ ଓ ସମ୍ଭାବନା ରହିଆସିଛି । (ବିଦ୍ୟାଭୂଷଣ ସ୍ମରଣେ--ପାଦଟୀକା ପୃ. ୧୫)

ଅମ୍ବିକା ବିଳାସ କାବ୍ୟ 'ଅ' ଅକ୍ଷର ଆଦ୍ୟରେ ରହି ଏକତ୍ରିଶ ଛାନ୍ଦରେ ସଂପୂର୍ଣ୍ଣ ହୋଇଅଛି । ଆଦ୍ୟ ଛାନ୍ଦରେ ଉମା ସ୍ତୁତି । ପ୍ରଥମ ଆଠପଦ ଶିବ ଓ ଶିବାଙ୍କ ସ୍ତୁତି । ଦଶମ ଓ ଏକାଦଶ ପଦ ସାଗର ଓ ସାଧୁ ପକ୍ଷେ ଏବଂ ଅଷ୍ଟାଦଶ ପଦରେ ସୂର୍ଯ୍ୟ ଓ ଖଳ ପକ୍ଷେ— ଏପରି ଦ୍ୱିଅର୍ଥବାଚକ ପଦ ବ୍ୟବହୃତ ହୋଇଛି ।

ଦ୍ୱିତୀୟ ଛାନ୍ଦର ପ୍ରତ୍ୟେକ ପାଞ୍ଚ ପଦକୁ କବି ଗୋଟିଏ ପଦପୁଞ୍ଜ ରୂପେ ରଚନା କରି ପାଞ୍ଚପଦର ଶେଷ ପାଦଟିକୁ ଅଭିନ୍ନ କରିଛନ୍ତି । ଏଣୁ ୧ ଠାରୁ ୫ପଦ ଶେଷରେ "ଅଳପ ମଣିଲେ ସେ କଳପତରୁ" । ୬-୧୦ପଦର ପ୍ରତ୍ୟେକ ଶେଷ ପାଦ "ଅତି ସରସେ କଲା ସୁରସ ବୃଷ୍ଟି" । ୧୧-୧୫ -- "ଅମରପୁରେ ନାହିଁ ନାହିଁ ଉପମା" । ୧୬-୨୦ "ଅନୁରୂପ ଏ ବାଣୀ ନୁହଇ ପୁଣି ଯେ" । ୨୧-୨୫ "ଅନୁକ୍ଷଣେ ଏ ନରହନ୍ତି ଚତୁରୀ !" ଏବଂ ୨୬-୩୦ ପଦ ଶେଷ ପାଦ "ଅତନୁ ବଳଭଦ୍ର ଭଞ୍ଜନୀ ମିତ (ଭଞ୍ଜ ନିମିତ୍ତ) ଲେଖାଯାଇଛି । ଏଥିରେ କେଳିବେଶ ସ୍ୱଚ୍ଛ ବର୍ଣ୍ଣିତ । ତୃତୀୟ ଛାନ୍ଦ -- ଯାଗ ଧ୍ୱଂସ ଓ ଦକ୍ଷବଧ । ପଞ୍ଚମ ଛାନ୍ଦରେ ଶିବଙ୍କ ଅନୁଚିନ୍ତା । ଷଷ୍ଠ ଛାନ୍ଦ -- ହିମାଳୟ ବର୍ଣ୍ଣନା ଓ ଅମ୍ବିକାଙ୍କ ଜନ୍ମ । ସପ୍ତମ ଛାନ୍ଦ- ବାଳଲୀଳା ବର୍ଣ୍ଣନା । ଏହି ଛାନ୍ଦରେ ଅନ୍ତର୍ଲିପିରେ ପ୍ରଶ୍ନୋତ୍ତର

Digitized by srujanika@gmail.com

ଦିଆଯାଇଛି । ଉଦାହରଣ ସ୍ୱରୂପ—

ଅନନ୍ତ କେ ଖରେ ନ ଜାଣ ହନୁ ଜାତିରେ କିସ
ଅଟଇ କି ରମଣୀ ରାମା ତିଳନାସା ସଦୃଶ ।

ଅନନ୍ତ କେ = ଖ (ଆକାଶ) ହନୁ ଜାତିରେ କିସ = କୀଶ (ମର୍କଟ) ।
ଅଟଇ କି ରମଣୀ (କିରମଣି = ଶୁକଶ୍ରେଷ୍ଠ) ତିଳନାସା ସଦୃଶ - ଶୁକ ନାସା ।

ପ୍ରଶ୍ନ ମଧ୍ୟରେ ଉତ୍ତର ମିଶିକରି ଅଛି ।

ଅଷ୍ଟମ ଛାନ୍ଦରେ ଅମ୍ବିକାଙ୍କ ବୟଃସନ୍ଧି ଓ ଋତୁକର୍ମବିଧି ବର୍ଣ୍ଣନା । ଅମ୍ବିକାଙ୍କ ତାରୁଣ୍ୟ ଆସନ୍ତେ ତାହାର ତୁଳନା ସ୍ୱର୍ଗମର୍ତ୍ତ୍ୟ ପାତାଳରେ ନାହିଁ ବୋଲି ଉଲ୍ଲେଖ କରି କବି ଲେଖିଛନ୍ତି—

"ଅହିନର ସୁରପୁର ପଟାନ୍ତର ହୋଇନାହିଁ କିଛି ଯେ,
ଅଖିଳ ଲାବଣ୍ୟ ରାଶି ଆସି ମିଶି କି ଠୁଳ ହେଉଛି ଯେ,
ଅଙ୍କୁରିତ ହୋଇବାରୁ ସ୍ତନ ଦୁଇ କି ଶୋଭା ଦିଶଇ ଯେ
ଅଙ୍ଗ-ସରସୀରେ ସରସିଜ କଢ଼ି ଧରିକି ଆସଇ ଯେ ।
ଅପୂର୍ବ ବାଟୁଳି ହରିତାଳେ ଦଳି ବଳିଛି ମଦନ ଯେ
ଅଖିଳ ଅକ୍ଷି-ପକ୍ଷୀକି ମାରିବାକୁ କରିଅଛି ମନ ଯେ ।
ଅମଳ କୋମଳ ହେମଲତା କାଳ ଫୁଟିବାକୁ ହେଲା ଯେ ।
ଅନୁମାନ ହୋଏ ତାର ସ୍ତବକ ଏ ଆଗ ପ୍ରକାଶିଲା ଯେ ।
ଅସମ ହେମକମ — ସମ — ସୁଷମ ଶ୍ରୀଅଙ୍ଗ ହୋଇଛି ଯେ
ଅତନୁ ବିନ୍ଧାଣି ରସାଣି ତା ଭ୍ରୁରୁ ରହ ବସାଇଛି ଯେ ।

—ଅମ୍ବିକା ବିଳାସ ଛାନ୍ଦ ୮ ।୨-୭

ଅମ୍ବିକାଙ୍କ ରୂପଲାବଣ୍ୟ ବର୍ଣ୍ଣନା ସହିତ ବ୍ରଜନାଥଙ୍କ ରଚିତ ଅନ୍ୟ ନାୟିକାଙ୍କ ବର୍ଣ୍ଣନାର ତୁଳନା କଲେ ପାର୍ଥକ୍ୟ ଜଣାଯିବ । ସୁପ୍ରଭାଂଶୁ ରାଜ୍ୟର ରାଜା କୃପାନିଧିଙ୍କ କନ୍ୟା କେଳିକଳାନିଧି'ର ବର୍ଣ୍ଣନା—

"ସୁରମଣି ସୁ-ରମଣୀ ମୁଖକୁ ଦେଖିବେ
ଶଚୀ ତେଜି ସଚ୍ଛିତେ ଜୀବନ ସମର୍ପିବେ ହେ
ଆନନରେ ଆନନରେ ଦେବା କି ଉପମା
କଳା କରେ କଳା - କରେ ନାହିଁ ଯା ସୁଷମା ହେ ।
ଆଦରଣେ ଆଦର - ସେ ଜାନ୍ତିରୁ ନୋହିବ
କେଣେ ତାର କେ-ସେ ତାର ଘନ ଲକ୍ଷ୍ୟ ଦେବ ହେ ।"

—କେଳିକଳାନିଧି ୧ମ ଛାନ୍ଦ, ୩୭-୩୯

Digitized by srujanika@gmail.com

ଅନ୍ୟ ଏକ ନାୟିକା 'ବିଚକ୍ଷଣା ବିଳାସବତୀ ନଗ୍ର ରାଜା ବୀରବର ଓ ରାଣୀ ବିନୋଦିନୀଙ୍କ କନ୍ୟା ।

ବିଚକ୍ଷଣାର ରୂପ ବର୍ଣ୍ଣନା—

"ବିଷମ ଶରର କିସେ ଅଟେ ସ୍ୟନ୍ଦନ
ବୀକ୍ଷଣରେ ମୋହିପାରେ ବିଶ୍ୱର ମନ ।
ବିବିଧ ଗୁଣଗଣରେ ଅଟେ ନିପୁଣା
ବୀଣାଦି ବାଜଣା ବାଣୀ କରଇ ବଣା ।
ବିରଞ୍ଚି ରଚି ନ ଥିବ ତେତେ ସୁନ୍ଦର
ବିଧୁ ସେ ଅଟଇ ନର ନେତ୍ର ଚକୋର ।

—ବିଚକ୍ଷଣା ଛାନ୍ଦ ୧ ।୨୨—୨୪

ଅମ୍ବିକାଙ୍କ ଯୌବନ ବର୍ଣ୍ଣନା ଯେପରି ବିସ୍ତୃତ, କେଳିକଳାନିଧି ଓ ବିଚକ୍ଷଣାଙ୍କ ସ୍ଥଳେ ସେପରି ବର୍ଣ୍ଣନା ଦେବାର ଅବକାଶ ଥିଲେହେଁ ବ୍ରଜନାଥ ନାୟିକାମାନଙ୍କର ଶୈଳୀଗତ ପାର୍ଥକ୍ୟ ହେତୁ ଏହା ଯେ ବ୍ରଜନାଥଙ୍କର ରଚନା ନୁହେଁ— ସିଦ୍ଧାନ୍ତକୁ ପ୍ରମାଣିତ ମାତ୍ର କରୁଛି ।

ନବମ ଛାନ୍ଦରେ ଅମ୍ବିକାଙ୍କର ଶିବପ୍ରାପ୍ତି ନିମିତ୍ତ କଠୋର ତପସ୍ୟା ବର୍ଣ୍ଣିତ । ଦଶମ ଛାନ୍ଦରେ ଶିବ - ତପୋଭଙ୍ଗ ନିମିତ୍ତ କନ୍ଦର୍ପର ପୁଷ୍ପଶର ପ୍ରୟୋଗ — ଶିବଙ୍କ ନେତ୍ର ଜ୍ୟୋତିରେ କନ୍ଦର୍ପ ଭସ୍ମ । ଏକାଦଶ ଛାନ୍ଦ-ରତି ବିଳାପ । ଦ୍ୱାଦଶ ଛାନ୍ଦ— ପାର୍ବତୀଙ୍କ ସ୍ୱପ୍ନ (ଦୁଃସ୍ୱପ୍ନ) । ୧୩ଶ ଛାନ୍ଦ— ପାର୍ବତୀଙ୍କ ବିରହ । ୧୪ଶ ଛାନ୍ଦ— ପାର୍ବତୀଙ୍କ ତପସ୍ୟା ଓ ବରପ୍ରାପ୍ତି । କାଳିଦାସଙ୍କ କୁମାରସମ୍ଭବ ପରି ରଚିତ ହୋଇଥିଲେ ହେଁ ଏଠାରେ ବଟୁ ବେଶରେ ନ ଆସି ଶିବ ପାର୍ବତୀଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଆବିର୍ଭୂତ ହୋଇଛନ୍ତି ଏବଂ ପାର୍ବତୀଙ୍କ ଶିବ ପଦେ ସମର୍ପଣ ପ୍ରାର୍ଥନାରେ "ଅସ୍ତୁ ହେଉ ଯେଉଁ ବର ଇଷ୍ଟ ତୋରରେ" କହି ବରଦାନ କରିଛନ୍ତି । ପଞ୍ଚଦଶ ଛାନ୍ଦ — ଶିବଙ୍କ ଅନ୍ତର୍ଦ୍ଧାନ ପରେ ଉମାଙ୍କ ଅବସ୍ଥା ବର୍ଣ୍ଣନା ଷୋଡଶ ଛାନ୍ଦ — ଅଚେତନରେ ଉମାଙ୍କର ଗ୍ଧଟୁବାଣୀ । ସପ୍ତଦଶରେ ପ୍ରତିଜ୍ଞା ଓ ଅଷ୍ଟାଦଶରେ ପାର୍ବତୀଙ୍କ ବିବାହ ପାଇଁ ବର ଅନ୍ୱେଷଣ । ଉନବିଂଶରେ କାଶୀପୁର ବର୍ଣ୍ଣନା, ବିଂଶ ଛାନ୍ଦରେ ଶିବଙ୍କ ବିବାହଯାତ୍ରା । ଏକବିଂଶ — ବିବାହମଣ୍ଡପ ବର୍ଣ୍ଣନା । ଦ୍ୱାବିଂଶ ଛାନ୍ଦରେ ବିବାହ । ତ୍ରୟୋବିଂଶ ଛାନ୍ଦରେ ବରଯାତ୍ରୀ-ଚର୍ଚ୍ଚା ବର୍ଣ୍ଣିତ । ଏଥିରେ ବିଶେଷଭାବରେ ଉଲ୍ଲେଖନୀୟ ଖାଦ୍ୟପେୟର ତାଲିକା ଦିଆଯାଇଛି । ସୁବାସିତ ପାୟସ, ଖଣ୍ଡ, ପଇଡି- (ଘୃତଯୁକ୍ତ ମୁଗଡାଲି), ମହୁର (ବିଭିନ୍ନ ପରିବା ସମ୍ମିଶ୍ରଣରେ ପ୍ରସ୍ତୁତ ଘାଣ୍ଟ ତରକାରି) ପାଚଲ (ଆମ୍ବିଳ ତରକାରି), ଶାକରା (ମିଠା ଓ ଖଟାଦିଆ ପରିବା ତରକାରି), ମଧୁରୁଚି (ରାଇ ଆମ୍ବୁଲ ମିଶା, କଢ଼ି(ଦହିକଡି) ରାଇ(ବଟା ସୋରିଷ ଦେଇ ଘଷା ଯାଇଥିବା ଆମ୍ବୁଲ ମରିଚପାଣି

Digitized by srujanika@gmail.com

ଘଣ୍ଟା), ସାଁସା ମୁଗ ( ଗୋଲମରିଚ ବଟା ବା ଗୁଣ୍ଡ ପଡି ରନ୍ଧା ହୋଇଥିବା ଗଜାମୁଗ ତରକାରି), ପୀତ ସୁବାସ (ଘିଅରେ ପୁଆଁ ହୋଇଥିବାରୁ ସ୍ୱର୍ଣ୍ଣାଭକାନ୍ତି ଓ ସୁଗନ୍ଧଯୁକ୍ତ) ବହୁ ପୁରୋଦର (ନାନା ଜାତିର ବହୁ ପରସ୍ତ ଦିଆହୋଇଥିବା ପୁର), ଅମୃତ କେଳି (ବିଶେଷ ପ୍ରକାରେ ତିଆରି କାକରା), କାନ୍ତି-ସ୍ୱେପାଛଡା ମୁଗ ବଟାରେ ଦୁଧ, ଶର୍କରା, ମସଲା ମିଶାଇ ତିଆରି ହୋଇଥିବା ଯନ୍ତଣିକୁ ଖଣ୍ଡମାନ କରି ପାଣିମିଶା ମଇଦାରେ ବୁଡାଇ ଘିଅରେ ଛଣାଯାଏ । (ମୁଗରେ ତିଆରି ହେଲେ ରାମରୋଚକ - ବାରିପଦା) ଓ ବିରିରେ ହେଲେ କାନ୍ତି (ପୁରୀ) କହନ୍ତି । ରସକେଳି - ଛେନା ମଇଦା ମିଶାଇ ଚକଟି ବରା ପରି ଗୋଲ ଗୋଲ କରି ଘିଅରେ ଛାଣି ଶିରାରେ ପକାଯାଏ । ଅମାଲୁ — ମାଲପୁଆ । ତ୍ରିପୁରା — ତ୍ରିପୁରୀ । ପରସ୍ତ ପରସ୍ତ କରି ପୁରୀ ମଧ୍ୟରେ ପୁରଦେଇ କରାଯାଏ । ପାରିଜାତକ — ବିରିବଟାରେ ହେଙ୍ଗୁ, ଜିରା ଆଦି ଦେଇ ଗୋଳା କରି ଘିଅରେ ଛାଣି କନ୍ଦଗୁଣ୍ଡ ଛିଞ୍ଚାଯାଏ । ଝିଲ୍ଲୀ — ନାଡି — ଏହାକୁ ଶିରାରେ ପକାଇଲେ ଜଲବି କୁହାଯାଏ। ପୋତପିଠା — ତେଜପତ୍ର ଓ ଛେନା ପେସ୍ତା ଆଦି ପୁରଦେଇ ଜରାଯାଏ । ଟାକୁଆ — ଆମ୍ବଟାକୁଆ ପରି ଦୀର୍ଘାକୃତି ପିଠା । (ନିମାପତାର ଦୁଧଛେନାର ଜଲବି - ଝିଲ୍ଲୀ) ।

ଏହିସବୁ ବିଭିନ୍ନ ପ୍ରକାର ଖାଦ୍ୟଦ୍ରବ୍ୟ ଆଜିକାଲି ଦେଖିବାକୁ ମିଳେ ନାହିଁ । ମାତ୍ର ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଅଦ୍ୟାବଧି ଏହିପରି ଅନେକ ପ୍ରକାର ଭୋଗର ପ୍ରଚଳନ ରହିଛି ।

ଚତୁର୍ବିଂଶ ଛାନ୍ଦରେ ମଧୁଶଯ୍ୟାବେଶ, ପଞ୍ଚବିଂଶରେ କେଳିମନ୍ଦିରରୁ ପାର୍ବତୀଙ୍କ ପ୍ରତ୍ୟାବର୍ତ୍ତନ — ଷଡବିଂଶରେ ସଖୀମାନଙ୍କ ପରିହାସ, ସପ୍ତବିଂଶ ଛାନ୍ଦ ହିମାଳୟଙ୍କର ଯୌତୁକଦାନ, ଅଷ୍ଟାବିଂଶରେ ବାହୁଡା ବିଜେ । ଊନତ୍ରିଂଶରେ ବର୍ଷା ବର୍ଣ୍ଣନା, ଅକ୍ଷର ମନସା, ନ୍ୟାୟବଳ ଖେଳ ଓ କେଳି । ଏଥିରେ ଚ୍ୟୁତାକ୍ଷର, ମଣ୍ଡପ ବନ୍ଧ, ଗୋମୂତ୍ରିକା ବନ୍ଧ ଆଦି ପ୍ରଦତ୍ତ । ତ୍ରିଂଶ ଛାନ୍ଦରେ ମାନଭଞ୍ଜନ ଗୃଚ୍ଛ, ଏକତ୍ରିଂଶ ଛାନ୍ଦ — ଶରଦ୍ ବର୍ଣ୍ଣନା । ଦ୍ୱାତ୍ରିଂଶ ଛାନ୍ଦରେ ହିମଋତୁ ବର୍ଣ୍ଣନା, ଚ୍ୟୁତାକ୍ଷର ଓ ଦତ୍ତାକ୍ଷର ଦିଆଯାଇଛି ।

ଦୃଷ୍ଟାନ୍ତ — ଅଭ୍ରତନୁ ଜିତ-ଭବ ଶ୍ରୀନିବାସ
ଅକ୍ଷୟେ ଭୂତବିଳାସୀ ବୃଷବଶ

ଅକ୍ଷରଟିଏ ଚ୍ୟୁତ କଲେ— ଅତନୁ ଜିତ ଭବ ଶ୍ରୀନିବାସ
ଅୟେ ଭୂତ ବିଳାସୀ ବୃଷବଶ

ଦତ୍ତାକ୍ଷର — ଅନନ୍ତ ପରମାନନ୍ଦ ସୁରାଜିତ
ଅସୁର ଦାନବ ବାର ଦୁଃଖ ଶାନ୍ତ ।

ଅକ୍ଷର ଦତ୍ତ ହେଲେ — ଅନନ୍ତ ପରମାନନ୍ଦ କି ସୁରାଜିତ
ଅସୁର ଦାନବ ବାରଣ ଦୁଃଖ ଶାନ୍ତ ।

Digitized by srujanika@gmail.com

ତ୍ରୟସ୍ତିଂଶ ଛାନ୍ଦରେ ଶିଶିର - ବର୍ଣ୍ଣନା, ଚତୁସ୍ତିଂଶ ଛାନ୍ଦରେ ବସନ୍ତ - ବନବିହାର ଓ ଉକ୍ତି ପ୍ରତ୍ୟୁକ୍ତି । ଏଥିରେ ଶ୍ଳେଷୋକ୍ତି, ଛନ୍ଦଶ୍ଳେଷ, ଶ୍ଳେଷ, ଶ୍ଳେଷାଶୟ ପ୍ରଶ୍ନୋତ୍ତର ଆଦି ପ୍ରଦତ୍ତ । ପଞ୍ଚତ୍ରିଂଶ ଛାନ୍ଦରେ ଉମାଙ୍କର ଗର୍ଭୋଦୟ ଓ କୁମାର ଜନ୍ମ । ଷଟ୍‌ତ୍ରିଂଶ ଛାନ୍ଦ — କୁମାର ଜନ୍ମୋତ୍ସବ, ସୁରାସୁରାଦି ନିମନ୍ତ୍ରଣ ଓ ତାଣ୍ଡବ ନୃତ୍ୟ ରସ । ଏଥିରେ ବ୍ରହ୍ମସ୍ତୁତି, ଇନ୍ଦ୍ରସ୍ତୁତି, ଦେବଗଣ ସ୍ତୁତି, ପରମହଂସ ସ୍ତୁତି, ନାରଦ ସ୍ତୁତି, ବ୍ୟାସ ସ୍ତୁତି, ଶୁକଦେବ ସ୍ତୁତି, ଅଥର୍ବଋଷି ସ୍ତୁତି, ମୁନିଗଣ ସ୍ତୁତି, ସିଦ୍ଧଗଣ ସ୍ତୁତି, ଗନ୍ଧର୍ବଗଣ ସ୍ତୁତି ଆଦି ସଂସ୍କୃତ ଭାଷାରେ ଲିଖିତ । ପିଙ୍ଗଳ (ପ୍ରାକୃତ) ଭାଷାରେ ନାଗସ୍ତୁତି, ରାକ୍ଷସଗଣ ସ୍ତୁତି, ଖୋରଠା ଭାଷାରେ ଅସୁର-ସ୍ତୁତି, ବଙ୍ଗଦେଶ ସ୍ତୁତି ବଙ୍ଗଳାଭାଷାରେ । ଏଠାରେ ଭଣତିରେ "ଅୟେ ବିଭୁ ବିଶ୍ୱନାଥ ଭାଷେ ଦାସ ବ୍ରଜନାଥ ଭବବନ୍ଧ ବନ୍ଧନୁଉଦ୍ଧର" ଏବଂ ଉତ୍କଳ ଦେଶ ସ୍ତୁତିରେ "ଅୟେ ମନ୍ଦାକିନୀ ଧାରଣ, ଅଙ୍ଘ୍ରିଂ ଯୁଗ କଞ୍ଜେ ବ୍ରଜନାଥ ଶରଣ" ବୋଲି ଏଇ ଦୁଇଟି ସ୍ତୁତିରେ ବ୍ରଜନାଥଙ୍କ ନାମୋଲ୍ଲେଖ ରହିଛି । ମାତ୍ର ଏହାର ପରବର୍ତ୍ତୀ ସ୍ତୁତିରେ ଭଞ୍ଜବୀର, ବଳଭଦ୍ର ଆଦି ଭଣତି ରହିଛି । ଏଥିରୁ ସ୍ପଷ୍ଟ ହେଉଛି ଯେ ବ୍ରଜନାଥ ଗ୍ରନ୍ଥାବଳୀରେ ମୁଦ୍ରିତ 'ଅମ୍ବିକାବିଳାସ' ଢେଙ୍କାନାଳରୁ ପ୍ରାପ୍ତ ହୋଇଥିବାରୁ ପୋଥିରେ ବ୍ରଜନାଥଙ୍କ ରଚନା ମିଶ୍ରିତ ହୋଇଛି କିମ୍ବା ଏଗୁଡ଼ିକ ପ୍ରକ୍ଷିପ୍ତ । ପ୍ରଥମ ବ୍ରଜନାଥ କୃଷ୍ଣଙ୍କ ଅର୍ଥରେ ଓ ଦ୍ୱିତୀୟଟି ବଳଭଦ୍ରଙ୍କ ସ୍ଥାନରେ ବ୍ରଜନାଥ ଲେଖନକାରଙ୍କ ପାଇଁ ହୋଇପାରେ ।

ଅଷ୍ଟତ୍ରିଂଶ ଛାନ୍ଦରେ ଠାକୁରାଣୀ ସ୍ତୁତି, ଉନଚତ୍ୱାଂରିଶ ଛାନ୍ଦରେ ପ୍ରେମଉକ୍ତି, ଚତ୍ୱାଳିଶ ଛାନ୍ଦରେ ସ୍ୱପ୍ନାଦେଶେ ସୁବିପ୍ରର ରାଜନୀତି ବିଷୟରେ ଉପଦେଶ ଏବଂ ଏକଚତ୍ୱାଳିଶ ଛାନ୍ଦରେ ତ୍ରୈଲୋକ୍ୟଗୋସାଇଁ ବଳଭଦ୍ର ପ୍ରଭୁ ବିଜେ କରିଥିବା ଶତ୍ରୁ ଅଲଘିଂତ - ଦୁର୍ଗପୁରୀ ନିଜ ରାଜ୍ୟ କେନ୍ଦୁଝରୀର ବର୍ଣ୍ଣନା ଓ ତତ୍ରତ୍ୟ ଦେବଦେବୀଙ୍କ ବନ୍ଦନା କରିଛନ୍ତି । କାବ୍ୟ ରଚନା ସ୍ଥାନ ସଂପର୍କରେ ମଧ୍ୟ ଶେଷକୁ ସୂଚନା ଦେଇଛନ୍ତି—

"ଅଧମୋଦ୍ଧାରଣ ବଳଭଦ୍ର ଗୁଣ—ମହିମା ସ୍ଥାନ ପ୍ରାସାଦ
ଅଘବିନାଶିନୀ ବୈତରଣୀ ନଦୀ ପ୍ରଭାବରେ ଗୀତ ପଦ ।"

ବ୍ରଜନାଥଙ୍କ କୃତକାବ୍ୟ ହୋଇଥିଲେ ଏପରି ସ୍ପଷ୍ଟ ଭାବରେ ବର୍ଣ୍ଣନା କରି ନ ଥାନ୍ତେ । ବ୍ରଜନାଥଙ୍କ ରାଜସଭାରେ ସମରତରଙ୍ଗ ରଚନାର ଉଲ୍ଲେଖ ନାହିଁ । ପରନ୍ତୁ ରାଜାଙ୍କ ଛାମୁରେ ଜଣାଇଛନ୍ତି "ମୁଁ କୋଠ ଖାନଜାଦ ଲୋକ ।" "ଆନ ନ ଜାଣଇ ଏକା ଜାଣନ୍ତି ଛାମୁ" ପୁଣି "କୁଟୁମ୍ବ ପଞ୍ଚିଶ ପରାଣୀ, କି ପୋଷିବି ଏଥି ପର ରାଜ୍ୟରୁ ଆଣି ।"

ଏଥିରୁ ସ୍ପଷ୍ଟ ହୁଏ— ପୁରୁଷାନୁକ୍ରମେ ରାଜାନୁଗ୍ରହ ପାଇଥିବା ବ୍ରଜନାଥ ନିଜ ରାଜ୍ୟର ରାଜାଙ୍କ ବ୍ୟତୀତ ଅନ୍ୟ କୌଣସି ରାଜ୍ୟକୁ ଯାଇ ସେବା କରିନାହାନ୍ତି କିମ୍ବା ତାହାର ପକ୍ଷପାତୀ ନୁହନ୍ତି । ବ୍ରଜନାଥଙ୍କ ଅମ୍ବିକାବିଳାସରେ ବର୍ଣ୍ଣିତ କୁମାର ଚରିତ ଗ୍ରନ୍ଥାବଳୀରେ ମୁଦ୍ରିତ ଅମ୍ବିକାବିଳାସରେ କେବଳ କୁମାରଙ୍କ ଜନ୍ମ ଓ ଜନ୍ମୋତ୍ସବ ବର୍ଣ୍ଣନାରେ ଇତି ହୋଇଛି । ଏଣୁ ଏ ଗ୍ରନ୍ଥ ଦୁଇଟି ସ୍ୱତନ୍ତ୍ର ବୋଲି ସ୍ପଷ୍ଟ ହେଉଛି ।

— ୦ —

Digitized by srujanika@gmail.com

# ଭଞ୍ଜରାଜ ବିରୁଦ ଓ ଜୈନଧର୍ମ

ରାଜାମାନଙ୍କର ଦାନପତ୍ର, ଚିଟାଉ ବା ଆଜ୍ଞା ପତ୍ରିକାରେ ନିଜର ଇଷ୍ଟ ଦେବତାଙ୍କ ନାମ ସହିତ ନିଜ ବଂଶ ପ୍ରଶସ୍ତି ଉଲ୍ଲେଖ କରୁଥିଲେ । ଏହି ଲେଖାକୁ 'ବିରୁଦ' 'ଗଣସମ୍ମତ' ବା 'ଗଣସନ୍ତ୍ରତ' କୁହାଯାଉଥିଲା । ଘୁମୁସର, ମୟୂରଭଞ୍ଜ, କେନ୍ଦୁଝର, ବଉଦ, ଦଶପଲ୍ଲା ଓ କନିକାରେ ଭଞ୍ଜ ରାଜାମାନେ ରାଜତ୍ୱ କରୁଥିଲେ । ସେମାନଙ୍କର ବ୍ୟବହୃତ ବିରୁଦ (ସ୍ଥାନୀୟ ପାର୍ଥକ୍ୟ ସତ୍ତ୍ୱେ) ପ୍ରାୟ ଏକପ୍ରକାର । ଯଥା— "ଅଯୋନିସମ୍ଭୂତ, ମୟୂର ଡିମ୍ବରୁ ଜାତ, ବଶିଷ୍ଠ ମହର୍ଷି ପ୍ରତିପାଳଣ, ଶ୍ରୀରାମଚନ୍ଦ୍ର ଦେବ ଟୀକାସାରଣ, ବତାମ ଦେବଗଣ, ହେରମ୍ବ ଦେବତାଙ୍କ ବରପ୍ରସାଦ, ଶ୍ରୀ କିଅକେଶ୍ୱରୀ ଦେବୀ ଚରଣେ ଶରଣ" ପର୍ଯ୍ୟନ୍ତ ସବୁ ରାଜବଂଶରେ ସମାନ ରହିଛି । ମାତ୍ର ପାର୍ଥକ୍ୟ—

ଘୁମୁସର — ଶ୍ରୀ ଦୁର୍ଗାଦେବୀଙ୍କର ବରପୁତ୍ର, ଦେଢଲକ୍ଷ ଦ୍ୱୌଲକ୍ଷ ମଣ୍ଡଳେଶ୍ୱର ବିଜ୍ୱଳକାଧିପତି ।

ମୟୂରଭଞ୍ଜ — ହରିହର ଶରଣ, ଜୟଗୋପାଳ ଭକ୍ତ ୨୮ ସହସ୍ର ହରିପୁର ଶୁଭସ୍ଥାନାଧିପତି ।

କେନ୍ଦୁଝର — ତାରିଣୀଦେବୀ ଚରଣେ ଶରଣ, ହରିହର ଶରଣ, ଜୟଗୋପାଳ ଭକ୍ତ ଚଉଦସହସ୍ର ଗାଉତାଳ କେନ୍ଦୁଝରୀ ଶୁଭସ୍ଥାନାଧିପତି ।

ବିଦ୍ୟାଭୂଷଣ ଆଚାର୍ଯ୍ୟ ମହାଶୟ କେନ୍ଦୁଝର ଅବସ୍ଥାନ କାଳରେ ଭଞ୍ଜ ବିରୁଦ ସଂପର୍କୀୟ ପୋଥିଟିଏ ଲାଭ କରି ବିଭିନ୍ନ ରାଜ୍ୟରେ ରାଜପଣ କରିଥିବା ଭଞ୍ଜବଂଶଙ୍କ ବିରୁଦମାନଙ୍କର ତୁଳନାତ୍ମକ ଅଧ୍ୟୟନ କରି ନବଭାରତ ଡିସେମ୍ବର ୧୯୫୦ ସଂଖ୍ୟାରେ ପ୍ରକାଶ କରିଥିଲେ । ରାଜତନ୍ତ୍ର ଶାସନର ଅବସାନ ପରେ ଏ ବିରୁଦଗୁଡ଼ିକର ପ୍ରାଧାନ୍ୟ ଆଉ ନାହିଁ କିମ୍ବା ସେଗୁଡ଼ିକର ଆଉ ପ୍ରଚଳନ ନାହିଁ । ମାତ୍ର ଐତିହାସିକ ଦୃଷ୍ଟିକୋଣରୁ ଏଗୁଡ଼ିକର ଆବଶ୍ୟକତା ଅଧ୍ୟୟନ ନିମନ୍ତେ ଅନସ୍ୱୀକାର୍ଯ୍ୟ ।

ଭଞ୍ଜବଂଶୀୟ ବିରୁଦରେ ବ୍ୟବହୃତ ମୟୂର ଡିମ୍ବରୁ ଜାତ ଋଗ୍‌ବେଦର ୧୦ମ ମଣ୍ଡଳ ୧୨୧ ସୂକ୍ତ (ପ୍ରାଜାପତ୍ୟଃ)ର ହିରଣ୍ୟଗର୍ଭ ଅନୁସରଣରେ ପଣ୍ଡିତମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ଅନୁମିତ ହୁଏ । ଉକ୍ତ ସୂକ୍ତରେ ଅଛି—

Digitized by srujanika@gmail.com

"ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍
ସଦାଧାର ପୃଥିବୀଂ ଦ୍ୟାମୁତେ ମାଂ କସ୍ମୈ ଦେବାୟ ହବିଷାବିଧେମ ।

'ହିରଣ୍ୟଗର୍ଭ' ଶବ୍ଦର ଅର୍ଥ 'ସୁବର୍ଣ୍ଣ ଅଣ୍ଡ' ରୂପେ (S.N. Dasgupta 'A History of Indian Philososophy, Vol. I.P.23) ବର୍ଣ୍ଣିତ ।

ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱବିଦ୍ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ କହନ୍ତି, ଓଡ଼ିଶାର ମୟୂରଭଞ୍ଜର ଆଦିମ ଅଧିବାସୀ 'ଖାରିଆ' ଓ 'ପୁରାଣ' ଉପଜାତିଙ୍କ ମଧ୍ୟରେ ପ୍ରଚଳିତ ସୃଷ୍ଟିତତ୍ତ୍ୱ ଏହି 'ସୁବର୍ଣ୍ଣ ଅଣ୍ଡ' ପ୍ରସଙ୍ଗରେ ତୁଳନୀୟ । ସେମାନଙ୍କ ସାଂପ୍ରଦାୟିକ ବିଶ୍ୱାସ ହେଉଛି, ମୟୂର ଅଣ୍ଡର କେଶରରୁ ଭଞ୍ଜ ରାଜବଂଶ, ଶ୍ୱେତାଂଶରୁ 'ପୁରାଣ' ଓ ଆବରଣରୁ 'ଖାରିଆ'ମାନଙ୍କର ଉପତ୍ତି ହୋଇଛି । (Studies in Orissan History, Archeology and Archives P.541)

ବିଭିନ୍ନ ରାଜବଂଶରେ ବିରୁଦ ଅଭିନ୍ନ ହେଲେହେଁ ସେମାନଙ୍କ ଅଧୀନସ୍ଥ ମଣ୍ଡଳେଶ୍ୱରଙ୍କ ସଂଖ୍ୟାନୁସାରେ ପୃଥକ୍ ଲେଖାଯାଏ ।

ଘୁମୁସର — ଦେଢଲକ୍ଷ ବା ଦ୍ୱୈଲକ୍ଷ; ମୟୂରଭଞ୍ଜ — ଅଠେଇଶ ସହସ୍ର, ବଣାଇ ବ୍ରିଳିଶ ସହସ୍ର, କେନ୍ଦୁଝର ଚଉଦ ସହସ୍ର; ପୋଡାହାଟ (ସିଂହଭୂମ), ଖରସୁଆଁ, ଷଢେଇକଳା, ଦଶପଲ୍ଲା, ବଉଦ, ବାମଣ୍ଡା ଓ ଗାଙ୍ଗପୁର ପ୍ରତ୍ୟେକଙ୍କର ଚଉଦ ସହସ୍ର ଲେଖାଏଁ ।

ଏହି ବିରୁଦଗୁଡ଼ିକର ବିଶ୍ଳେଷଣରୁ ରାଜବଂଶର ପାରଂପରିକ ଅଙ୍ଗୀକୃତ ଧର୍ମମତ ବିଷୟରେ ଜଣାଯାଏ ।

କେନ୍ଦୁଝରର ବିରୁଦରେ ଥିବା ଧାର୍ମିକ ସୂଚନାମାନ—

(୧) ଦେବଗଣ— ଜୈନମତର ସୂଚକ
(୨) ହେରମ୍ବ ଦେବତାଙ୍କ ବରପ୍ରସାଦ— ଗାଣପତ୍ୟ ମତର ସୂଚକ
(୩) ହରିହରଶରଣ— ଶୈବ ଓ ବୈଷ୍ଣବ ମତର ସମନ୍ୱୟ
(୪) କୀଷ୍ଟକେଶ୍ୱରୀ ଚରଣେ ଶରଣ— ଶାକ୍ତ ମତର ସୂଚକ
(୫) ତାରିଣୀ ଦେବୀ ଚରଣ ଶରଣ— ଶାକ୍ତ ମତର ସୂଚକ
(୬) ରାଉତାଳ ଚରଣେ ଶରଣ— ବଜ୍ରଯାନର ଆଚାର୍ଯ୍ୟ ଶାନ୍ତିଦେବଙ୍କ ପ୍ରଭାବରୁ
(୭) ଜୟଗୋପାଳ ଭକ୍ତ— ବୈଷ୍ଣବ ମତର ସୂଚକ ।

ଏ ପ୍ରସଙ୍ଗରେ ପଣ୍ଡିତ ଆଚାର୍ଯ୍ୟ ମୟୂରଭଞ୍ଜର 'କେଶରି' ଓ କେନ୍ଦୁଝରର 'ଓଖୁଣ୍ଡା'ରୁ ପ୍ରାପ୍ତ ତାମ୍ରଶାସନର ବିରୁଦର ଆଲୋଚନା କରିଛନ୍ତି । ତାମ୍ରଶାସନର ପାଠ—

Digitized by srujanika@gmail.com

ଆସୀତ୍ କୋଟ୍ୟାଶ୍ରମ ମହାତପୋଧିଷ୍ଠାନ ମୁତ୍ତମମ୍
ମୟୂରାଣ୍ଡୋଦ୍ଭବଃ ତସ୍ମାତ୍ ଗଣଦଣ୍ଡୋ ବୀରଭଦ୍ରାଖ୍ୟଃ । ୧ ।
ଅଷ୍ଟାଶୀତି ସହସ୍ରୈସ୍ତୁ ମୁନିଭିଃ ବ୍ୟାପୃତଃ ପୁରା
ତେଷାଂ ତୁ ପ୍ରାର୍ଥନାଂ ଦୃଷ୍ଟ୍ୱା ରାମଦେବେନ ସେବିତଃ । ୨ ।
ତତୋଽଷ୍ଟାଶୀତିସହସ୍ର ଗ୍ରାମସ୍ୟାଧିପତିଃ କୃତଃ
ଚକ୍ରବର୍ତ୍ତିସମା ସର୍ବୋପାଦେନାଞ୍ଚନ (ଚ) ସ୍ଥିତଃ
ପ୍ରତିପକ୍ଷ ନିଧନ ଦକ୍ଷେ ବଶିଷ୍ଟ ମୁନି ପାଳିତଃ
ଆଦିଭଞ୍ଜ ରିପୁ ନ ଦଳ (ହ)ନ ଦାବାନଳଃ
ସରସ୍ୱତୀ ନ୍ନିମିତ୍ତୋ ଜାତଃ... । ୪ । (I.H.Q.XIII 1937)

୧ମ ଶ୍ଳୋକ ଅର୍ଥ— କୋଟ୍ୟାଶ୍ରମ ନାମରେ ଏକ ଶ୍ରେଷ୍ଠ ଓ ବିଶାଳ ତପସ୍ୟାସ୍ଥଳ (ତପୋବନ) ଥିଲା । ମୟୂର ଅଣ୍ଡାରୁ ଜାତ ହୋଇଥିବା ବୀରଭଦ୍ର ନାମକ ଜଣେ ଗଣଦଣ୍ଡ(ଗଣଧର) ସେହିଠାରୁ (ନିର୍ଗତ ହୋଇଥିଲେ) ଆସିଥିଲେ ବା ତାଙ୍କଠାରୁ ଆଦି-ଭଞ୍ଜ ଜାତ ହୋଇଥିଲେ। (ଆଦିଭଞ୍ଜ ମୟୂରଭଞ୍ଜରେ ଓ ଜ୍ୟୋତିଭଞ୍ଜ କେନ୍ଦୁଝରରେ ଭଞ୍ଜବଂଶର ପ୍ରତିଷ୍ଠାତା) ।

୨ୟ ଶ୍ଳୋକ— ଅତି ପ୍ରାଚୀନକାଳରେ ସେ ଅଠାଅଶୀ ହଜାର ମୁନିକର୍ତ୍ତୃକ ବ୍ୟାପୃତ ଅର୍ଥାତ୍ ପାଳିତ ହୋଇଥିଲେ । ସେମାନଙ୍କ ପ୍ରାର୍ଥନାକୁ ବିଗ୍ଭର କରି ରାମଦେବ (ବଳଦେବାବତାର) ସେହି ବୀରଭଦ୍ରଙ୍କୁ ସେବା କରିଥିଲେ, ଅର୍ଥାତ୍ ପାଳନ ଓ ଶିକ୍ଷାଦେବାରେ ଲାଗିଥିଲେ ।

୩ୟ— ତତ୍ପରେ ତାଙ୍କୁ ଅଠାଅଶୀ ହଜାର ଗଣଧର ଯେଉଁ ଗଣରେ ଥାଆନ୍ତି, ସେହି ଗଣର ଅଧିପତି କରିଦେଲେ । ସେ ଚକ୍ରବର୍ତ୍ତୀ (ଜୈନପୁରାଣ ପ୍ରସିଦ୍ଧ ଭରତ ଆଦି) 'ସମା'ର (ବର୍ଷର) ପାଦୋନ (ତିନିପାଆ) ବର୍ଷିତଃ ଅବସ୍ଥାନ କଲେ ।

୪ର୍ଥ— ଶତ୍ରୁବିନାଶ ନିପୁଣ ଓ ଶତ୍ରୁମାନଙ୍କ ଦାବାନଳସଦୃଶ ଆଦିଭଞ୍ଜ ସରସ୍ୱତୀ ନିମିତ୍ତ (ବୋଧହୁଏ) ଜୈନଧର୍ମ ପ୍ରସିଦ୍ଧ ସରସ୍ୱତୀ ନାମକ ଗଚ୍ଛ ବା ଅନ୍ୱୟର ଶ୍ରାବକ ହୋଇଥିଲେ ।

ବିରୁଦର 'ବଡାମଗଣ' ଓ ତାମ୍ର ଶାସନର 'ଗଣଦଣ୍ଡ' ପଦଦ୍ୱୟର ବିଗ୍ଭର କରି ପଣ୍ଡିତ ଆଗ୍ରର୍ଯ୍ୟ ନିମ୍ନୋକ୍ତ ମତ ଉପସ୍ଥାପନ କରିଛନ୍ତି ।

'ଗଣ' ଶବ୍ଦ ଜୈନଧର୍ମରେ ପ୍ରସିଦ୍ଧ । ମୁନି (ଅନଗାରିକ) ଅର୍ଥାତ୍ ଗୃହତ୍ୟାଗୀ ପୁରୁଷମାନଙ୍କର ସମୂହକୁ ଗଣ, ସଂଘ, ବଳି ପ୍ରଭୃତି ନାମରେ ଅଭିହିତ କରାଯାଏ । ଜୈନ ତୀର୍ଥଙ୍କର ୨୪ ଜଣଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର କେତେଗୁଡ଼ିଏ 'ଗଣ' ଥା'ନ୍ତି । ପ୍ରତ୍ୟେକ 'ଗଣ'ର ନିୟାମକଙ୍କୁ ଗଣଧର, ଗଣୀ, ଗଣେନ୍ଦ୍ର ବା ଗଣନାୟକ କୁହାଯାଏ । ଏହି

Digitized by srujanika@gmail.com

ଗଣମାନଙ୍କର ଭେଦ ତଥା ଉପଭେଦ ଥାଏ । ଆଗ୍ଧର୍ଯ ଅର୍ହଦ୍‌ବଳି ପ୍ରଥମେ 'ଗଣ'ର ପ୍ରବର୍ତ୍ତନ କଲେ । ସେ ଥରେ ପୁଣ୍ଡ୍ରବର୍ଦ୍ଧନପୁରରେ ଶତଯୋଜନବର୍ତ୍ତୀ ମୁନିମାନଙ୍କୁ ଏକାଠି କରାଇ 'ଯୁଗ ପ୍ରତିକ୍ରମଣ' ଉତ୍ସବ ପାଳନ କଲେ । ସେ ପ୍ରଶ୍ନ କଲେ, 'ସବୁ ମୁନି କଣ ଆସିଲେଣି ?' ମୁନିମାନେ ଉତ୍ତର ଦେଲେ, 'ହଁ, ସମସ୍ତେ ନିଜ ନିଜର ସଂଘ ସହିତ ଆସିଲେଣି ।' ଏହା ଶୁଣି ସେ ସ୍ଥିର କଲେ ଯେ, ଏଣିକି ଜିନଧର୍ମ ରକ୍ଷା ପାଇଁ ସଂଘ ବା ଗଣର ପ୍ରୟୋଜନୀୟତା ଅଛି ।' ତେଣୁ ସେ ଗୁହାରୁ ଆସିଥିବା ମୁନିମାନଙ୍କୁ 'ନନ୍ଦୀ' କେତେକଙ୍କୁ 'ବୀର', ଅଶୋକ ବାଟ (ଉଦ୍ୟାନ)ରୁ ଆଗତ କେତେକଙ୍କୁ 'ଦେବ' ଓ ଅପରମାନଙ୍କୁ 'ଅପରାଜିତ' ନାମ ଦେଲେ । ପଞ୍ଚସ୍ତୂପାରୁ ଆଗତ ମୁନିମାନଙ୍କୁ 'ସେନ' ଓ 'ଭଦ୍ର' ନାମ ଦେଲେ । ଶିମିଳୀଗଛ କୋରଡ଼ରୁ ଆସିଥିବା ମୁନିଙ୍କୁ 'ଗଣଧର' ଓ 'ଗୁପ୍ତ' ନାମ ଦେଲେ । ନାଗେଶ୍ୱର ବୃକ୍ଷମୂଳରୁ ଆସିଥିବା ମୁନିଙ୍କୁ 'ସିଂହ' ଓ 'ଭଦ୍ର' ନାମ ଦେଲେ ।

ଏମାନଙ୍କ ମଧ୍ୟରେ ଉତ୍କୃଷ୍ଟ ଓ ନିକୃଷ୍ଟ ବର୍ଣ୍ଣନା କରି ଜୈନ ହରିବଂଶ ମୁଖବନ୍ଧରେ ଇନ୍ଦ୍ରନନ୍ଦୀ କହିଛନ୍ତି, ନନ୍ଦୀ, ଦେବ, ସେନ, ଭଦ୍ର, ସିଂହ— ଏମାନେ ଉତ୍ତରୋତ୍ତର ନିକୃଷ୍ଟ ।

ମୟୂରଭଞ୍ଜ ଓ କେନ୍ଦୁଝର ପ୍ରଭୃତି ଭଞ୍ଜରାଜାମାନେ 'ଦେବ' ଗଣ ଥିବାରୁ ସେମାନେ ଅଶୋକବାଟରୁ ଆସିଥିବା ଜଣାଯାଏ । ସେମାନେ ଅନ୍ୟମାନଙ୍କଠାରୁ ବଡ ବୋଲି ଚିହ୍ନିତ କରିବା ପାଇଁ 'ବଡାମ' ଶବ୍ଦ ପ୍ରୟୋଗ କଲେ । 'ବଡାମ' ଶବ୍ଦ 'ପୁନ୍ନାଗ' ଗଣ, ଶ୍ରୀମୂଳମୂଳଗଣ ପ୍ରଭୃତି ବୃକ୍ଷବାଚକ ନାମ ପରି ହୋଇପାରେ ବୋଲି ପଣ୍ଡିତ ଆଗ୍ଧର୍ଯ୍ୟଙ୍କ ଅନୁମାନ ।

ଗଣଦଣ୍ଡ (ଗଣାନ୍ ଦଣ୍ଡୟତି) ଅର୍ଥ ଯେ ଗଣର ନିୟାମକ— ଜୈନ ତୀର୍ଥଙ୍କରମାନଙ୍କ ନିର୍ଦ୍ଦିଷ୍ଟ ମୁନି ସଂଘର ଅଧିନାୟକ । ପ୍ରତି ତୀର୍ଥଙ୍କରଙ୍କ ଗଣସଂଖ୍ୟା ଓ ଗଣସ୍ଥ ମୁନିସଂଖ୍ୟା ଭିନ୍ନ ଭିନ୍ନ । ୨୪ ତୀର୍ଥଙ୍କର ମହାବୀରଙ୍କ ଗଣସଂଖ୍ୟା ଏଗାର ଓ ଗଣାଧିପ ମଧ୍ୟ ଏଗାର (ହରିବଂଶ ୩ୟ ସର୍ଗ, ଶ୍ଳୋ-୪୫-୫୦) । ସେମାନଙ୍କ ମଧ୍ୟରେ ଇନ୍ଦ୍ରଭୂତି ପ୍ରଥମ ଓ ପ୍ରଧାନ । ଚଉଦ ହଜାର ମୁନି ବିଶିଷ୍ଟ ଗଣର ସେ 'ଗଣୀ' ବା 'ଗଣଦଣ୍ଡ' । ଆଉ ଜଣେ ଓଡ୍ଡିୟାନର ରାଜା ବଜ୍ରଯାନର ଉପଦେଷ୍ଟା ବୌଦ୍ଧ ଇନ୍ଦ୍ରଭୂତି । ତାରାନାଥଙ୍କ ମତରେ ତାଙ୍କ ରାଜ୍ୟରେ ପାଞ୍ଚଲକ୍ଷ ନଗର ଥିଲା । ମହାବୀରଙ୍କ ଗଣଧର ଇନ୍ଦ୍ରଭୂତି ଓ ତାରାନାଥ ବର୍ଣ୍ଣିତ ଇନ୍ଦ୍ରଭୂତିଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଗବେଷଣାସାପେକ୍ଷ ।

ଗଜପତିଙ୍କ ବିରୁଦରେ ଥିବା 'ନବକୋଟି' ଶବ୍ଦ ସଂଖ୍ୟାବାଚକ । ଏହି ରୀତି କର୍ଣ୍ଣାଟାଦି ଦକ୍ଷିଣ ଭାରତର ଅନ୍ୟ ରାଜବଂଶ ବିରୁଦରେ ଅନୁସୃତ ହେଉଥିଲା । ବଳିପୁତ୍ର ବାଣଠାରୁ ଜାତ ମହାବଳି ବଂଶୀୟ ରାଜାମାନେ ଗଙ୍ଗବଂଶର ପୂର୍ବବର୍ତ୍ତୀ । ସେମାନଙ୍କ ରାଜ୍ୟ ଆନ୍ଧ୍ରଦେଶର ପଶ୍ଚିମରେ ଥିଲା । ତାଙ୍କ ପ୍ରଦେଶକୁ 'ଅର୍ଦ୍ଧସପ୍ତ ଲକ୍ଷ' କୁହାଯାଉଥିଲେହେଁ ସେମାନେ ଆନ୍ଧ୍ର ମଣ୍ଡଳରେ 'ଦ୍ୱାଦଶ ସହସ୍ର ଗ୍ରାମ'ର ଅଧିପତି ହୋଇଥିଲେ । ଦାକ୍ଷିଣାତ୍ୟର

Digitized by srujanika@gmail.com

କୋଲମ୍ବ ବଂଶୀୟମାନେ ବତିଶସହସ୍ର ସଂଖ୍ୟା ବ୍ୟବହାର କରୁଥିଲେ । ଏମାନେ ଜୈନ ଥିଲେ ।

ଜୈନ ହରିବଂଶ ଅନୁସାରେ (୬୦ ସର୍ଗ) ୧୯ଶ ତୀର୍ଥଙ୍କର ମଲ୍ଲିନାଥଙ୍କର ୨୮ଟି ଗଣ ଥିଲେ । ଏହି ଗଣମାନଙ୍କର ଅଧିପତି ଥିଲେ ବିଶାଖ । ଜୈନଧର୍ମର ଲୋପ ସଙ୍ଗେ ସଙ୍ଗେ ଲୋକେ ବିଶାଖକୁ ଭୁଲିଯାଇଥିବା ସମ୍ଭବ । ମାତ୍ର ମୟୂରଭଞ୍ଜ ରାଜବଂଶ ସଙ୍ଗେ ତାଙ୍କ ନାମର ସମ୍ବନ୍ଧ ତୁଟି ନ ଥିବାରୁ ପରବର୍ତ୍ତୀ କାଳରେ ବ୍ରାହ୍ମଣ୍ୟଧର୍ମର ପ୍ରଭାବରୁ ଏହି ବିଶାଖ କାର୍ତ୍ତିକେୟ ରୂପେ ନିର୍ଦ୍ଦେଶିତ ହେଲେ ଓ କାର୍ତ୍ତିକଙ୍କ ବାହନ ମୟୂର ଏହି ରାଜବଂଶର ଧ୍ୱଜା-ଲାଂଛନ ରୂପେ ବ୍ୟବହୃତ ହେବା ସମ୍ଭବପର ।

ଆଦି ତୀର୍ଥଙ୍କର ଋଷଭଙ୍କର ଶିଷ୍ୟ ସଂଖ୍ୟା ଗଣଧର ସଂଖ୍ୟାର ହଜାର ଗୁଣ । ସେହି ରୀତିରେ ମଲ୍ଲିଙ୍କର ଅଠେଇଶହଜାର ।

ଘୁମୁସର ବିରୁଦରେ ଦୁଇଲକ୍ଷ ସଂଖ୍ୟା ଥିବାରୁ ଏହା ୫ମ ତୀର୍ଥଙ୍କର ସୁମତିନାଥଙ୍କ ଗଣସ୍ଥ ମୁନିମାନଙ୍କ ସଂଖ୍ୟା ଅନୁସାରେ ହୋଇଥିବା ସମ୍ଭବ ।

ବଣାଇ ବିରୁଦରେ ଚାଳିଶସହସ୍ର ସଂଖ୍ୟା ରହିଛି । ଏହା ୧୯ଶ ତୀର୍ଥଙ୍କର ମଲ୍ଲିନାଥଙ୍କ ଗଣସ୍ଥ ମୁନିସଂଖ୍ୟା ୪୦,୦୦୦ ଅନୁସାରେ ଗୃହୀତ ।

ଜୈନ ହରିବଂଶରେ ୯ମ ତୀର୍ଥଙ୍କର ସୁବିଧିନାଥ (ପୁଷ୍ପଦନ୍ତ)ଙ୍କର ଗଣଧାରୀଙ୍କ ସଂଖ୍ୟା ୮୮ ହଜାର ବର୍ଣ୍ଣିତ ।

## ରାମଦେବ ଓ ରାମଚନ୍ଦ୍ର ଦେବ—

ତାମ୍ର ଶାସନରେ ରାମଦେବ, ତାଳପତ୍ର ପୋଥିରେ ରାମଚନ୍ଦ୍ର ଦେବ । ହରିବଂଶ ପୁରାଣରେ କୃଷ୍ଣାଗ୍ରଜ ବଳଦେବ "ରାମ (ବଳ) ଦେବ" ଓ 'ରାମଭଦ୍ର' ନାମରେ ପରିଚିତ । ଏଥିରେ ବୀରଭଦ୍ର ଓ ରାମଭଦ୍ରର ସାମ୍ୟ ଲକ୍ଷ୍ୟ କରାଯାଉଅଛି ।

କେନ୍ଦୁଝର ଉଖୁଣ୍ଡା ତାମ୍ରଶାସନରେ ଅଛି,

"ଆସୀଦ୍ ମୟୂରାଣ୍ଡଂଭିତ୍ୱା ଗଣଦଣ୍ଡୋ ବୀରଭଦ୍ରାଖ୍ୟଃ
ପ୍ରତିପକ୍ଷ ନିଧାନ ଦକ୍ଷୋ ବଶିଷ୍ଠ ମୁନି ପାଳିତୋ ନୃପତିଃ ।"

**ଅର୍ଥ—** ମୟୂର ଡିମ୍ବ ଫଟାଇ ବୀରଭଦ୍ର ନାମରେ ଜଣେ ଗଣଦଣ୍ଡ (ଗଣଧର) ଜାତ ହୋଇଥିଲେ । ସେ ବଶିଷ୍ଠ ମୁନିକର୍ତ୍ତୃକ ପାଳିତ ହେଲେ । ବଡ଼ ହୋଇ ରାଜା ହେବାପରେ ବିପକ୍ଷମାନଙ୍କୁ ମାରିଲେ । ଏହି ବୀରଭଦ୍ର ହିଁ ଆଦିଭଞ୍ଜ । ମାତ୍ର କେଶରୀ ତାମ୍ର ଶାସନରେ କୋଟଭଞ୍ଜ ଆଦିଭଞ୍ଜ ରୂପେ ଚିହ୍ନିତ । ତେବେ ତାମ୍ର ଶାସନ ଓ ଜୈନ ହରିବଂଶରେ ବୀରଭଦ୍ରଙ୍କ ନାମ ମିଳିଯାଉଥିବାରୁ ବୀରଭଦ୍ରଙ୍କ ବଂଶଧର ଆଦିଭଞ୍ଜ (କୋଟଭଞ୍ଜ)ଙ୍କ ଶିଷ୍ୟ

Digitized by srujanika@gmail.com

ବଶିଷ୍ଠଙ୍କ ଦ୍ୱାରା ପ୍ରତିପାଳିତ କହିବାରେ ଅସଙ୍ଗତି ନାହିଁ । ସୁବିଧିନାଥଙ୍କ ମୁଖ୍ୟ ଗଣଧର ବିଦର୍ଭ । ବିଦର୍ଭ ଓ ବୀରଭଦ୍ରଙ୍କ ମଧ୍ୟରେ ଶ୍ରୁତିସାମ୍ୟ ଥିବାରୁ ଏ ଦୁହେଁ ପରସ୍ପର ସମ୍ବନ୍ଧଶୀଳ ବୋଲି ମନେହୁଏ ।

କୋଟ୍ୟାଶ୍ରମ— କୋଟିଶିଳା— ଏହି ବିସ୍ତୃତ ଶିଳା ଉପରେ ବହୁ କୋଟି ଋଷି ସିଦ୍ଧିଲାଭ କରିଥିବାରୁ ଏହାର ଏପରି ନାମ । ବୀରଭଦ୍ର ଏହିଠାରେ ମୟୂରାଣ୍ଡରୁ ଜନ୍ମି ୮୮ ହଜାର ମୁନିଙ୍କ ଦ୍ୱାରା ପାଳିତ ହୋଇଥିଲେ ।

ଭଞ୍ଜ ତାମ୍ରଶାସନମାନଙ୍କରେ ଶୀର୍ଷଭାଗରେ ଥିବା ମୁଦ୍ରା (Seal)ରେ ବାଳଚନ୍ଦ୍ର, ଉଦ୍‌ଗ୍ରୀବ ଶୟାନ ବୃଷ, ସୂର୍ଯ୍ୟ, ତ୍ରିଶୂଳ, ପଦ୍ମ ଓ ଉଦ୍‌ଗ୍ରୀବଶୟାନ ସିଂହ ମୂର୍ତ୍ତି ଅଙ୍କିତ । ବୃଷ, ଚନ୍ଦ୍ର, ପଦ୍ମ ଓ ସିଂହ ଯଥାକ୍ରମେ ଋଷଭ, ଚନ୍ଦ୍ରପ୍ରଭ, ପଦ୍ମପ୍ରଭ ଓ ମହାବୀରଙ୍କ ଲାଂଛନ । ଶୈବ ରାଜାଙ୍କ ଦାନପତ୍ରରେ ପଦ୍ମ ପରି ଅଶୈବ ଲାଂଛନ ଥିବାରୁ ଏହାର ଜୈନଧର୍ମ ସହ ସମ୍ବନ୍ଧ ଥିବା ଅନୁମିତ ହୁଏ ।

— ୦ —

Digitized by srujanika@gmail.com

# ରାଧାଚକ୍ର

ସାରଳା ଦାସଙ୍କ ମହାଭାରତ ବ୍ୟାସଦେବଙ୍କ କୃତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ । ସେ ବହୁସ୍ଥଳରେ ଆପଣାର କଳ୍ପନା ଓ ଅନ୍ୟ ପୁରାଣରୁ ବିଷୟମାନ ସଂଗ୍ରହକରି ସ୍ଥଳବିଶେଷରେ ସନ୍ନିବିଷ୍ଟ କରିଛନ୍ତି । ସାରଳା ଦାସଙ୍କ ବର୍ଣ୍ଣିତ ଦ୍ରୌପଦୀଙ୍କ ସ୍ୱୟମ୍ବରର ଲାଖବିନ୍ଧା ଏହିପରି ଏକ ଦୃଷ୍ଟାନ୍ତ । ଏ ପ୍ରସଙ୍ଗରେ ମୂଳ ମହାଭାରତର ବର୍ଣ୍ଣନା ହେଉଛି ।

''ସୋଽନ୍ୱେଷମାଣଃ କୌନ୍ତେୟଂ ପାଞ୍ଚଲ୍ୟୋ ଜନମେଜୟ,
ଦୃଢ଼ଂ ଧନୁରନାନମ୍ୟଂ କାରୟାସ ଭାରତ ।
ଯନ୍ତ୍ରଂ ବୈହାୟସଂ ଚ୍ୟପି କାରୟାମାସ କୃତ୍ରିମମ୍
ତେନ ଯନ୍ତ୍ରେଣ ସମିତଂ ରାଜା ଲକ୍ଷ୍ୟ ଚକାର ସଃ ।''

**ଅର୍ଥ—** ପଞ୍ଚାଳ ରାଜା ଦ୍ରୁପଦ ଅର୍ଜୁନଙ୍କ ସନ୍ଧାନ ପାଇବା ଉଦ୍ଦେଶ୍ୟରେ ନୁଆଁଇ ନ ହେବା ଭଳି ଗୋଟିଏ ଟାଣ ଧନୁ ତିଆରି କରାଇଲେ । ଆହୁରି ମଧ୍ୟ ଆକାଶରେ ଗୋଟିଏ କୃତ୍ରିମ ଯନ୍ତ୍ର ସ୍ଥାପନ କଲେ । ସେହି (ଚକ୍ରପରି ଭ୍ରମଣଶୀଳ) ଯନ୍ତ୍ରର ଛିଦ୍ରବାଟେ ଦେଖାଯିବାଭଳି ସ୍ଥାନରେ ଲକ୍ଷ୍ୟ ପଦାର୍ଥଟିକୁ ରଖିଲେ । ତତ୍ପରେ ଦ୍ରୁପଦ କହିଲେ, ''ଯିଏ ଏହି ଧନୁରେ ଗୁଣ ଚଢ଼ାଇ ଏହି ବାଣମାନଙ୍କ ଦ୍ୱାରା ଲକ୍ଷ୍ୟ ଫୁଟାଇ ପାରିବ, ସେ ମୋର କନ୍ୟାକୁ ପାଇବ ।''

ଏହି ସ୍ଥଳରେ ସାରଳା ଦାସଙ୍କ ବର୍ଣ୍ଣନା ହେଉଛି—

''ରାଧାଚକ୍ର ବୁଲଇ ଯେ ସହସ୍ରେକ ଧାର
କନକ ମତ୍ସ୍ୟ ଅଛଇ ତହିଁର ଉପର ।
କୁରାଳଚକ୍ର ପ୍ରାଏ ବୁଲଇ ଅନୁବ୍ରତେ
ତଳେ ଧନୁଏ ବାଛି ଲକ୍ଷବଳ ଯୁକତେ ।
ଲକ୍ଷେ ବଳ ଧନୁ ଧରି ସେ ପଟାରେ ଉଠି
ତହିଁ ତଳେ ଅଛି ତୀର୍ଥଜଳ ଘଟ ଗୋଟି ।
ତହିଁ ଦୃଷ୍ଟି ଦେଇ ଉପରକୁ କରି ମୁଷ୍ଟି
ଚକ୍ରଭେଦି ମତ୍ସ୍ୟ ବାମଚକ୍ଷୁ ଯିବ ଫୁଟି ।
ଏହେନେକ ସ୍ୱରୂପେ ଯେହୁ ଲାଖ ବିନ୍ଧିବ
ଏ ମୋହର ଦୁହିତା ଦ୍ରୌପଦୀକୁ ବିଭା ହେବ ।''

Digitized by srujanika@gmail.com

ମୂଳ ମହାଭାରତ ଓ ସାରଳା ମହାଭାରତର ବର୍ଣ୍ଣନା ପାଠ କଲେ ଜଣାଯାଏ ଯେ ବ୍ୟାସ ଯାହା ସୂତ୍ରାକାରରେ ଲେଖିଥିଲେ, ଟୀକାକାର ନୀଳକଣ୍ଠ ତାକୁ ବିସ୍ତୃତ କରି ଲେଖିଛନ୍ତି । ପୁଣି ସାରଳା ତାକୁ ଆହୁରି ବିଶଦ ଓ ବିସ୍ତାରିତ କରି ଲେଖିଛନ୍ତି । ଏ ପ୍ରସଙ୍ଗରେ ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବର ଯଥେଷ୍ଟ ଅନୁସନ୍ଧାନ କରିଛନ୍ତି । କିନ୍ତୁ 'ରାଧାଚକ୍ର' ଶବ୍ଦର ପ୍ରୟୋଗ ମୂଳ ମହାଭାରତ କିମ୍ବା ନୀଳକଣ୍ଠଙ୍କ ଟୀକାରେ ପାଇନାହାନ୍ତି । ନୀଳକଣ୍ଠ 'ଯନ୍ତ୍ର' ଶବ୍ଦର ଅର୍ଥ ଦେଇଛନ୍ତି,

''ବୈହାୟସଂ ଅନ୍ତରୀକ୍ଷଗତଂ ଯନ୍ତ୍ରଂ,
ତୀବ୍ର ବେଗବତ୍ୟାଭ୍ରମଣେନ
ଲକ୍ଷ୍ୟମାର୍ଗ ସଂକୋଚ କମନ୍ତରାବିଦ୍ଧମ୍ ।''

ଏଥିରେ ମଧ୍ୟ ତୀବ୍ର ବେଗରେ ବୁଲୁଥିବା କଥା ରହିଥିଲେ ହେଁ 'ରାଧା' ଶବ୍ଦ ବା ''ଚକ୍ର' ଶବ୍ଦର ଉଲ୍ଲେଖ ନାହିଁ । ତେଣୁ ପଣ୍ଡିତ ଆଚାର୍ଯ୍ୟ ଅନୁମାନ କରନ୍ତି କି ସାରଳା ପ୍ରୟୋଗ କରିଥିବା 'ରାଧା' ଶବ୍ଦ ସେହି ସମୟରେ ଲୋକମୁଖରେ ପ୍ରଚଳିତ କିମ୍ବଦନ୍ତୀ କିମ୍ବା ଅନ୍ୟ କୌଣସି ପୁରାଣରୁ ଗ୍ରହଣ କରିଥିବା ସମ୍ଭବ । ଲୋକମୁଖରେ ପ୍ରଚାରିତ କିମ୍ବଦନ୍ତୀ ମଧ୍ୟ କୌଣସି ସଂସ୍କୃତ ପୁରାଣରୁ ଗୃହୀତ ହୋଇଥାଇପାରେ । ଏହାର କାରଣ ପଣ୍ଡିତ ଆଚାର୍ଯ୍ୟ 'ହୈମକୋଷ'ରେ 'ରାଧା' ଶବ୍ଦ 'ଲକ୍ଷ୍ୟ ବିଶେଷ' ବୋଲି ଲେଖାଯାଇଛି ।

x x ରାଧା ବିଦ୍ୟୁଦ୍ ବିଶାଖୟୋଃ
ବିଷ୍ଣୁକ୍ରାନ୍ତାମଳକ୍ୟୋଶ୍ଚ ଗୋପୀ ବେଧ୍ୟ ବିଶେଷୟୋଃ । ଇତିହୈମଃ ।

ପଣ୍ଡିତ ଆଚାର୍ଯ୍ୟ ଅଷ୍ଟମ ଶତାବ୍ଦୀରେ କର୍ଣ୍ଣାଟ ଦେଶରେ ରଚିତ ଜୈନ ହରିବଂଶରେ ବର୍ଣ୍ଣିତ ଦ୍ରୌପଦୀ ସ୍ୱୟମ୍ବରର ତୁଳନାତ୍ମକ ବର୍ଣ୍ଣନା ଦର୍ଶାଇଛନ୍ତି । ତହିଁରେ ଲେଖାଅଛି—

''ଚଣ୍ଡ ଗାଣ୍ଡୀବକୋଦଣ୍ଡ ମଣ୍ଡଳୀକରଣ କ୍ଷମଃ,
ରାଧାବେଧ ସମର୍ଥୋ ଯୋ ଦ୍ରୌପଦ୍ୟାଃ ସ ଭବେଦ୍ ପତିଃ ।

ଅର୍ଥାତ୍— ଏହି ଦୃଢ ଧନୁରେ ଗୁଣ ଚଢ଼ାଇ ଯେ ରାଧାବେଧ ବା ଲକ୍ଷ୍ୟଭେଦ କରିପାରିବ, ସେ ଦ୍ରୌପଦୀକୁ ବିଭା ହେବ ।

ଆହୁରି ମଧ୍ୟ— ''ଦାକ୍ଷିଣ୍ୟଭଙ୍ଗ ଭୀତେନ ଦ୍ରୁପଦେନ ତତୋନୃପାଃ
ବିଶ୍ୱେ ଚନ୍ଦ୍ରକ ବେଧାର୍ଥ ମାହୂତାଃ କନ୍ୟକାର୍ଥିନଃ ।''

ଅର୍ଥାତ୍— ଦ୍ରୁପଦ ରାଜା ନିଜର ପକ୍ଷପାତିତା ପରିହାର ଉଦ୍ଦେଶ୍ୟରେ 'ଚନ୍ଦ୍ରକବେଧ' ବା 'ଚାନ୍ଦମାରି' ପାଇଁ କନ୍ୟା ପ୍ରାର୍ଥୀ ସମସ୍ତ ରାଜାଙ୍କୁ ଡକାଇଲେ । ଏଥିରୁ ଜଣାଯାଉଛି ଯେ ଯେଉଁ ଚନ୍ଦ୍ରାକାର ବସ୍ତୁକୁ ବିଦ୍ଧ କରିବାର କଥା, ତାହାହିଁ ''ରାଧା'' ଶବ୍ଦ ଦ୍ୱାରା ଉକ୍ତ । ମାତ୍ର

Digitized by srujanika@gmail.com

ସାରଳା ଦାସ ବ୍ୟାସୋକ୍ତ ଯନ୍ତ୍ରକୁ 'ରାଧାଚକ୍ର' ନାମରେ ଅଭିହିତ କରିଅଛନ୍ତି । ବ୍ୟାସ 'ଯନ୍ତ୍ର' ଓ 'ଲକ୍ଷ୍ୟ' ପୃଥକ୍‌ରୂପେ ପ୍ରୟୋଗ କରିଅଛନ୍ତି । ଜୈନ ହରିବଂଶ ବର୍ଣ୍ଣନାରେ ଆକାଶରେ କୌଣସି 'ଯନ୍ତ୍ର' ବା ସ୍ୱୟଂଚଳ ଚକ୍ରର ଅବସ୍ଥିତି ଥିବା ଦୃଷ୍ଟ ହୁଏ ନାହିଁ । ପରନ୍ତୁ, ଲାଖ ବିନ୍ଧିବା ଲୋକ ଯନ୍ତ୍ର ଉପରେ ଠିଆ ହୋଇ ଲାଖ ବିନ୍ଧିବାର ବ୍ୟବସ୍ଥା ଥିଲା ବୋଲି ସେଥିରେ ଉକ୍ତ ହୋଇଛି । ଯଥା—

"ଭ୍ରମଚକ୍ରସମାରୂଢୋ ବାଣଂ ସଂଧୃତ୍ୟ ଦକ୍ଷିଣଃ
ଲକ୍ଷ୍ୟଂ ଚନ୍ଦ୍ରକବେଧାଖ୍ୟଂ ବିବ୍ୟାଧ ନୃପସନ୍ନିଧୌ ।"

ଅର୍ଥାତ୍— ଅର୍ଜୁନ ବୁଲୁଥିବା ଚକ୍ର ଉପରେ ଚଢ଼ି ଶରଧରି 'ଚନ୍ଦ୍ରକବେଧ' ନାମକ ଲାଖକୁ ବିନ୍ଧିଲେ ।

ବ୍ୟାସଙ୍କ ମହାଭାରତ ଓ ଜୈନ ହରିବଂଶ ଉଭୟର ସମ୍ମିଶ୍ରଣ ଘଟିଛି ସାରଳା ଦାସଙ୍କ ବର୍ଣ୍ଣନାରେ ।

"ରାଧାଚକ୍ର ବୁଲୁଅଛି ସାତତାଳ ଉଚ୍ଚେ
ତାଳେ ଉଚ୍ଚରେ ପଟାଏ ଅଛି ଯେ ସୁସଞ୍ଚେ
ଲକ୍ଷେବଳ ଧନୁ ଧରି ସେ ପଟାରେ ଉଠି ।"

ଚକ୍ର ଉହାଡ଼ରେ ଉପରିଭାଗରେ ଥିବା ଲାଖକୁ ତଳେ ପଟା ଉପରେ ଠିଆହୋଇ ଅର୍ଜୁନ ଲାଖ ବିନ୍ଧିଲେ । ସାରଳାଙ୍କ ପଟା ଜୈନ ହରିବଂଶର ଭ୍ରମଚକ୍ର । ସାରଳା ଦାସ "ରାଧା" ଶବ୍ଦଟିକୁ ଜୈନ ହରିବଂଶୀୟ ଆଖ୍ୟାନ ଭାଗରୁ ପ୍ରଚଳିତ କିମ୍ବଦନ୍ତୀରୁ ଶୁଣି ଗ୍ରହଣ କରିଛନ୍ତି । ନିଜେ ଅଭିଧାନ ପଢ଼ି ପ୍ରୟୋଗ କରିଥିଲେ 'ଚକ୍ର' ଶବ୍ଦ 'ରାଧା' ଶବ୍ଦର ପୂର୍ବରେ ନ ବସାଇ 'ଲକ୍ଷ୍ୟ' ଅର୍ଥରେ ପ୍ରୟୋଗ କରିଥାନ୍ତେ । କିମ୍ବଦନ୍ତୀ ଉପରେ ଆସ୍ଥା ରଖି ରଚନାରେ ପ୍ରବୃତ୍ତ ହୋଇଥିବାରୁ ଏପରି ଭ୍ରମ ଘଟିଛି । ପୂର୍ବେ ଆମ ଦେଶରେ ଜୈନପୁରାଣର ଆଖ୍ୟାନମାନ କଥିତ ତଥା ଶ୍ରୁତ ହେଉଥିଲା । ଏଣୁ ପୁରାଣ ସାହିତ୍ୟର ଆଲୋଚନାବେଳେ ଜୈନ ହରିବଂଶ ପୁରାଣର ଆଲୋଚନା ଅପରିହାର୍ଯ୍ୟ ।

— ୦ —

Digitized by srujanika@gmail.com

# ଭରତମୁନିପ୍ରଣୀତମ୍ ନାଟ୍ୟଶାସ୍ତ୍ରମ୍

ଭରତମୁନିଙ୍କ ପ୍ରଣୀତ ନାଟ୍ୟଶାସ୍ତ୍ର ସଂସ୍କୃତ ଭାଷାରେ ରଚିତ ଭାରତର ଏକ ପ୍ରସିଦ୍ଧ ଗ୍ରନ୍ଥ । ସଂଗୀତ ଓ ନାଟକ ସଂପର୍କରେ ଏହା ଏକ ତଥ୍ୟର ସାଗର । ସଙ୍ଗୀତ ଶାସ୍ତ୍ରର ବୈଜ୍ଞାନିକ ପଦ୍ଧତିରେ ଚର୍ଚ୍ଚା ନିମନ୍ତେ ଏ ଗ୍ରନ୍ଥ ଅତୀବ ଉପାଦେୟ । ପଣ୍ଡିତ ଆର୍ଯ୍ୟ ଓଡ଼ିଆ ଭାଷାରେ ଏହାର ଅନୁବାଦ କରିବା ଦ୍ୱାରା ସଂସ୍କୃତ ଅନଭିଜ୍ଞ ଜନସାଧାରଣ, ସଙ୍ଗୀତ ଶିକ୍ଷକ ତଥା ବିଦ୍ୟାର୍ଥୀଗଣ ଭରତମୁନିଙ୍କ ମୌଳିକ ଗ୍ରନ୍ଥର ରସ ଆସ୍ୱାଦନ କରିବା ସହିତ ଓଡ଼ିଆରେ ଭାରତୀୟ ନାଟ୍ୟଶାସ୍ତ୍ରର ପ୍ରାମାଣିକ ତଥ୍ୟ ପାଇବାରେ ସମର୍ଥ ହେଲେ । ୩୬ ଅଧ୍ୟାୟ ବିଶିଷ୍ଟ ଏହି ଗ୍ରନ୍ଥକୁ ତିନୋଟି ଭାଗରେ ପ୍ରକାଶ କରିବା କଳ୍ପନା କରି ପ୍ରଥମ ଖଣ୍ଡଟି ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୬୪ ମସିହାରେ ପ୍ରକାଶ କରିଛନ୍ତି ।

ପ୍ରଥମ ଅଧ୍ୟାୟରେ ନାଟ୍ୟଶାସ୍ତ୍ରର ଉତ୍ପତ୍ତି ବିଷୟ ଉଲ୍ଲିଖିତ । ଏହାର ସଂକ୍ଷିପ୍ତ ଆଲୋଚନା ପ୍ରସଙ୍ଗରେ ପଣ୍ଡିତ ମହାଶୟ ଉଲ୍ଲେଖ କରିଛନ୍ତି, "ପ୍ରଥମେ ହାସ୍ୟ, ଅଦ୍ଭୁତ ଓ ବୀର ରସାଶ୍ରିତ ଭାବନାଟ୍ୟର ପ୍ରୟୋଗ ହେଉଥିଲା । କେବଳ ପୁରୁଷମାନେ ନାଟ୍ୟରେ ଭୂମିକା ଗ୍ରହଣ କରୁଥିଲେ । ପରେ ବ୍ରହ୍ମାଙ୍କ ଅନୁରୋଧରେ ନୃତ୍ୟ, ଗୀତ, ବାଦ୍ୟର ପ୍ରଚୁର ପ୍ରୟୋଗ ଓ ସ୍ତ୍ରୀମାନଙ୍କର ଭୂମିକା ଗ୍ରହଣ ପ୍ରବର୍ତ୍ତିତ ହେଲା । ମୁକ୍ତ ଆକାଶ ତଳେ ନାଟ୍ୟ ହେଉଥିଲା । ପରେ ରଙ୍ଗ-ମଣ୍ଡପ ନିର୍ମିତ ହେଲା ।

ନାଟ୍ୟର କଥାବସ୍ତୁ ଥିଲା— ଦେବତାମାନଙ୍କ ଦୈତ୍ୟମାନଙ୍କୁ ଆକ୍ରମଣ, ପରାଜିତ ଦୈତ୍ୟମାନଙ୍କର ପଳାୟନ, ଦୈତ୍ୟମାନଙ୍କ ଯୋଗୁଁ ଘଟିଥିବା ବିଘ୍ନମାନଙ୍କୁ ଇନ୍ଦ୍ରଙ୍କ ବଳପ୍ରୟୋଗରେ ବିଘ୍ନବିନାଶ । ସେହିଦିନଠାରୁ ମୁକ୍ତ ଆକାଶ ତଳେ ନାଟ୍ୟ ପ୍ରଦର୍ଶନ ବନ୍ଦ ଓ ବ୍ରହ୍ମାଙ୍କ ଆଦେଶରେ ବିଶ୍ୱକର୍ମାଙ୍କ ଦ୍ୱାରା ରଙ୍ଗ ମନ୍ଦିର ନିର୍ମାଣ ଏବଂ ତାର ସୁରକ୍ଷାର ବନ୍ଦୋବସ୍ତ ।

ବିଘ୍ନ ଦୂର ହେବାରୁ ଅବାଞ୍ଛିତ ବିଘ୍ନକାରୀମାନେ ଦୂରରେ ରହିଲେ । ମାତ୍ର ସର୍ବଲୋକଙ୍କ ପ୍ରୀତି ଉଦ୍ଦେଶ୍ୟରେ ରଚିତ ନାଟକ ସ୍ୱ-ଉଦ୍ଦେଶ୍ୟଠାରୁ ବହୁତ ଦୂରରେ ରହିଲା । ଦୈତ୍ୟଦାନବଗଣ ନାଟକ ଦର୍ଶନରୁ ବଞ୍ଚିତ ହେଲେ । ଗୋଟିଏ ସଂପ୍ରଦାୟର ବିରୋଧ ଫଳରେ ନାଟ୍ୟର ଅଗ୍ରଗତି ଅସମ୍ଭବ ମନେହେଲା । ଦେବତାମାନଙ୍କ ଅନୁରୋଧରେ ବ୍ରହ୍ମା ଦୈତ୍ୟମାନଙ୍କୁ ସାନ୍ତ୍ୱନା ପ୍ରଦାନ କରି ଦାନବମାନଙ୍କ ରୋଷ ଦୂର କଲେ । ସେମାନେ ରଙ୍ଗ ଦର୍ଶନ ପାଇଁ ଆସିବାରୁ ଆଖ୍ୟାନ ବସ୍ତୁରେ ପରିବର୍ତ୍ତନ ଘଟାଇ 'ଅମୃତ ମନ୍ଥନ' ଅଭିନୟ

Digitized by srujanika@gmail.com

କଲେ । ଏଥିରେ ଦେବତା ଓ ଦାନବଙ୍କର ସମାନ ଉତ୍ସାହରେ ଏକ ଲକ୍ଷ୍ୟରେ କର୍ମ ପ୍ରବୃତ୍ତ ହେବା ଅଭିନୀତ ହେଲା । ପୂର୍ବଥର ଭଳି ଦେବତାଙ୍କର ସାଟୋପ ଆକ୍ରମଣ ଓ ଦୈତ୍ୟାଦିଙ୍କର ଅସ୍ତବ୍ୟସ୍ତଭାବେ ପଳାୟନ— ଅଭିନୟର କଥାବସ୍ତୁ ଆଉ ରହିଲା ନାହିଁ ।

ତ୍ରିଲୋକବାସୀଙ୍କ ଗୁଣପ୍ରାପ୍ତି କାମନାରେ ନାଟ୍ୟବେଦ ରଚିତ ହେବା କଥା ବ୍ରହ୍ମା କହିଛନ୍ତି । ଏଥିରେ ଧର୍ମ, ଅର୍ଥ, ଶ୍ରମ, ହାସ୍ୟ, ବଧ, ଯୁଦ୍ଧ ପ୍ରଭୃତି ବର୍ଣ୍ଣିତ ହେବା ବିଧି । ଧାର୍ମିକର ଧର୍ମଭାବ, କାମୀର କାମୀଭାବ, ଅର୍ଥୋପଜୀବୀର ଅର୍ଥ, ଦୁର୍ବିନୀତର ବିଗ୍ରହ, ବିନୀତର ସଂଯମ, ଅଭିମାନୀର ଉତ୍ସାହ ପ୍ରଭୃତି ବର୍ଣ୍ଣିତ ।

ଦ୍ୱିତୀୟ ଅଧ୍ୟାୟରେ ବିଶ୍ୱକର୍ମାଙ୍କ ଦ୍ୱାରା ପୃଥିବୀରେ ନାଟ୍ୟମଣ୍ଡପ ନିର୍ମାଣ ବିଷୟରେ କୁହାଯାଇଛି । ଶାସ୍ତ୍ରାନୁସାରେ ଏହା ବିକୃଷ୍ଟ, ଚତୁରସ୍ର ଓ ତ୍ର୍ୟସ୍ର— ଏହି ତିନିପ୍ରକାର ପରିକଳ୍ପିତ । ଏହାକୁ ଜ୍ୟେଷ୍ଠ (ଉତ୍ତମ), ମଧ୍ୟମ ଓ ଅବର (ଅଧମ) ନାମରେ ଅଭିହିତ କରାଯାଏ । ଜ୍ୟେଷ୍ଠ ୧୦୮ ହାତ, ମଧ୍ୟମ ୬୪ ଓ ଅଧମ ୩୨ ହାତ ଅଟେ । ଦେବତାମାନଙ୍କ ଗୃହ ଜ୍ୟେଷ୍ଠ, ରାଜାମାନଙ୍କର ମଧ୍ୟମ ଓ ସାଧାରଣ ପ୍ରକୃତିମାନଙ୍କର ଗୃହ କନିଷ୍ଠ ଶ୍ରେଣୀର । ସେତେବେଳର ମାପର ମାନ ପରିମାଣ ସଂପର୍କରେ କୁହାଯାଇଛି, ଆଠଅଣୁରେ ଏକ ରଜ, ଆଠ ରଜରେ ଏକ ବାଳ, ଆଠ ବାଳରେ ଏକ ଲିକ୍ଷା, ଆଠ ଲିକ୍ଷାରେ ଏକ ଯୂକା, ଆଠ ଯୂକାରେ ଏକ ଯବ, ଆଠ ଯବରେ ଏକ ଅଙ୍ଗୁଳ ଓ ୨୪ ଅଙ୍ଗୁଳରେ ଏକ ହସ୍ତ, ଚାରି ହସ୍ତରେ ଏକ ଦଣ୍ଡ । ଯେଉଁଠାରେ ଭୂମି ସମତଳ, ଦୃଢ଼ କୃଷ୍ଣବର୍ଣ୍ଣ ବା ଶୁକ୍ଳବର୍ଣ୍ଣ, ସେଠାରେ ନାଟ୍ୟମଣ୍ଡପ କରାଯିବ । ଭୂମି ଶୋଧନ କରି ଲଙ୍ଗଳରେ ଚଷି ସେଠାରେ ଥିବା ହାଡ, ଖୁଣ୍ଟ, ଖପରା, ଘାସ ବୁଦା ପ୍ରଭୃତିକୁ କାଢ଼ିଦେବ । ଉତ୍ତରଭାଦ୍ର, ସୌମ୍ୟ, ବିଶାଖା, ରେବତୀ, ହସ୍ତା, ପୁଷ୍ୟା, ଅନୁରାଧା, ନକ୍ଷତ୍ରଗୁଡ଼ିକ ନାଟ୍ୟକର୍ମ ପାଇଁ ଶୁଭ । ପୁଷ୍ୟା ନକ୍ଷତ୍ରରେ ସୂତାଧରା କରାଯିବା ଉଚିତ । କପା, ପଳାସି, ମୁଞ୍ଜିଘାସ ବା ବଲ୍କଳ ଦ୍ୱାରା ସୂତ୍ର ନିର୍ମିତ ହେବ ।

ଶୁଭ ତିଥି, ଶୁଭ ନକ୍ଷତ୍ର ଓ ଶୁଭକରଣରେ ସ୍ତମ୍ଭମାନ ରୋହିଣୀ ଓ ଶ୍ରବଣା ନକ୍ଷତ୍ରରେ ସ୍ଥାପନ କରିବ । ସ୍ତମ୍ଭମୂଳରେ ସୁନା ପକାଇବ । ସ୍ତମ୍ଭଦ୍ୱାର, ଭିତ୍ତି ଓ ନେପଥ୍ୟ ଗୃହକୁ ଯଥାବିଧି କର୍ମକରି ଉତ୍ଥାପିତ କରିବ । ରଙ୍ଗପୀଠ ପାର୍ଶ୍ୱଭାଗରେ ମତ୍ତବାରଣୀ(ବାଡଥାଇ ବାରଣ୍ଡା) ନିର୍ମାଣ କରିବ । ତତ୍‌ପରେ ରଙ୍ଗପୀଠ ଓ ରଙ୍ଗଶୀର୍ଷ ନିର୍ମାଣ କରିବ । ଦର୍ପଣ ତଳପରି ସମତଳ ହୋଇଥିବା ରଙ୍ଗଶୀର୍ଷ ପ୍ରଶସ୍ତ ।

ଚତୁରସ୍ର ନାଟ୍ୟମଣ୍ଡପର ଦୈର୍ଘ୍ୟ ଓ ପ୍ରସ୍ଥ ୩୨ ହାତ ଲେଖାଏଁ କରାଯିବ । ରଙ୍ଗପୀଠକୁ ଆସିବା ପାଇଁ ଗୋଟିଏ ଦ୍ୱାର ରହିବ ।

Digitized by srujanika@gmail.com

ତିନିବାହୁ ଓ ତିନିକୋଣ ବିଶିଷ୍ଟ ମଣ୍ଡପ ତ୍ରସ୍ର (ତିନିକୋଣିଆ) । ମଧ୍ୟଦେଶରେ ରଙ୍ଗପୀଠ । ଗୋଟିଏ କୋଣରେ ପ୍ରବେଶ ଦ୍ୱାର । ରଙ୍ଗପୀଠ ପଛପଟେ ଆଉ ଗୋଟିଏ ଦ୍ୱାର ।

ତୃତୀୟ ଅଧ୍ୟାୟରେ ଶୁଭନାଟ୍ୟଗୃହ ନିର୍ମାଣ ପରବର୍ତ୍ତୀ କାର୍ଯ୍ୟ ବିଷୟରେ କୁହାଯାଇଛି । ତହିଁରେ ସାତଦିନ ପର୍ଯ୍ୟନ୍ତ ଗୋରୁ ବାନ୍ଧିବ ଓ ଜପ କରିବା ପାଇଁ ବ୍ରାହ୍ମଣ ନିଯୁକ୍ତ କରିବ । ସକଳ ଦେବଦେବୀ, ସେମାନଙ୍କ ଆୟୁଧ ଆଦି ଆବାହନ କରାଇ ପୂଜା କରିବ ।

ରାଜା ଓ ନର୍ତ୍ତକୀଙ୍କୁ ବନ୍ଦାପନା କଲାପରେ ଅଭିମନ୍ତ୍ରିତ ଜଳ ସେମାନଙ୍କ ଉପରେ ଛିଞ୍ଚିବ ଏବଂ କହିବ— ଆପଣମାନେ ଉଚ୍ଚକୁଳରେ ଜାତ ଏବଂ ଗୁଣାବଳୀ ମଣ୍ଡିତ । ରାଜାଙ୍କ ଉନ୍ନତି ଉଦ୍ଦେଶ୍ୟରେ ଏବଂ ନାଟ୍ୟପ୍ରୟୋଗର ପ୍ରଶଂସା ନିମିତ୍ତ ଆଶୀର୍ବଚନ ପ୍ରୟୋଗ କରିବ । ସରସ୍ୱତୀ, ଧୃତି, ମେଧା, ହ୍ରୀ, ଶ୍ରୀ, ଲକ୍ଷ୍ମୀ, ମତି ଓ ସ୍ମୃତି— ମାତୃଗଣ ଆପଣମାନଙ୍କୁ ରକ୍ଷା କରନ୍ତୁ । ଏହିପରି ରଙ୍ଗଦେବତା ପୂଜନ ବିଧି ।

ଚତୁର୍ଥ ଅଧ୍ୟାୟରେ ତାଣ୍ଡବଲକ୍ଷଣ ବର୍ଣ୍ଣିତ । ବିଧିପୂର୍ବକ ପୂଜା ସମାପ୍ତ ହେବାପରେ ବ୍ରହ୍ମା 'ଅମୃତମନ୍ଥନ' ନାଟକ ପ୍ରଦର୍ଶନ ପାଇଁ ଆଦେଶ ଦେଲେ । ଏହା ଅଭିନୀତ ହେବାପରେ ବ୍ରହ୍ମା ଶିବଙ୍କୁ ଅଭିନୟ ଦେଖାଇବା ପାଇଁ କହିଲେ । ତତ୍‌ପରେ ମହାଦେବ ତଣ୍ଡୁଙ୍କୁ ଡାକି ଭରତଙ୍କୁ ଅଙ୍ଗହାର ସମ୍ବନ୍ଧେ ଉପଦେଶ ଦେବାକୁ କହିଲେ । ନୃତ୍ୟରେ ହସ୍ତ, ପାଦ, କଟି, ପାର୍ଶ୍ୱ, ଉରୁ, ପିଠି, ଉଦର ପ୍ରଭୃତିର ଚ୍ଚଳନା ସଂପର୍କରେ ବୁଝାଇଲେ । ଚ୍ଚରୀ (ଗତି), ଠିଆ ହେବାର ଭଙ୍ଗୀ ଏବଂ ନୃତ୍ୟକାଳୀନ ହସ୍ତଚ୍ଚଳନ (ମାତୃକା) ଆଦି ଏକତ୍ର କରି 'କରଣ' କରିବାକୁ ହେବ । କର୍ଣ୍ଣ, କରଦ୍ୱୟ, କହୁଣି, ମସ୍ତକ— ଏଗୁଡ଼ିକ ସମାନଭାବେ ଅବସ୍ଥିତ ଥିଲେ ଏବଂ ମୁଖ ସମୁନ୍ନତ ହେଲେ ତାହା 'ସୌଷ୍ଠବ' । ତାଣ୍ଡବ ନୃତ୍ୟର ପ୍ରୟୋଗ ବିଷୟରେ ନିୟମମାନ ବୁଝାଇଛନ୍ତି ।

ପଞ୍ଚମ ଅଧ୍ୟାୟରେ ରଙ୍ଗବିଧାନ ସଂପର୍କରେ ବର୍ଣ୍ଣନା କରାଯାଇଛି । ନାଟକରେ ପ୍ରଥମ ପ୍ରୟୋଗ ଅଭିନୟକୁ ପୂର୍ବରଙ୍ଗ କୁହାଯାଏ ।

ବାଦ୍ୟଗୁଡ଼ିକୁ ଯଥାସ୍ଥାନରେ ରଖିବାର ନାମ ପ୍ରତ୍ୟାହାର, ଗାୟକମାନଙ୍କୁ ଯଥାସ୍ଥାନରେ ବସାଇବା ହେଉଛି ଅବତରଣ । ସମବେତ (ବୃନ୍ଦ) ଗାନ ଆରମ୍ଭକୁ କହନ୍ତି ଆରମ୍ଭ । ମୃଦଙ୍ଗ ଆଦି ବାଦ୍ୟଯନ୍ତ୍ରର ପରୀକ୍ଷା ବା ସ୍ୱରବାନ୍ଧିବା ହେଉଛି ଆଶ୍ରାବଣା । ବାଦକମାନଙ୍କ ହସ୍ତମିଳନ ବକ୍ତ୍ରପାଣି, ବୀଣାଦି ତାରଯନ୍ତ୍ରର ତାରକୁ କମ୍ପିତ କରିବା ହେଉଛି ପରିଘଟନା । ପାଣିର ବିଭାଗ ସଂଘୋଟନା । ତନ୍ତ୍ରୀ (ବୀଣାଦି ଯନ୍ତ୍ର) ଭାଣ୍ଡ (ମୃଦଙ୍ଗ, ପଖାଉଜ) ପ୍ରଭୃତି ଏକକାଳୀନ ବାଦନ ମାର୍ଗାସାରିତ । ଦେବ, ଦ୍ୱିଜ ଓ ରାଜା ପ୍ରଭୃତିଙ୍କ ଆଶୀର୍ବାଦଯୁକ୍ତ ହୋଇ ପ୍ରବୃତ୍ତ ହେବା ବିଧିକୁ ନାନ୍ଦୀ କହନ୍ତି । ବାଚିକ ଓ ଆଙ୍ଗିକ ଅଭିନୟକୁ ରଙ୍ଗଦ୍ୱାର କୁହାଯାଏ । ବିଦୂଷକ, ସୂତ୍ରଧାର ଓ ପାରିପାର୍ଶ୍ୱିକଙ୍କ ମିଳିତ ଭାବେ ଆଳାପକୁ ତ୍ରିକ ବା ତ୍ରିଗତ କୁହାଯାଏ ।

Digitized by srujanika@gmail.com

ଜଗତରେ ଥିବା ସବୁପ୍ରକାର ବିଦ୍ୟା, ଶିକ୍ଷ, ଗତି (ପାଦସ୍ଖଳନ ରୀତି), ଚେଷ୍ଟା (ଅନ୍ୟାନ୍ୟ ଅଙ୍ଗ ସ୍ଖଳନ) ନାଟକରେ ରହିଛି ।

ଚତୁରସ୍ରା ଧ୍ରୁବା ଦ୍ରୁତ ଲୟରେ ଗ୍ଧରିଗୋଟି ସନ୍ନିପାତ ସହ ଆଠକଳା ପ୍ରମାଣରେ ଗାନ କରାଯିବ । ଏହାର ପ୍ରତି ପାଦ ଏଗାର ଅକ୍ଷର ଏବଂ ପ୍ରତିପାଦର ଆଦ୍ୟ, ଚତୁର୍ଥ, ଅନ୍ତ୍ୟ, ସପ୍ତମ, ଦଶମ ଗୁରୁଅକ୍ଷର ହୁଏ ଏବଂ ଅନ୍ୟ ଅକ୍ଷରଗୁଡ଼ିକ ଲଘୁ ହୁଏ ।

ଯଥା— ପାଦ-ତଳା-ହତି-ପାତିତ-ଶୈଳଂ
କ୍ଷୋଭିତ-ଭୂତ-ସମଗ୍ର ସମୁଦ୍ରମ୍ ।
ତାଣ୍ଡବ ନୃତମିଦଂ ପ୍ରଳୟାନ୍ତେ
ପାତୁ ହରସ୍ୟ ସଦା ସୁଖଦାୟୀ ।

ଏଥିରେ ଆଦ୍ୟ ଅକ୍ଷର 'ପା' ଗୁରୁ, ଚତୁର୍ଥ ଅକ୍ଷର 'ଳା' ଗୁରୁ, ସପ୍ତମ ଅକ୍ଷର 'ପା' ଗୁରୁ, ଶେଷ ଅକ୍ଷରଦ୍ୱୟ, 'ଶୈ' 'ଳଂ' ଗୁରୁ, ଅନ୍ୟବର୍ଣ୍ଣଗୁଡ଼ିକ ଲଘୁ । ଗ୍ଧରୋଟିଯାକ ପାଦରେ ଏହି ରୀତି ଅନୁସୃତ । ଷଷ୍ଠ ଅଧ୍ୟାୟରେ ଭରତ ମୁନି ଋଷିମାନଙ୍କ ଆଗରେ ରସ ପ୍ରସଙ୍ଗରେ କହିଲେ— ସୂତ୍ର ଓ ଭାଷାରେ ବିସ୍ତରଭାବେ ପ୍ରଦତ୍ତ ଉପଦେଶର ସଂକ୍ଷିପ୍ତିକରଣକୁ 'ସଂଗ୍ରହ' କହନ୍ତି । ଏହି ସଂଗ୍ରହରେ ରସ, ଭାବ, ଅଭିନୟ, ଧର୍ମ, ବୃତ୍ତି, ପ୍ରବୃତ୍ତି, ସିଦ୍ଧି, ସ୍ୱର, ବାଦ୍ୟ, ଗାନ ଓ ରଙ୍ଗ ଆଦି ରହିଥାଏ । ନାଟ୍ୟଶାସ୍ତ୍ରରେ ବ୍ରହ୍ମା ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ ଓ ଅଦ୍‌ଭୁତ— ଏହିପରି ଆଠପ୍ରକାର ରସ କଥା କହିଛନ୍ତି । ଏହାପରେ ସ୍ଥାୟୀ, ସଂଗ୍ଧରୀ, ଓ ସାତ୍ତ୍ୱିକ ନାମକ ତିନିପ୍ରକାର ଭାବ ରହିଛି । ସ୍ଥାୟୀଭାବମାନଙ୍କ ନାମ ହେଲା ରତି, ହାସ, ଶୋକ, କ୍ରୋଧ, ଉତ୍ସାହ, ଭୟ, ଜୁଗୁପ୍ସା ଓ ବିସ୍ମୟ ।

ସଂଗ୍ଧରୀଭାବ ୩୩ଗୋଟି । ନିର୍ବେଦ, ଗ୍ଳାନି, ଶଙ୍କା, ଅସୂୟା, ମଦ, ଶ୍ରମ, ଆଳସ୍ୟ, ଦୈନ୍ୟ, ଚିନ୍ତା, ମୋହ, ସ୍ମୃତି, ଧୃତି, ବ୍ରୀଡା, ଚପଳତା, ହର୍ଷ, ଆବେଗ, ଜଡତା, ଗର୍ବ, ବିଷାଦ, ଔତ୍ସୁକ୍ୟ, ନିଦ୍ରା, ଅପସ୍ମାର, ସୁପ୍ତି, ପ୍ରବୋଧ, ଅମର୍ଷ. ଅବହିତ୍ଥ, ଉଗ୍ରତା, ମତି, ବ୍ୟାଧି, ଉନ୍ମାଦ, ମରଣ, ତ୍ରାସ ଓ ବିତର୍କ । ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ପ୍ରଳୟ ଏହି ଆଠୋଟି ସାତ୍ତ୍ୱିକ ଭାବ । ନାଟ୍ୟରେ ଆଙ୍ଗିକ, ବାଚିକ, ଆହାର୍ଯ୍ୟ ଓ ସାତ୍ତ୍ୱିକ— ଏପରି ଗ୍ଧରିପ୍ରକାର ଅଭିନୟ ଅଛି । ଭାରତୀ, ସାତ୍ୱତୀ, କୈଶିକୀ ଓ ଆରଭଟୀ— ଏହି ଗ୍ଧରିଗୋଟି ବୃତ୍ତିରେ ସମସ୍ତ ନାଟ୍ୟ ପ୍ରତିଷ୍ଠିତ । ନାଟ୍ୟଶାସ୍ତ୍ରରେ ପାଞ୍ଚପ୍ରକାର ପ୍ରବୃତ୍ତି ଅଛି । ଆବନ୍ତୀ, ଦାକ୍ଷିଣାତ୍ୟ, ଔଡ୍ରମାଗଧୀ, ପାଞ୍ଚାଳୀ ଓ ମଧ୍ୟମା ।

"ଆବନ୍ତୀ ଦାକ୍ଷିଣାତ୍ୟା ଚ ତଥା ଚୈବୋଡ୍ର ମାଗଧୀ ।।୨୫।।
ପାଞ୍ଚାଳୀ ମଧ୍ୟମା ଚେତି ବିଜ୍ଞେୟାସ୍ତୁ ପ୍ରବୃତ୍ତୟଃ ।
ଦୈବିକୀ ମାନୁଷୀ ଚୈବ ସିଦ୍ଧିଃ ସ୍ୟାଦ୍‌ଦ୍ୱିବିଧୈ ଚ ।।୨୬।।

Digitized by srujanika@gmail.com

ନାଟ୍ୟରେ ଦୈବିକୀ ଓ ମାନୁଷୀ ନାମରେ ଦୁଇପ୍ରକାର ସିଦ୍ଧି ଅଛି । ଷଡ୍‌ଜ ପ୍ରଭୃତି ସପ୍ତସ୍ୱର (ସା,ରେ,ଗା,ମା,ପା,ଧା,ନି) ଶରୀରରୁ ଜାତ (ପ୍ରାଣିଜ) ଓ ବୈଣବ (ବାଉଁଶର ବଂଶୀ ପ୍ରଭୃତିରୁ ଜାତ) ଏପରି ଦୁଇପ୍ରକାର । ଏହାର ବିଶଦ ବ୍ୟାଖ୍ୟା କରି ପଣ୍ଡିତ ଆଗ୍ରହ୍ଯ୍ୟ ଏହା ଚାରିପ୍ରକାର (ତତ, ଅବନଦ୍ଧ, ଘନ ଓ ସୁଷିର) ଓ ସେଗୁଡ଼ିକୁ ନିମ୍ନମତେ ଚିହ୍ନିତ କରିଛନ୍ତି । ତାର ଯନ୍ତ୍ରକୁ ତତ; ପୁଷ୍କର ଅର୍ଥାତ୍ ପଖୌଜ ପ୍ରଭୃତି ବାଦ୍ୟର ଶବ୍ଦ ଅବନଦ୍ଧ, ଝାଞ୍ଜ ପରି ତାଳ ବାଦ୍ୟର ନାମ ଘନ ଏବଂ ବଂଶୀବାଦ୍ୟକୁ ସୁଷିର କୁହାଯାଏ ।

ଋଷିମାନଙ୍କ ଅନୁରୋଧକ୍ରମେ ଭରତ ରସର ସଂଜ୍ଞା ବିଷୟରେ କହିଲେ— ଆସ୍ୱାଦଯୋଗ୍ୟ ହୋଇଥିବାରୁ ଏହା ରସ । ନାନାପ୍ରକାର ବ୍ୟଞ୍ଜନମିଶ୍ରିତ ଅନ୍ନକୁ (ଖାଦ୍ୟଦ୍ରବ୍ୟକୁ) ଖାଉଥିବା ଲୋକେ ମଧୁରାଦି ରସକୁ ଆସ୍ୱାଦ କରି ଅନୁଭବ କରିଥାନ୍ତି । ସେହିପରି ବାଚିକ, ଆଙ୍ଗିକ ଓ ସାତ୍ତ୍ୱିକ ଅଭିନୟ ଦ୍ୱାରା ଅଭିନୀତ ଭାବମାନଙ୍କ ସାହାଯ୍ୟରେ ସ୍ଥାୟୀଭାବମାନଙ୍କୁ ସହୃଦୟ ଦର୍ଶକମାନେ ଅନୁଭବ କରନ୍ତି, ତେଣୁ ଏଗୁଡ଼ିକ ନାଟ୍ୟରସ ବୋଲି କୁହାଯାଇଛି । ଭାବସମୂହରୁ ରସମାନଙ୍କର ଉତ୍ପତ୍ତି ପରିଦୃଷ୍ଟ ହୁଏ, ମାତ୍ର ରସସମୂହରୁ ଭାବସମୂହର ଉତ୍ପତ୍ତି ପରିଦୃଷ୍ଟ ହୁଏ ନାହିଁ ।

ଶୃଙ୍ଗାର ରସ 'ରତି' ନାମକ ସ୍ଥାୟୀଭାବରୁ ଉତ୍ପନ୍ନ ଓ ଉଜ୍ଜ୍ୱଳ ବେଶଯୁକ୍ତ । ଉତ୍ତମ ଯୁବକ ଓ ଯୁବତୀ ଏହାର ପାତ୍ର । ତାହାର ରୂପଭେଦ ଦୁଇଟି । ଯଥା— ସମ୍ଭୋଗ ଓ ବିପ୍ରଲମ୍ଭ ।

କରୁଣ ରସ ଶାପ, କ୍ଳେଶ, ଅଧୋଗତି, ବିରହ, ଧନନାଶ, ବଧ ବା ବନ୍ଧନରୁ ଉତ୍ପନ୍ନ ହୁଏ । ଏହା ଭାବକୁ ଅପେକ୍ଷା ରଖୁଥିବା ଯୋଗୁଁ ବିପ୍ରଲମ୍ଭଠାରୁ ଭିନ୍ନ ।

ହାସ୍ୟରସର ସ୍ଥାୟୀଭାବ ହାସ । ବିକୃତବେଶ, ବିକୃତ ଅଳଙ୍କାର ଧୃଷ୍ଟତା (ଲଜ୍ଜା ଶୂନ୍ୟତା), କଳହ, ଅସାଧୁ ଭାଷଣ, ବିକୃତ ଅଙ୍ଗପ୍ରଦର୍ଶନ, ଦୋଷଯୁକ୍ତ ବଚନ ଉଚ୍ଚାରଣ ପ୍ରଭୃତି ବିଭାବ ଦ୍ୱାରା ଉତ୍ପନ୍ନ ହୁଏ । ଓଠ, ନାସା ଓ କପୋଳକୁ ଈଷଦ୍ ଚାଳିତ କରିବା, ଚକ୍ଷୁକୁ ବିସ୍ତାରିତ ବା ଆକୁଞ୍ଚିତ କରି ଏହାକୁ ଅଭିନୀତ କରାଯାଏ । ଆକାର ଓ ବାକ୍ୟ ବିକୃତି ତଥା ବିକୃତ ବେଶ ଦ୍ୱାରା ବିଦୂଷକାଦି ଲୋକଙ୍କୁ ହସାନ୍ତି ।

କରୁଣରସ ଶୋକ ନାମକ ସ୍ଥାୟୀଭାବରୁ ଉତ୍ପନ୍ନ ହୁଏ । ତାହା ଶାପ, କ୍ଳେଶ, ବିପଦ, ପ୍ରଭୃତି ଉଦ୍ଦୀପନ ବିଭାବରୁ ଜାତ ହୁଏ । ଏହାର ଅଭିନୟ ଅଶ୍ରୁପାତ, କ୍ରନ୍ଦନ, ମୁଖ ଶୁଷ୍କତା ପ୍ରଭୃତି ଅନୁଭାବ ଦ୍ୱାରା କରାଯାଏ ।

ରୌଦ୍ରରସର ସ୍ଥାୟୀଭାବ କ୍ରୋଧ । ଏହା ରାକ୍ଷସ, ଦାନବ, ଉଦ୍ଧତ ମନୁଷ୍ୟଠାରେ ଉତ୍ପନ୍ନ ହୁଏ । ଯୁଦ୍ଧ ଏହାର କାରଣ । ଏଥିରେ କ୍ରୋଧ, ଧର୍ଷଣ, ନିନ୍ଦା, ଗ୍ଲାନି, କର୍କଶବଚନ ପ୍ରୟୋଗ ପ୍ରଭୃତି ବିଭାବ ଦ୍ୱାରା ଏହା ଉଦ୍ଦୀପିତ ହୁଏ ।

Digitized by srujanika@gmail.com

ଭୟାନକ ରସର ସ୍ଥାୟୀଭାବ ଭୟ । ଏହା ବିକୃତ ଭାବ ଓ ବିକୃତ ରବ କରୁଥିବା ପ୍ରାଣୀଙ୍କ ଦର୍ଶନ (ବିଲୁଆ ଓ ପେଗ୍ଚ ପ୍ରଭୃତି) ବା ଶ୍ରବଣ ପ୍ରଭୃତି ବିଶିଷ୍ଟ ଭାବରୁ ଉତ୍ପନ୍ନ ହୁଏ । ହସ୍ତପଦର କମ୍ପନ, ଚକ୍ଷୁର ଚଞ୍ଚଳ ଗ୍ଚଳନା, ମୁଖର ବିକୃତି, ସ୍ୱରଭେଦ ପ୍ରଭୃତି ଅନୁଭାବ ଦ୍ୱାରା ପ୍ରକାଶିତ ହୁଏ ।

ବୀଭତ୍ସରସର ସ୍ଥାୟୀଭାବ ଜୁଗୁପ୍ସା । ଏହା ଅସୁନ୍ଦର, ଅପ୍ରିୟ ବସ୍ତୁ ଦର୍ଶନ, ଅବାଂଛିତ କଥା ବା ବସ୍ତୁର ଶ୍ରବଣ, ଦର୍ଶନ ବା ବିଗ୍ଚରରୁ ଉତ୍ପନ୍ନ । ଏହାର ଅଭିନୟବେଳେ ସର୍ବାଙ୍ଗର ସ୍ଥିରତା, ମୁଖ ବୁଲାଇବା, ବାନ୍ତି, ଛେପ ପକାଇବା, ଅଙ୍ଗ ହଲାଇବା (ଛିଆଡିବା) ପ୍ରଭୃତି ଅନୁଭାବ ପ୍ରଦର୍ଶିତ ହୁଏ ।

ଅଦ୍ଭୁତ ରସର ସ୍ଥାୟୀଭାବ ବିସ୍ମୟ । ସୁନ୍ଦର ବା ସ୍ୱର୍ଗୀୟ ବସ୍ତୁର ଦର୍ଶନ, କାମନାପୂରଣ, ଉତ୍ତମବନ, ଦେବାଳୟ, ସଭାଗୃହ, ବିମାନ ପ୍ରଭୃତିକୁ ଗମନ, ଅସମ୍ଭବ ମାୟା ବା ଇନ୍ଦ୍ରଜାଲରୁ ଏହାର ଉତ୍ପତ୍ତି ।

ଏହାର ଅଭିନୟରେ ଚକ୍ଷୁକୁ ବିସ୍ତାରିତ କରିବା, ପଲକ-ଶୂନ୍ୟ ଦୃଷ୍ଟିରେ ଗ୍ଚହିଁବା, ରୋମାଞ୍ଚ, ଅଶ୍ରୁ, ସ୍ୱେଦ, ହର୍ଷ, ସାଧୁବାଦ ପ୍ରଦାନ ଭିତରେ ହା ହା ଶବ୍ଦ କରିବା, ହସ୍ତପଦ ଓ ଅଙ୍ଗୁଳିମାନଙ୍କୁ ପରିଗ୍ଚଳିତ କରିବା ପ୍ରଭୃତି ଅନୁଭାବ କରାଯାଇଥାଏ ।

ଶୃଙ୍ଗାରକୁ ବାକ୍ ଶୃଙ୍ଗାର, ନେପଥ୍ୟ ଶୃଙ୍ଗାର ଓ କ୍ରିୟା ଶୃଙ୍ଗାର ଭେଦରେ ତିନି-ପ୍ରକାରେ ବିଭକ୍ତ କରାଯାଇଛି । ହାସ୍ୟ ଓ ରୌଦ୍ର ରସ ମଧ୍ୟ ପ୍ରତ୍ୟେକେ ଅଙ୍ଗ, ନେପଥ୍ୟ ଓ ବାକ୍ୟଭେଦରେ ତିନିପ୍ରକାର । କରୁଣ ରସ ମଧ୍ୟ ତିନିପ୍ରକାର । ଧର୍ମର ହାନିଜନିତ, ଧନର ଅପଚୟ (ବିତ୍ତନାଶ) ଓ ଶୋକଜନିତ କରୁଣ ।

ବୀର ରସ— ଦାନବୀର, ଧର୍ମବୀର, ଯୁଦ୍ଧବୀର ଭେଦରେ ତିନିପ୍ରକାର । ଭୟାନକ ରସ ବ୍ୟାଜ(ଛଳନା), ଅପରାଧ ଏବଂ ବିତ୍ରାସିତ (ବିପଦ ଆଶଙ୍କା ଜନିତ) ଭେଦରେ ତିନିପ୍ରକାର ।

ବୀଭତ୍ସ ରସ କ୍ଷୋଭଜ, ଶୁଦ୍ଧ ଓ ଉଦ୍‌ବେଗୀ ଭେଦରେ ତିନିପ୍ରକାର । ବିଷ୍ଠା, କୃମି ପ୍ରଭୃତି ଦର୍ଶନାଦି ଜନିତ ବୀଭତ୍ସର ନାମ ଉଦ୍‌ବେଗୀ । ରକ୍ତ ପ୍ରଭୃତି ଦର୍ଶନଜାତ ବୀଭତ୍ସର ନାମ କ୍ଷୋଭଜ ।

ଅଦ୍‌ଭୁତ ରସ ଦିବ୍ୟ ଓ ଆନନ୍ଦଜ ଭେଦରେ ଦୁଇପ୍ରକାର । ଦିବ୍ୟ (ସ୍ୱର୍ଗୀୟ ବସ୍ତୁ) ଦର୍ଶନରୁ ଜାତ ଅଦ୍‌ଭୁତ ରସ ଦିବ୍ୟ ଓ ହର୍ଷରୁ ଜାତ ଅଦ୍‌ଭୁତ ରସ ଆନନ୍ଦଜ ।

ସପ୍ତମ ଅଧ୍ୟାୟରେ ଭାବର ବ୍ୟାଖ୍ୟା କରାଯାଇଛି । ବଚନ (ଶବ୍ଦ) ଅଙ୍ଗ (ଅଙ୍ଗ ଗ୍ଚଳନାଦି) ସତ୍ତ୍ୱ (ଅନ୍ତର୍ଗତ କ୍ରିୟା) ସାହାଯ୍ୟରେ କାବ୍ୟଗତ (ନାଟ୍ୟଗତ) ଅର୍ଥମାନଙ୍କୁ 'ଭାବିତ' କରାନ୍ତି ବୋଲି ଏମାନଙ୍କୁ ଭାବ କୁହାଯାଏ । ଉପାଦାନ ବା ନିମିତ୍ତ କାରଣ

Digitized by srujanika@gmail.com

କାର୍ଯ୍ୟସିଦ୍ଧିର ଉପକାରକ କରଣ ଅଟେ । 'ଭାବିତ' 'ବାସିତ' ଓ 'କୃତ' ଏହି ତିନିଟିଯାକ ଶବ୍ଦ ସମାନ ।

ବିଭାବ ଶବ୍ଦର ଅର୍ଥ ବିଜ୍ଞାନ । ବିଭାବ ଶବ୍ଦର ଅର୍ଥ ଯାହା, କାରଣ, ନିମିତ୍ତ ଓ ହେତୁ ଶବ୍ଦର ଅର୍ଥ ତାହା । ଏମାନେ ଏକ ଅର୍ଥର ଭିନ୍ନ ଭିନ୍ନ ପର୍ଯ୍ୟାୟ ଶବ୍ଦ ମାତ୍ର । ବ୍ୟୁତ୍ପତ୍ତି ଦୃଷ୍ଟିରୁ ବିଭାବ ଶବ୍ଦର ଅର୍ଥ ହେଉଛି (ବିଭାବ୍ୟନ୍ତେ)— ବିଶେଷ ଭାବେ ଜଣାପଡ଼ନ୍ତି । ବଚନ, ଅଙ୍ଗଗତ ଅଭିନୟ— ଏହାଦ୍ୱାରା ଅର୍ଥାତ୍ ବିଭାବ ସାହାଯ୍ୟରେ ବାକ୍, ଅଙ୍ଗ ଓ ଅଭିନୟ ବିଶେଷ ଭାବରେ ପ୍ରତୀତିଗୋଚର ହୁଅନ୍ତି । ଭରତଙ୍କ ନାଟ୍ୟଶାସ୍ତ୍ରରେ ସପ୍ତମ ଅଧ୍ୟାୟ ଭାବ ବିକଳ୍ପ ନାମରେ ଖ୍ୟାତ ।

ଅଷ୍ଟମ ଅଧ୍ୟାୟରେ ଉତ୍ତମ ଅଙ୍ଗାଭିନୟ ବିଷୟ ବର୍ଣ୍ଣିତ । ଅଭିନୟ ଶବ୍ଦର ବ୍ୟୁତ୍ପତ୍ତି ହେଉଛି 'ଅଭି' ଉପସର୍ଗରୁ ଉତ୍ତର 'ନୀ' ଧାତୁରୁ ଅଚ୍ ପ୍ରତ୍ୟୟ କରି ଅଭି ପୂର୍ବକ 'ନୀ' ଧାତୁର ଅର୍ଥ ଅଭିମୁଖରେ ପହଞ୍ଚାଇବା । ନାଟ୍ୟବସ୍ତୁର ଅର୍ଥକୁ ନିର୍ଣ୍ଣୟ କରିବାରେ ଆଭିମୁଖ୍ୟ ପ୍ରଦାନ କରିବା । ଏହା ଯେଉଁଥିରେ ଘଟେ, ତାହାକୁ ଅଭିନୟ କହନ୍ତି । ଶାଖା, ଅଙ୍ଗ ଓ ଉପାଙ୍ଗଯୁକ୍ତ ହୋଇ ନାଟ୍ୟ ବସ୍ତୁମାନଙ୍କର ପ୍ରୟୋଗ ସାହାଯ୍ୟରେ ବିକଶିତଭାବେ ପ୍ରକାଶିତ କରେ । ଶିର, ହସ୍ତ, ବକ୍ଷ, ପାର୍ଶ୍ୱ, କଟୀ ଓ ପାଦ ଏହି ଛଅଟିକୁ ଅଙ୍ଗ ଏବଂ ନେତ୍ର, ଭ୍ରୂ, ନାସା, ଅଧର, କପାଳ ଓ ଚିବୁକ ଏ ଛ'ଟିର ନାମ ଉପାଙ୍ଗ । ଆଙ୍ଗିକ ଅଭିନୟର ନାମ 'ଶାଖା' । ତଦ୍ୱାରା ଯେଉଁ ସୂଚନା ଦିଆଯାଏ, ତାହାର ନାମ 'ଅଙ୍କୁର' ଏବଂ ତାର ଅବଲମ୍ବନରେ ଯେଉଁ ଅଙ୍ଗହାର ପ୍ରଦର୍ଶିତ ହୁଏ, ତାହାର ନାମ 'ନୃତ୍ତ' । ଶିରର ଅଭିନୟ ତେର ପ୍ରକାର । ଯଥା— ଆକମ୍ପିତ, କମ୍ପିତ, ଧୂତ, ବିଧୂତ, ପରିବାହିତ, ଆଧୂତ, ଅବଧୂତ, ଅଞ୍ଚିତ, ନିହଞ୍ଚିତ, ପରାବୃତ୍ତ, ଉତ୍କ୍ଷିପ୍ତ, ଅଧୋଗତ ଓ ଲୋଳିତ ।

ଦୃଷ୍ଟି ୩୬ ପ୍ରକାର । କାନ୍ତା, ଭୟାନକା, ହାସ୍ୟା, କରୁଣା, ଅଦ୍ଭୁତା, ରୌଦ୍ରୀ, ବୀରା, ବୀଭତ୍ସା— ଆଠଗୋଟି ରସବ୍ୟଞ୍ଜକ ଦୃଷ୍ଟି । ସ୍ନିଗ୍ଧା, ହୃଷ୍ଟା, ଦୀନା, କ୍ରୁଦ୍ଧା, ଦୃପ୍ତା, ଭୟାନ୍ୱିତା, ଜୁଗୁପ୍ସିତା ଓ ବିସ୍ମିତା— ଏ ଆଠଗୋଟି ସ୍ଥାୟୀଭାବ ଜ୍ୟୋତିକା ଦୃଷ୍ଟି । ଶୂନ୍ୟା ମଳିନା, ଶାନ୍ତା, ଲଜ୍ଜାନ୍ୱିତା, ଗ୍ଲାନି, ଶଙ୍କିତା, ବିଷଣ୍ଣା, ମୁକୁଳା, କୁଞ୍ଚିତା, ଅଭିତପ୍ତା, ଜିହ୍ମା, ଲଳିତା, ବିତର୍କିତା, ଅର୍ଦ୍ଧମୁକୁଳା, ବିଭ୍ରାନ୍ତା, ବିପ୍ଲୁତା, ଆକେକରା, ବିକୋଶା, ତ୍ରସ୍ତା ଓ ମଦିରା— ଏମାନଙ୍କ ସଂଖ୍ୟା ୨୦ । ଉତ୍ତମାଙ୍ଗ ଅଭିନୟରେ ଶିର, ନେତ୍ର, ନାସା, ଓଷ୍ଠ, କପୋଳ ଆଦିଙ୍କର ଚାଳନା ବା ଅଭିନୟ ବର୍ଣ୍ଣିତ ।

ନବମ ଅଧ୍ୟାୟରେ ହସ୍ତ, ଉରଃ, ପାର୍ଶ୍ୱ, ଉଦର, କଟି, ଜଙ୍ଘ, ଉରୁ ଓ ପାଦକ୍ରମରେ ସମସ୍ତ କର୍ମର ଲକ୍ଷଣ ଓ ବିନିଯୋଗ ସଂପର୍କରେ କୁହାଯାଇଛି । ଅସଂଯୁତ ହସ୍ତର ଅଭିନୟ ୨୪ ପ୍ରକାର । ଯଥା— ପତାକା, ତ୍ରିପତାକ, କର୍ତ୍ତରୀମୁଖ, ଅର୍ଦ୍ଧଚନ୍ଦ୍ର, ଅରାଳ, ଶୁକତୁଣ୍ଡ,

Digitized by srujanika@gmail.com

ମୁଷ୍ଟି, ଶିଖର, କପିତ୍ଥ, ଖଟକାମୁଖ, ସୂଚୀ, ପଦ୍ମକୋଶ, ସର୍ପଶିରା, ମୃଗଶୀର୍ଷକ, କାଙ୍ଗୁଳକ, ଅଳପଦ୍ମ, ଚତୁର, ଭ୍ରମର, ହଂସ, ହଂସପକ୍ଷ, ସଦଂଶ, ମୁକୁଳ, ଉର୍ଣ୍ଣନାଭ ଓ ତାମ୍ରଚୂଡ ।

ସଂଯୁତ ହସ୍ତର ଅଭିନୟ ୧୩ଗୋଟି— ଅଞ୍ଜଳି, କପୋତ, କର୍କଟ, ସ୍ୱସ୍ତିକ, ଖଟକାବର୍ଦ୍ଧମାନକ, ଉତ୍ସଙ୍ଗ, ନିଷଧ, ଦୋଳ, ପୁଷ୍ପପୁଟ, ମକର, ଗଜଦନ୍ତ, ଅବହିତ୍ଥ ଓ ବର୍ଦ୍ଧମାନ ପ୍ରଭୃତି ।

ନୃତ୍ୟହସ୍ତ ଯୁଗଳର ଅଭିନୟ ଚତୁରସ୍ର, ଉଦ୍ଧୃତ୍ତ, ତଳମୁଖ, ସ୍ୱସ୍ତିକ, ବିପ୍ରକୀର୍ଣ୍ଣ ଅରାଳଖଟକମୁଖ, ଆବିଦ୍ଧବକ୍ର, ସୂଚୀ, ରେଚିତ, ଅର୍ଦ୍ଧରେଚିତ, ଉତ୍ତାନବଞ୍ଚିତ, ପଲ୍ଲବ, ନିତମ୍ବ, କେଶବନ୍ଧ, ଲତା, କରିହସ୍ତ, ପକ୍ଷବଞ୍ଚିତକ, ପକ୍ଷ ପ୍ରଦ୍ୟୋତକ, ଗରୁଡ଼ପକ୍ଷ, ଦଣ୍ଡପକ୍ଷ, ଉର୍ଦ୍ଧ୍ୱମଣ୍ଡଳୀ, ପାର୍ଶ୍ୱମଣ୍ଡଳୀ, ଉରୋମଣ୍ଡଳୀ, (ମୁଷ୍ଟିକ ସ୍ୱସ୍ତିକ), ନଳିନୀ ପଦ୍ମକୋଶ, ଅଳପଲ୍ଲବୋଲ୍ବଣ, ଲଳିତ ଓ ବଳିତ । ହସ୍ତ ଅଭିନୟର ସଂଖ୍ୟା ମୋଟ ୬୪ ପ୍ରକାର ।

ପୁରୁଷମାନଙ୍କର ବିଶେଷତଃ ସ୍ତ୍ରୀମାନଙ୍କର ହସ୍ତମୁଦ୍ରା ପ୍ରୟୋଗ କଲାବେଳେ ଦେଶ, କାଳ (ନାଟକର ସୁକୁମାରତା ବା ଉଦ୍ଧତତା) ପ୍ରୟୋଗ ଓ ଅର୍ଥର (ମୁଖ୍ୟତା, ଲାକ୍ଷଣିକତା ଓ ବ୍ୟଙ୍ଗତା) ବିଗ୍ଚର କରି ପ୍ରୟୋଗ କରିବ । ହସ୍ତ ମୁଦ୍ରାର ଚଳନ ବିଭିନ୍ନ ରସ ଓ ଭାବ ଦୃଷ୍ଟିରୁ ୨୦ ପ୍ରକାର ଯଥା— ୧- ଉତ୍କର୍ଷଣ (ଉପର, ତଳ ବା ଦୂରକୁ ପ୍ରସାରିତ ହସ୍ତକୁ ଅନ୍ୟ ପ୍ରକାର କରିବା) ୨- ବିକର୍ଷଣ, ୩- ବ୍ୟାକର୍ଷଣ, ୪- ପରିଗ୍ରହ (ବେଢ଼ାଇବା), ୫- ନିଗ୍ରହ (ବିନାଶ କରିବା), ୬- ଆହ୍ୱାନ, ୭- ତୋଦନ (ତାଡ଼ନ), ୮- ସଂଶ୍ଳେଷ, ୯- ବିଯୋଗ, ୧୦- ରକ୍ଷଣ, ୧୧- ମୋକ୍ଷଣ, ୧୨- ବିକ୍ଷେପ (ଅବଜ୍ଞା ସହକାରେ ତ୍ୟାଗକରିବା), ୧୩- ଧୂନନ--(କମ୍ପନ), ୧୪- ବିସର୍ଗ (ଆଦର ସହକାରେ ତ୍ୟାଗକରିବା), ୧୫- ତର୍ଜନ, ୧୬- ଛେଦନ, ୧୭- ଭେଦ, ୧୮- ସ୍ଫୋଟନ (ବିକଶିତ ହେବା, ଫୁଟିବା), ୧୯- ମୋଟନ (ସଙ୍କୁଚିତ ହେବା) ଓ ୨୦- ତାଡ଼ନ ।

ହସ୍ତର ପ୍ରଚ୍ଚର ତିନିପ୍ରକାର । ଉତ୍ତାନ (ଉପରକୁ), ପାର୍ଶ୍ୱଗ (କଡ଼କୁ) ଓ ଅଧୋମୁଖ (ତଳଆଡ଼କୁ ଗତି କରିବା) । ସବୁପ୍ରକାର ହସ୍ତ ଗତିକୁ ଅଭିନୟ କାଳରେ ନେତ୍ର, ଭ୍ରୂ ଓ ମୁଖରାଗ (ମୁଖରଙ୍ଗ) ସାହାଯ୍ୟରେ ବ୍ୟଞ୍ଜିତ କରାଯାଏ ।

ଦଶମ ଅଧ୍ୟାୟରେ ଜଙ୍ଘ, ଉରୁ, କଟି— ଏମାନଙ୍କ ସମାନକରଣ ପାଇଁ ଯେଉଁ ଚେଷ୍ଟା (ଅଙ୍ଗଚ୍ଚଳନା), ସେହି 'ଚ୍ଚରୀ' ବା 'ବ୍ୟାୟାମ' ବିଷୟରେ କୁହାଯାଇଛି । ଏକ ପାଦରେ ଗତି କରିବାର ନାମ 'ଚ୍ଚରୀ' ଓ ଦୁଇପାଦରେ ଗତି କରିବାର ନାମ 'କରଣ' । କରଣମାନଙ୍କ ସଂଯୋଗକୁ 'ଖଣ୍ଡ' କୁହାଯାଏ । ତିନି ବା ଚ୍ଚରିଗୋଟି ଖଣ୍ଡ ଏକତ୍ର ସଂଯୁକ୍ତ ହେଲେ, ତାହାକୁ 'ମଣ୍ଡଳ' କୁହାଯାଏ ।

Digitized by srujanika@gmail.com

ଦଶମ ଅଧ୍ୟାୟରେ ଗ୍ରୀବାଗୁଡ଼ିକର ଲକ୍ଷଣାଦି ଏବଂ ଏକାଦଶ ଅଧ୍ୟାୟରେ ମଣ୍ଡଳମାନଙ୍କ ସଂପର୍କରେ ଆଲୋଚନା କରାଯାଇଛି ।

ଏହି ମଣ୍ଡଳମାନଙ୍କ ମଧ୍ୟରୁ ଅତିକ୍ରାନ୍ତ, ବିଚିତ୍ର, ଲଳିତ, ସୂଚୀବିଦ୍ଧ, ଦଣ୍ଡପାଦ, ବିହୃତ, ଅଲାତକ, ବାମବିଦ୍ଧ, ଲଳିତ ଓ କ୍ରାନ୍ତ— ଏଗୁଡ଼ିକ ଆକାଶଗତ ମଣ୍ଡଳ ଏବଂ ଭ୍ରମର, ଆସ୍କଳିତ, ଆବର୍ତ୍ତ, ସମୋତ୍ସାରିତ, ଏଡକାକ୍ରୀଡିତ, ଅଡ୍ଡିତ, ଶକଟାସ୍ୟ, ଅଧ୍ୟର୍ଧକ, ପିଷ୍ଟକୁଟ, ଗ୍ରୀଷଗତ— ଏହି ଦଶଗୋଟି ଭୂମିଗତ ମଣ୍ଡଳ । ଏହାପରେ ଏଗୁଡ଼ିକର ଲକ୍ଷଣ ଓ ପ୍ରୟୋଗ ବିଷୟରେ ସବିସ୍ତର ବର୍ଣ୍ଣନା କରାଯାଇଛି ।

ଭରତ ମୁନିଙ୍କ ପ୍ରଣୀତ ନାଟ୍ୟଶାସ୍ତ୍ର ସଂସ୍କୃତରେ ଥିବାରୁ ଓଡ଼ିଆ ନର୍ତ୍ତକମାନଙ୍କ ପକ୍ଷେ ଅବୋଧ୍ୟ ଥିଲା । ମାତ୍ର ପଣ୍ଡିତ ମହାଶୟ ବହୁ ଶ୍ରମ ସ୍ୱୀକାରପୂର୍ବକ ଏହାର ଅନୁବାଦ କରିବା ସହିତ ସ୍ଥଳବିଶେଷରେ ସ୍ୱକୀୟ ମନ୍ତବ୍ୟ ଓ ବିଭିନ୍ନ ଶାସ୍ତ୍ରର ତୁଳନାତ୍ମକ ଦୃଷ୍ଟାନ୍ତ ଦେବାଦ୍ୱାରା ଏହାର ପ୍ରାୟୋଗିକ ଶିକ୍ଷା ପାଇଁ ପଥ ସୁଗମ କରିଅଛନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ପୁସ୍ତକରେ ପଣ୍ଡିତଜୀଙ୍କ ଦ୍ୱାରା ଏହି ନାଟ୍ୟଶାସ୍ତ୍ର ସମ୍ପର୍କରେ ଏକ ବିସ୍ତୃତ ଭୂମିକା ବା ମୁଖବନ୍ଧ ଲେଖାଇ ପ୍ରକାଶ କରିଥିଲେ, ଆଗ୍ରର୍ଯ୍ୟ ମହାଶୟଙ୍କ ବହୁଶାସ୍ତ୍ର ଦର୍ଶିତା ଦେଖିବାକୁ ସୁଯୋଗ ମିଳିଥାଆନ୍ତା ।

ବିଶେଷଭାବେ ଲକ୍ଷ୍ୟ କରିବାର କଥା ଯେ ଭରତମୁନିଙ୍କ ନାଟ୍ୟଶାସ୍ତ୍ରରେ ଔଡ୍ରମାଗଧୀ ନାମକ ପ୍ରବୃତ୍ତିର ଉଲ୍ଲେଖ ସୂଚିତ କରେ ଔଡ୍ର ବା ଉଡ୍ର ଦେଶ (ଓଡ଼ିଶା)ରେ ପ୍ରଚଳିତ ନାଟ୍ୟଧାରା । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଉଦୟଗିରିରେ ରାଣୀହଂସପୁର ଗୁମ୍ଫା ସମ୍ମୁଖସ୍ଥ ଉନ୍ମୁକ୍ତ ନାଟ୍ୟମଞ୍ଚ (ମଣ୍ଡପ) ମଧ୍ୟ ଓଡ଼ିଶାର ଅଭିନୟ କଳାର ପ୍ରାଚୀନତା ଉଦ୍‌ଘୋଷଣ କରେ ।

— ୦ —

Digitized by srujanika@gmail.com

# ସହୃଦୟାନନ୍ଦ

ମହାକବି କୃଷ୍ଣାନନ୍ଦ ପ୍ରଣୀତ ମୂଳ ସଂସ୍କୃତ କାବ୍ୟର ଅନୁବାଦ ହୋଇ ୧୯୪୧ ଖ୍ରୀଷ୍ଟାବ୍ଦରେ କେନ୍ଦୁଝରର ରାଜମହିଷୀ ଓ ଛୋଟରାୟ ଲକ୍ଷ୍ମୀନାରାୟଣ ଭଞ୍ଜଦେବଙ୍କ ଆର୍ଥିକ ସହାୟତାରେ ପ୍ରକାଶିତ ହୋଇଥିଲା । କବିଶେଖର ଶ୍ରୀ ଚିନ୍ତାମଣି ମହାନ୍ତି ଏହି ଅନୁବାଦ ପାଠ କରି ୧୨.୯.୩୯ରେ ଅଭିମତ ଦେଇଥିଲେ "ଉତ୍କଳ ଭାଷାରେ 'ନଳଚରିତ' ପୁସ୍ତକ ଯେତେ ଖଣ୍ଡ ପ୍ରକାଶିତ ହୋଇଛି, ସେଥିମଧ୍ୟରେ ଏ ଖଣ୍ଡି ସର୍ବୋତ୍କୃଷ୍ଟ ।" ଅନୁବାଦକ ନଳଚରିତ ଚିତ୍ରରେ ଯେଉଁ ସୌନ୍ଦର୍ଯ୍ୟ, ବୈଚିତ୍ର୍ୟ ଏବଂ ନୂତନତ୍ୱ ଫୁଟାଇଛନ୍ତି, ତାହା ଅନୁପମ କହିଲେ ଅତ୍ୟୁକ୍ତି ହେବନାହିଁ ।

ମହାଭାରତୀୟ ନଳ ଦମୟନ୍ତୀ-ଉପାଖ୍ୟାନ ଭାରତର ପ୍ରତି ପୁରପଲ୍ଲୀରେ ଗୀତ ଓ ପଠିତ ହୋଇଆସୁଅଛି । ଦ୍ୱାଦଶ ଶତାବ୍ଦୀରେ ଶ୍ରୀହର୍ଷ ଏହି କଥାବସ୍ତୁ ଅବଲମ୍ବନରେ ନୈଷଧୀୟ ଚରିତ ଲେଖିଥିଲେ । ଜର୍ମାନ, ଇଂଲିଶ୍, ଫ୍ରେଞ୍ଚ, ଲାଟିନ୍, ଜେକ୍, ପୋଲିଶ୍ (ପୋଲାଣ୍ଡର ଭାଷା) ଋଷିଆନ୍, ମଡର୍ଣ୍ଣଗ୍ରୀକ୍ ଓ ହଙ୍ଗେରୀଆନ୍ ଭାଷାରେ ପଦ୍ୟାକାରରେ ଅନୂଦିତ ହୋଇଛି । ଏ. ଡେ. ଗୁବର୍ଣ୍ଣେଟିସ୍ ଏହାକୁ ନାଟକାକାରରେ ରଚନା କରି ୧୮୬୯ ଖ୍ରୀଷ୍ଟାବ୍ଦରେ ଫ୍ଲରେନ୍ସ ନଗରରେ ଅଭିନୀତ କରାଇଥିଲେ । ଏହାର ଲାଟିନ୍ ଅନୁବାଦ କରିଥିଲେ ଫ୍ରାଞ୍ଜବପ୍ । ଉଇଣ୍ଟର୍ ନିଜ୍ ଏହାକୁ ଏକ ଉଜ୍ଜ୍ୱଳତମ ରତ୍ନ ଭାବରେ ଅଭିହିତ କରିଛନ୍ତି ।

ସଂସ୍କୃତରେ କାଳିଦାସଙ୍କ ନଳୋଦୟ, ଶ୍ରୀହର୍ଷଙ୍କ ନୈଷଧୀୟ ଚରିତ, ତ୍ରିବିକ୍ରମ ଭଟ୍ଟଙ୍କ ନଳଚମ୍ପୂ ପରି କୃଷ୍ଣାନନ୍ଦ କୃତ ସହୃଦୟାନନ୍ଦ ଏକ କଥାବସ୍ତୁକୁ ଅବଲମ୍ବନ କଲେହେଁ ନିଜ ନିଜ ରୁଚି ଓ ନୀତିକୁ ତହିଁରେ ପ୍ରତିଫଳିତ କରିଆନ୍ତି । ମୂଳ ମହାଭାରତର ଗଳ୍ପାଂଶକୁ କୃଷ୍ଣାନନ୍ଦ ଆପଣାର ରୁଚି ଅନୁସାରେ ପରିବର୍ତ୍ତନ କରି ପରିବେଷଣ କରିଛନ୍ତି ।

ମହାଭାରତ ମତେ— ବନବାସୀ କ୍ଷୁଧାତୁର ନଳଙ୍କ ସମ୍ମୁଖରେ କଳି ରତ୍ନମୟ କପୋତରୂପେ ଦେଖାଦେଲା । ନଳ ତାକୁ ଧରିବା ପାଇଁ ଅନ୍ୟ ଉପାୟ ନ ପାଇ ନିଜ ପିନ୍ଧାଲୁଗା ଖଣ୍ଡିକ ତା' ଉପରକୁ ଫିଙ୍ଗି ଦେଲେ । କପଟ କପୋତ ଲୁଗା ସହ ଅନ୍ତର୍ଦ୍ଧାନ ହେବାରୁ ଲଜ୍ଜା ନିବାରଣ ପାଇଁ ନଳ ଦମୟନ୍ତୀଙ୍କ ପଣତ ଘୋଡ଼ାଇହେଲେ । କଳିଦ୍ୱାରା ମୋହିତ ହୋଇ ନିର୍ଜନ ବନରେ ପ୍ରେୟସୀଙ୍କୁ ଛାଡ଼ିଯିବାକୁ ମନସ୍ଥ କଲେ । କଳି ଏକ ଖଡ୍ଗରୂପେ ତାଙ୍କ ପାଖରେ ଦେଖାଦେବାରୁ ତାହାରି ସାହାଯ୍ୟରେ ଶାଢ଼ୀକୁ ଦୁଇଖଣ୍ଡ କରି କାଟି ପ୍ରିୟାଙ୍କୁ ଏକାକିନୀ କରି ଚାଲିଗଲେ ।

Digitized by srujanika@gmail.com

କବି କୃଷ୍ଣାନନ୍ଦ ବିଙ୍କ ନଳରାଜାଙ୍କୁ ପକ୍ଷୀ ମାଂସଲୋଭୀ ଭାବେ ଚିତ୍ରଣ କରିନାହାନ୍ତି । ସେ ଲେଖିଛନ୍ତି ଦୁଇଟି ରତ୍ନମୟ ପକ୍ଷୀ ନଳ ଓ ଦମୟନ୍ତୀଙ୍କୁ ମୋହିତ କରି ଉଡ଼ି ବୁଲିଲେ ଓ ସେ ଦୁହେଁ ସେମାନଙ୍କୁ ଅନୁସରଣ କରି ଦୁଇ ବିପରୀତ ଦିଗରେ ବହୁ ଦୂରବର୍ତ୍ତୀ ହେବାପରେ ପକ୍ଷୀଦ୍ୱୟ ଅନ୍ତର୍ହିତ ହେଲେ ।

ବିଚ୍ଛେଦଗ୍ରସ୍ତା ଦମୟନ୍ତୀ ସ୍ୱାମୀଙ୍କ ଅନ୍ୱେଷଣରେ ବୁଲିବାବେଳେ ପ୍ରକାଣ୍ଡ ଅଜଗର ମୁଖରେ ପ୍ରବେଶ କଲେ । ସେହି ସମୟରେ ଏକ ବ୍ୟାଧଶରାହତ ହରିଣ ସେ ସର୍ପ ମୁଖରେ ପ୍ରବେଶ କଲା । ରକ୍ତବିନ୍ଦୁକୁ ଅନୁସରଣ କରି ବ୍ୟାଧମାନେ ଆସି ସେଠାରେ ଉପସ୍ଥିତ ହେଲେ ଓ ଅଜଗରକୁ କୁରାଢୀରେ ଦ୍ୱିଖଣ୍ଡିତ କରି ହରିଣ ଓ ମୂର୍ଚ୍ଛିତା ଦମୟନ୍ତୀଙ୍କୁ ସର୍ପ ମୁଖଗହ୍ୱରରୁ ଉଦ୍ଧାର କଲେ । ବହୁ ଯତ୍ନ ସତ୍ତ୍ୱେ ଦମୟନ୍ତୀଙ୍କର ମୂର୍ଚ୍ଛାଭଙ୍ଗ ନ ହେବାରୁ ମୃତ ଭାବି ସେମାନେ ଚାଲିଯିବା ପରେ ଜଣେ ତ୍ରିକାଳଦର୍ଶୀ ସନ୍ୟାସୀ ତାଙ୍କୁ ସଚେତ କରାଇ ଆଶ୍ରମରେ ରହିବାକୁ ଅନୁରୋଧ କଲେ; ମାତ୍ର ଦମୟନ୍ତୀ ବନକୁ ଚାଲିଗଲେ ।

ଏ ସଂପର୍କରେ ମହାଭାରତରେ ଅଛି, ଶବରମାନେ ସର୍ପମୁଖରୁ ରକ୍ଷାକଲା ପରେ ତାଙ୍କର ଚେତା ଆସନ୍ତେ ଶବର ଦଳପତି ତାଙ୍କଠାରେ ଅସଦ୍ ଅଭିପ୍ରାୟ ପ୍ରକାଶ କରିବାରୁ ଦମୟନ୍ତୀ ତାକୁ ଶାପଦେଇ ଭସ୍ମ କରି ସତୀତ୍ୱର ଅଲୌକିକ ମହିମା ଦେଖାଇଲେ । କୃଷ୍ଣାନନ୍ଦ ଦମୟନ୍ତୀଙ୍କୁ ମାନବୀ ରୂପେ ଚିତ୍ରଣ କରି ଅଲୌକିକତାକୁ ବାଦ୍ ଦେଇଛନ୍ତି । ପୁଣି ତାଙ୍କୁ ବଞ୍ଚାଇଥିବା ବଣିକଦଳଙ୍କୁ ହାତୀ ଆକ୍ରମଣରୁ ସାବଧାନ କରାଇ ରକ୍ଷା କରିଥିବାରୁ ପ୍ରତ୍ୟୁପକାର ସ୍ୱରୂପ ବଣିକଗଣ ତାଙ୍କୁ ନେଇ ସୁବାହୁ ରାଜନଗରରେ ଛାଡ଼ିଛନ୍ତି ।

ମହାଭାରତରେ ପୁଷ୍କରର ନଳଙ୍କୁ ରାଜ୍ୟରେ ପୂରାଇ ନଦେବା ଘୋଷଣାକୁ କୃଷ୍ଣାନନ୍ଦ ତ୍ୟାଗ କରିଛନ୍ତି ।

ମହାଭାରତ ଅନୁସାରେ ପିତା ଭୀମଙ୍କ ଚର ବାହୁକଠାରେ ନଳଙ୍କ ଆଭାସ ଥିବା ଦମୟନ୍ତୀଙ୍କୁ ଜଣାଇବାରୁ ସେ ପିତାଙ୍କ ଆଦେଶକ୍ରମେ 'ଦମୟନ୍ତୀଙ୍କର ସ୍ୱୟମ୍ବର' ପାଇଁ ଋତୁପର୍ଣ୍ଣ ରାଜାଙ୍କ ପାଖକୁ ନିମନ୍ତ୍ରଣ ପତ୍ର ପଠାଇଛନ୍ତି । ବାହୁକ ବେଶରେ ନଳ ପହଞ୍ଚିବା ପରେ ଦମୟନ୍ତୀ କେଶିନୀ ଦାସୀ ଦ୍ୱାରା ତାଙ୍କୁ ପରୀକ୍ଷା କରିଛନ୍ତି । ରାନ୍ଧିବା ନିମନ୍ତେ ନିଆଁପାଣି ନ ଦେବା, କଞ୍ଚାକାଠ ଯୋଗାଇବା, ପିଲାକୁ କନ୍ଦାଇ ତାହାଙ୍କ ରନ୍ଧା ତରକାରି ଆଣି ଚାଖିବା ଆଦି କାର୍ଯ୍ୟମାନ କରିଛନ୍ତି । ମାତ୍ର କୃଷ୍ଣାନନ୍ଦ ଆଦ୍ୟରୁ ସତୀଧର୍ମ ବିରୋଧୀ ଦ୍ୱିତୀୟ ସ୍ୱୟମ୍ବର କଥା ତ୍ୟାଗ କରିଛନ୍ତି । ବରଂ ଦୁଇ ସନ୍ତାନଙ୍କ ଜନନୀ ଦମୟନ୍ତୀଙ୍କର ସତୀ ଜନୋଚିତ ଅଗ୍ନିପ୍ରବେଶ ବାର୍ତ୍ତା ପ୍ରଚାରିତ କରି ଭୀମଙ୍କ ପରମବନ୍ଧୁ ଋତୁପର୍ଣ୍ଣଙ୍କ ସଙ୍ଗେ ନଳଙ୍କୁ ବିଦର୍ଭକୁ ଅଣାଇଛନ୍ତି ଓ ଅଗ୍ନିପ୍ରବେଶର ପୂର୍ବ ମୁହୂର୍ତ୍ତରୁ ନଳଙ୍କ ସଙ୍ଗେ ମିଳନ ଘଟାଇଛନ୍ତି ।

Digitized by srujanika@gmail.com

କୃଷ୍ଣାନନ୍ଦ ଆପଣାର ଜନ୍ମସ୍ଥାନ ବା ବଂଶ ପରିଚୟ ଦେଇ ନ ଥିଲେ ହେଁ କାବ୍ୟ ଶେଷରେ ଆପଣାକୁ କପିଞ୍ଜଳ ଗୋତ୍ରୀୟ ସାନ୍ଧିବିଗ୍ରହିକ ଉପାଧିଧାରୀ ବୋଲି ଉଲ୍ଲେଖ କରିଛନ୍ତି । ତାହାଙ୍କ ପୁସ୍ତକ ଉତ୍କଳରେ ମିଳିଥିବାରୁ ମୁମ୍ବଇ ନିର୍ଣ୍ଣୟ ସାଗର ପ୍ରେସ୍‌ରେ ମୁଦ୍ରିତ ସହୃଦୟାନନ୍ଦର ସଂପାଦକ ତାଙ୍କୁ ଉତ୍କଳୀୟ ବୋଲି ସ୍ଥିର କରିଛନ୍ତି । ଉତ୍କଳରେ ସାହିତ୍ୟ ଦର୍ପଣ ପ୍ରଣେତା ବିଶ୍ୱନାଥ କବିରାଜ ଓ 'ରସକଳ୍ପଦ୍ରୁମ'ର ଲେଖକ ଜଗନ୍ନାଥ ମିଶ୍ର ଜନ୍ମଗ୍ରହଣ କରିଥିଲେ । ରସକଳ୍ପଦ୍ରୁମ ଅଳଙ୍କାର ଗ୍ରନ୍ଥରେ ରୂପ ଗୋସ୍ୱାମୀଙ୍କ 'ଉଜ୍ଜ୍ୱଳ ନୀଳମଣି' ଓ 'ଭକ୍ତିରସାମୃତ ସିନ୍ଧୁ'ର ଶ୍ଳୋକ ଓ ସହୃଦୟାନନ୍ଦର କେତେକ ପଂକ୍ତି ଦୃଷ୍ଟାନ୍ତସ୍ୱରୂପ ଥିବାରୁ ସହୃଦୟାନନ୍ଦକାର କୃଷ୍ଣାନନ୍ଦ ଉତ୍କଳୀୟ ଥିବା ସ୍ପଷ୍ଟ ହେଉଅଛି । ଦ୍ୱାଦଶ ଶତାବ୍ଦୀର ନୈଷଧର ଏକ ଟୀକା କୃଷ୍ଣାନନ୍ଦଙ୍କ ଦ୍ୱାରା ଲିଖିତ ହୋଇଥିବା କେତେକ ପଣ୍ଡିତ ମତ ଦେଇଥିବାରୁ କୃଷ୍ଣାନନ୍ଦ ଶ୍ରୀହର୍ଷ ଓ ବିଶ୍ୱନାଥଙ୍କ ପରବର୍ତ୍ତୀ ଏବଂ ତାହାଙ୍କ ସମୟ ଦ୍ୱାଦଶ ଶତାବ୍ଦୀର ଶେଷଭାଗ ବା ତ୍ରୟୋଦଶ ଶତାବ୍ଦୀର ଆଦ୍ୟଭାଗ ବୋଲି ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବର ମତ ଦେଇଛନ୍ତି ।

ସଂସ୍କୃତ ଭାଷା ଅନଭିଜ୍ଞ ଉତ୍କଳୀୟମାନଙ୍କୁ ଓଡ଼ିଶାର ସାତଶହ ବର୍ଷ ତଳର ପ୍ରାଚୀନ ସଂସ୍କୃତ ରଚନାର ରସ ଆସ୍ୱାଦନ କରିବାର ସୁଯୋଗ ଦେଇଛନ୍ତି ପଣ୍ଡିତ ବାନାମ୍ବର ଅନ୍ୟତମ ପଣ୍ଡିତ ବିନାୟକ ମିଶ୍ରଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ।

ପ୍ରସ୍ତାବନାରେ ସାଧୁସ୍ତୁତି, ଖଳନିନ୍ଦା ବର୍ଣ୍ଣନା କରି ପୁରାଣ କବି ଯେଉଁ ପ୍ରବନ୍ଧ ରଚନା କରି ଯଶସ୍ୱୀ ହୋଇଛନ୍ତି, ସେ ସମସ୍ତ ବର୍ଣ୍ଣନା କରିବା ପ୍ରୟାସୀ ହୋଇଛନ୍ତି ବୋଲି ଉଲ୍ଲେଖ କରାଯାଇଛି ।

ପ୍ରଥମ ସର୍ଗରେ ନିଷଧ ନୃପତି ବୀରସେନଙ୍କର ପୁତ୍ର ରୂପେ ନଳଙ୍କ ଜନ୍ମ—ବାଲ୍ୟ ଓ ଯୌବନ ବର୍ଣ୍ଣନା, ବୀରସେନଙ୍କ ମୃଗୟା ପାଇଁ ବନଗମନ ଓ ସେଠାରେ ସରସୀ ତୀରରେ ଶାୟିତ ହଂସ ମୁଖରୁ ପରାମର୍ଶ ପାଇ ରାଜନବରକୁ ପ୍ରତ୍ୟାବର୍ତ୍ତନ ପରେ ନଳଙ୍କୁ ରାଜ ପଦରେ ଅଭିଷିକ୍ତ କରି ତପୋବନ ଗମନ ।

୨ୟ ସର୍ଗ— ଦିନେ ରାଜା ନଳ କେଳି-ସରୋବର ତୀରରେ ବସିଥିବା ବେଳେ ତାଙ୍କ ସମୀପରେ ଏକ ହଂସ ଦେଖାଦେଇ କହିଲା, "ମହାରାଜ ! ମୁଁ ଜଗତ ଭ୍ରମଣ କରୁ କରୁ ସ୍ୱର୍ଗପୁରରେ ଦେବସଭାରେ ଦେଖିଲି ଇନ୍ଦ୍ର ପୃଥିବୀରେ ଏବେ ଶ୍ରେଷ୍ଠ ସୁନ୍ଦରୀ କିଏ ବୋଲି ଜାଣିବାକୁ ଚାହାନ୍ତେ କାମଦେବ ବିଦର୍ଭରାଜ ଭୀମଙ୍କ ନନ୍ଦିନୀ ଦମୟନ୍ତୀର ରୂପ ବର୍ଣ୍ଣନା କରିଥିଲେ । ଇନ୍ଦ୍ରାଦି ଦିଗପାଳଗଣ ସେହି କନ୍ୟାର ରୂପ ଚିନ୍ତା କଲେ ଓ ସ୍ୱର୍ଗର ଅପ୍ସରୀଗଣ (ତିଲୋତ୍ତମା, ମେନକା, ଅଳମ୍ବୁଷା, କଳାବତୀ, ଚିତ୍ରଲେଖା ଓ ଶଶିପ୍ରଭା ଆଦି) ଲଜ୍ଜାପାଇ ଆପଣା ଆପଣା କର୍ମକୁ ନିନ୍ଦା କଲେ । ସୁକଣ୍ଠୀ ଗାୟିକା ଗାନ ଚତୁରତା ହରାଇଲା ।

Digitized by srujanika@gmail.com

ସୁର--ବାରନାରୀ--ଲାସ୍ୟ--ଲୀଳା--ରସେ ଆଉ କେହି ନ ରସିଲେ,
ହୃଦେ ଚିନ୍ତି ଭୈମୀ--କଥା ସୁରଗଣ ଯେ ଯାହା ପୁରେ ଚଳିଲେ ।

ହେ ମହୀମହେନ୍ଦ୍ର ! ତୁମ କଥା ମନେ ପଡ଼ିଗଲା । ତେଣୁ ମୁଁ ଆକାଶରୁ ଅବତରଣ କରି ବିଦର୍ଭ ଗଲି ।"

ତୃତୀୟ ସର୍ଗ— ଦେଖିଲି ବିଦର୍ଭପୁରୀର ଶୋଭା ଅଳକା-ପୁରୀକୁ ଉପହାସ କରୁଛି । ଦମୟନ୍ତୀଙ୍କୁ ଦେଖିବାକୁ ବୁଲୁବୁଲୁ ସରୋବର ତୀରରେ ଦେଖିଲି ସଖୀମାନଙ୍କ ପ୍ରଦତ୍ତ ରତ୍ନଭୂଷଣରେ ଆଦର ନ କରି ସେ ଗୋଟିଏ ଚିତ୍ରପଟ ଧରି ନିବିଷ୍ଟ ମନରେ ଦେଖୁଛନ୍ତି । କବିଙ୍କର ବର୍ଣ୍ଣନାରେ,

ଚଟୁଳ-ନୟନା ଚନ୍ଦ୍ରନିଶାରେ
ଗ୍ରହି ନ ପାରି ଚନ୍ଦ୍ରଙ୍କୁ ଚଞ୍ଚଳେ
ତଳକୁ କରି ଦିଅନ୍ତେ ଆନନ,
ସ୍ୱଚ୍ଛ କୁଚେ ତାର ଛାୟା ନର୍ତ୍ତନ
ଦେଖି ଶଙ୍କାଭରେ,
ସୁତନୁ ତନୁ ଥର ଥର ଥରେ ।

ସୁନ୍ଦର ଭାଷାବିନ୍ୟାସ ଯୋଗୁ ଏହା ମୌଳିକ ରଚନା ପରି ପ୍ରତିଭାତ ହେଉଅଛି । ବିରହଯାତନା କ୍ଳିଷ୍ଟା ଦମୟନ୍ତୀଙ୍କୁ ସଖୀଗଣ ଶୀତଳ ଉପଚାର ସାମଗ୍ରୀରେ ଶୀତଳ କରୁଥିଲେ । ତାଙ୍କ ହସ୍ତରେ ଥିବା ଚିତ୍ରପଟଟି ତୁମର (ନଳଙ୍କର) ବୋଲି ଦେଖି ଜାଣିପାରିଲି । ତାଙ୍କୁ ତୁମ ବିଷୟ କହିବା ପରେ ତାଙ୍କର ବିଶ୍ୱାସ ଜନ୍ମିବାରୁ ଦମୟନ୍ତୀ ତୁମ ଉଦ୍ଦେଶ୍ୟରେ ଗଳାରୁ କାଢ଼ି ମୁକ୍ତାମାଳଟିଏ ମୋ ହାତରେ ପଠାଇଥିଲେ । ନଳ ମନେ ମନେ ଭାବିଲେ, ପ୍ରିୟର କୁଚଠାରୁ ଭିନ୍ନ ହୋଇଥିବା ହାରଟି ଶତ ଶତ ସ୍ମରଶର-ଆଘାତ ଲଭି ମୋ ମର୍ମରେ ଅସଂଖ୍ୟ କ୍ଷତ ସୃଷ୍ଟି କରୁଛି । ସେହି ହଂସ ଦୂତକୁ ସେ ଆଲିଙ୍ଗନ କଲେ ।

ଚତୁର୍ଥ ସର୍ଗ— ଚନ୍ଦ୍ରାଲୋକିତ ରଜନୀରେ ଭୈମୀ (ଦମୟନ୍ତୀ)ଙ୍କୁ ଚିନ୍ତା କରି କରି ନଳ କନ୍ଦର୍ପ ଶରାହତ ହୋଇ ବିଳାପ କରିବାକୁ ଲାଗିଲେ । ହଂସକୁ କହିଲେ "ମିତ୍ର ! ତୁମ ପକ୍ଷଦ୍ୱୟ ମୋତେ କିଛିକ୍ଷଣ ପାଇଁ ଯଦି ଦିଅନ୍ତ, ମୁଁ ଯାଇ ପ୍ରାଣେଶ୍ୱରୀକୁ ଦେଖି ଆସିପାରନ୍ତି ।" ହଂସ କହିଲା, "ସେ ସୁଲୋଚନା ଠାରେ ତୁମର ଏ ଭାବ, କାହାକୁ ବା ବ୍ୟଥା ନ ଦେବ ? ରାତି ପାହି ସକାଳ ହେଲେ ତୁମର ଇଷ୍ଟ ସିଦ୍ଧି ହେବ ।"

ପଞ୍ଚମ ସର୍ଗ— ପ୍ରଭାତ ହୁଅନ୍ତେ ହଂସ ନଳଙ୍କୁ ଆଶ୍ୱାସନା ଦେଇ କହିଲା, "ମୁଁ ବିଦର୍ଭ ଯାଇ ଭୈମୀଙ୍କ ପାଖରେ ତୁମର ଦୁର୍ଦ୍ଦଶା ବିଷୟ ଜଣାଇବି ।" ନଳରାଜା ହଂସକୁ ଆଲିଙ୍ଗନ କରି ବିଦାୟ ଦେଲେ ।

Digitized by srujanika@gmail.com

ବିଦର୍ଭରେ ରାଜା କନ୍ୟାର ସ୍ୱୟଂବର ପାଇଁ ବିଭିନ୍ନ ଦେଶର ରାଜାଙ୍କୁ ନିମନ୍ତ୍ରଣ କରିଛନ୍ତି । ନିଷଧ ନରେଶ ଆସି ନ ଥିବାରୁ ଡଗର ପେଷି ଡକାଇ ପଠାଇଲେ । ରାଜା ନଳ ଆଡ଼ମ୍ବର ସହକାରେ ଆସି ଯୋଗଦେଲେ ।

କଳହପ୍ରିୟ ନାରଦ ମନଯାନରେ ସ୍ୱର୍ଗପୁରକୁ ଯାଇ ଇନ୍ଦ୍ରାଦି ଦିଗପାଳମାନଙ୍କୁ ଦମୟନ୍ତୀ ସ୍ୱୟମ୍ବର ବାର୍ତ୍ତା ଦେଲେ । ସେମାନେ ଯାଇ ନଳଙ୍କ ଛାଉଣି ପାଖରେ ଉପସ୍ଥିତ ହୋଇ ନଳଙ୍କୁ କହିଲେ, ''ତୁମେ ଦମୟନ୍ତୀ ପାଖକୁ ଯାଇ ଦେବତାମାନଙ୍କ ମଧ୍ୟରୁ ଜଣକୁ ବରଣ କରିବାକୁ କହ । ତୁମେ ବି ତ ଦମୟନ୍ତୀ ପାଣିପ୍ରାର୍ଥୀ, ଏହା ଜାଣିଲେହେଁ ତୁମଠୁଁ, କାର୍ଯ୍ୟ କରିବା ଭଳି ବିଶ୍ୱାସୀ ବ୍ୟକ୍ତି ଆଉ କିଏ ଅଛି ?'' ସୁରଗଣଙ୍କର ଏ ବାଣୀ ଶୁଣି ମନରେ କ୍ଷୁଣ୍ଣ ହେଲେହେଁ ବିହ୍ୱଳିତ ନ ହୋଇ ଆଦେଶ ପାଳନ ପାଇଁ ଗଲେ । ଯେତେ ଯାହା ପରାମର୍ଶ, ଯୁକ୍ତି ବ୍ୟର୍ଥ ହେଲା । ଇନ୍ଦ୍ରାଦି ଦେବଗଣ ସଭାରେ ନଳରୂପ ଧାରଣ କରି ଉପବେଶନ କଲେ । ତା' ସତ୍ତ୍ୱେ ଦମୟନ୍ତୀଙ୍କର ନଳଙ୍କ ଠାରେ ଥିବା ମତି ଦୂର ହେଲା ନାହିଁ । ସ୍ୱୟମ୍ବର କାଳରେ ଦମୟନ୍ତୀଙ୍କ ନିର୍ଦ୍ଦେଶରେ ନଳଙ୍କ ଗଳାରେ ଧାଇ ମାଳା ଲମ୍ବାଇଦେଲା ।

ଷଷ୍ଠ ସର୍ଗ— ରାଜା ଭୀମ ଅତ୍ୟନ୍ତ ଖୁସି ହୋଇ ନବୀନ ଜାମାତା ନିଷଧେଶଙ୍କୁ କିପରି ଅର୍ଚ୍ଚନା କରିବେ, ସେହି ଚିନ୍ତାରେ ବ୍ୟସ୍ତ ରହିଲେ । ବିବାହ ଉତ୍ସବ ଶେଷରେ ବରକନ୍ୟାଙ୍କ ହସ୍ତଗ୍ରନ୍ଥି ପଡ଼ିବାର ମଞ୍ଜୁଳ ବର୍ଣ୍ଣନା—

''ନଳକରେ କନ୍ୟା-କର ନିବେଶି ତହୁଁ ପିଅର
ଟେକି ନ ଦେଉଣୁ ଜଳ ତହିଁ ଉପରେ
ସ୍ପର୍ଶ ଲଭି ପରସ୍ପର ସ୍ୱେଦଜଳେ ଜରଜର
ହେଲେ ବେନି ଥରଥର ଥରିଲେ ପରେ ।
କଳପିଲେ ଦେଖିଲା ଜନ
ଖଣ୍ଡିଲା କି କଣ୍ଠେ କଣ୍ଠ ଧୀର ପବନ ।''

ବିବାହ ଶେଷ ହେବା ପରେ ରାଜା ନଳ ରାଣୀ ଦମୟନ୍ତୀଙ୍କୁ ଘେନି ରାଜପ୍ରାସାଦରେ ପ୍ରବେଶ କଲେ ଓ ରାଣୀଙ୍କ ଦର୍ଶନ ପାଇଁ ନିଷଧର ନରନାରୀ ରାଜଦାଣ୍ଡରେ ଆସି ଠୁଳ ହେଲେ ।

ସପ୍ତମ ସର୍ଗ— ଦିନେ ରାଣୀଙ୍କ ସହିତ ରାଜା ନଳ ବସିଥିବାବେଳେ ତାଙ୍କର ପୁରାତନ ବନ୍ଧୁ ହଂସ ଉପସ୍ଥିତ ହୋଇ ତାଙ୍କୁ ବହୁତ ଉପଦେଶ ଦେଲା ।

Digitized by srujanika@gmail.com

''ହେଉ ପଛେ ଯେତେ ଦୁର୍ବଳ ବଇରି ତହିଁ ଥିବ ସାବଧାନ
ମତ୍ସରୀ ସେମାନେ କପଟେ କରନ୍ତି ଜିଣିବାକୁ ସଦା ମନ ।
ପରଜାରଞ୍ଜନ ଅଟେ ରାଜଲକ୍ଷ୍ମୀ ଉନ୍ନତି ମୂଳ କାରଣ
ତାହା ପାଳିବାକୁ ଉଦ୍ୟତ ଯେ ରାଜା ସେ ସଦା ସୁଖ-ଭାଜନ ।''

ଏହିପରି ଉପଦେଶମାନ ଦେଇ ହଂସ ବ୍ରହ୍ମାଙ୍କୁ ବହନ କରିବା ପାଇଁ ବ୍ରହ୍ମଲୋକକୁ ଗଲା ।

ଏହାପରେ ଆସିଲା ଗ୍ରୀଷ୍ମକାଳ । ରାଜା ଜଳକ୍ରୀଡ଼ା କଲେ । ମହା ଆନନ୍ଦରେ ପୃଥିବୀକୁ ପାଳନ କଲେ ଓ ରାଣୀଙ୍କ ସହ ମହାଆନନ୍ଦରେ ରହିଲେ । ରାଜାଙ୍କର ଏପରି ସୁଖକୁ କଳି ସହିପାରିଲା ନାହିଁ । ଅସୂୟାବଶରୁ ତାର ଅନ୍ତର ଅକାରଣରେ ଜଳିଉଠିଲା । ଯେଉଁଦିନ ଦମୟନ୍ତୀ ସ୍ୱୟମ୍ବର ସଭାରେ ଇନ୍ଦ୍ରାଦି ଦେବଗଣଙ୍କୁ ପ୍ରତ୍ୟାଖ୍ୟାନ କରି ନଳଙ୍କ ଗଳାରେ ବରଣମାଳା ଦେଲେ, ସେହିଦିନଠାରୁ କଳି ତାଙ୍କ ପ୍ରତି କୋପ କରିଥିଲା ।

ଅଷ୍ଟମ ସର୍ଗ— ଇନ୍ଦ୍ରାଦି ଦେବତାଙ୍କ ବାରଣସତ୍ତ୍ୱେ କଳି ପ୍ରତିଶୋଧ ନେବା ନିମନ୍ତେ ନଳଙ୍କ ଭାଇ ପୁଷ୍କରଙ୍କ ନିକଟରେ ଛଦ୍ମବେଶରେ ପ୍ରବେଶ କରି ନଳଙ୍କୁ ଅକ୍ଷ କ୍ରୀଡ଼ାରେ ହରାଇ ରାଜ୍ୟପ୍ରାପ୍ତି ନିମିତ୍ତ ପ୍ରବର୍ତ୍ତାଇଲା । କଳିର ସଖା ଦ୍ୱାପର ସେହି ପଶାକାଠି ମଧ୍ୟରେ ରହି ପୁଷ୍କରର ଡାକ ଅନୁସାରେ ଦାନ ପଡ଼ିବ ବୋଲି ମନ୍ତ୍ରଣା ଦେଲା ।

ପୁଷ୍କର ଯାଇ ନଳଙ୍କୁ ପ୍ରଣାମ କରି ରତ୍ନଶାରୀ(ପଶାକାଠି) ଉପହାର ଦେଲା । ଦୁଷ୍ଟ କଳି ନଳଙ୍କ ଶରୀରରେ ପ୍ରବେଶ କରନ୍ତେ ନଳ ପୁଷ୍କର ସହ ପଶାଖେଳରେ ମତ୍ତ ହେଲେ । ପଣରେ କେବଳ ଭୂଷାହୀନା ଭୈମୀ ଓ ନିଜ ଶରୀର ବ୍ୟତୀତ ସବୁକିଛି ହାରିଲେ । ଯୁଦ୍ଧକରି ହୃତ ଜିନିଷ ଫେରି ପାଇପାରିଥା'ନ୍ତେ, ମାତ୍ର ପୁଷ୍କର ପଶାଖେଳରେ ଜିତିଥିବା ରାଜ୍ୟ ଧନ ଆଦି ଏବେ ତାର ଛଡ଼ା-ପୁଷ୍ପ ସଦୃଶ ଜ୍ଞାନ କରି ଆଉ ତହିଁରେ ମନ ନ ବଳାଇ ବନବାସୀ ହେବା ଉଦ୍‌ଯୋଗ କଲେ ରାଜାନଳ । ରାଜଦମ୍ପତି ପଦରେ ଚାଲି ଚାଲି ବନକୁ ଗଲାବେଳେ ପୁରବାସୀଗଣ ଦୁଃଖିତ ମନରେ ଦେଖୁଥିଲେ ଓ ବନରେ କିପରି ବଞ୍ଚିବେ, ସେ କଥା ଚିନ୍ତା କରି 'ଆହା' ପଦ ଉଚ୍ଚାରଣ କରୁଥିଲେ ।

ନବମ ସର୍ଗ— ରାଜ୍ୟତ୍ୟାଗ କରିଯାଇଥିଲେହେଁ ନଳଙ୍କ ପ୍ରଶାନ୍ତ ହୃଦୟରେ ଲେଶମାତ୍ର ବିମର୍ଷ ସ୍ଥାନ ପାଇ ନଥିଲା । ତାଙ୍କର ସେ ଅବସ୍ଥାର ବର୍ଣ୍ଣନା କରି କବି କହିଛନ୍ତି,

''ସଂସାରି-ସୁଲଭ ସମ୍ପଦ ବିପଦ
ଦଳ ଦଳ ହୋଇ ଆସନ୍ତି ଯେବେ
ମହତ ମାନବ- ମାନସେ ବିକାର
ଜାତ ହୁଅଇ କି ସେ ଯୋଗୁ କେବେ ?''

Digitized by srujanika@gmail.com

କ୍ରନ୍ଦନରତ ଅନୁଗାମୀ ପ୍ରଜାକୁଳଙ୍କୁ ଫେରାଇଦେଲେ ରାଜା ନଳ । ଦମୟନ୍ତୀଙ୍କୁ କହିଲେ ପିତୃପୁରେ ଯାଇ ରହିବାକୁ । ମାତ୍ର ଦମୟନ୍ତୀ ସେଥିପାଇଁ ନାସ୍ତିକରି ବନବାସୀ ସ୍ୱାମୀଙ୍କ ସେବା କରିବେ ବୋଲି କହି ଅଚେତନ ହେଲେ । ବନଦେବୀ ନଳଙ୍କୁ ସାନ୍ତ୍ୱନା ଦେଇ କହିଲେ,

''ନରେଶ ନ କର ଅନାଦର ଆମ୍ଭ
ବଚନେ ଆଆଙ୍କୁ ପାଶେ ଭୀମଜା,
ପରସ୍ପର ମୁଖ ବିଲୋକି ମସୃଣ
ହେବ ଦୁଃଖଶୋକ ଲଭିବ ଯା' ଯା' ।''

ଦଶମ ସର୍ଗ— ବନରେ ବାସ କରୁଥିବା ରାଜଦମ୍ପତିଙ୍କ ସମ୍ମୁଖରେ ଦୁଇଟି ସୁନ୍ଦର ପକ୍ଷୀ ଆସି ବସିଲେ । ରାଜା ଭାବିଲେ— ଏକ ସ୍ୱର୍ଣ୍ଣ ହଂସ ଆମ୍ଭ ଦୁହିଁଙ୍କ ମିଳନ ଘଟାଇଲା । ଏ ପକ୍ଷୀଦ୍ୱୟ ମୋ' ଦୁଃଖ-କାଳିମା ଅବା ଧୋଇପାରିବେ ! ମାତ୍ର ଦୁଇଟିଯାକ ଥିଲେ ମାୟା ପକ୍ଷୀ । ରାଜା ଗୋଟିଏ ପକ୍ଷୀ ପଛରେ ଓ ରାଣୀ ଆଉ ଗୋଟିକର ପଛରେ ଗୋଡ଼ାଇ ଗୋଡ଼ାଇ ପରସ୍ପର ବିପରୀତ ଦିଗରେ ଜଣେ ପଶ୍ଚିମ ଓ ଅନ୍ୟ ଜଣେ ପୂର୍ବକୁ ଚାଲିଗଲେ । କେତେଦୂର ଯିବାପରେ ରାଜା ଆଉ ପକ୍ଷୀକୁ ଦେଖି ନପାରି ଅନୁସରଣ ନିଷ୍ଫଳ ମଣି ଫେରି ଆସି ପ୍ରିୟାଙ୍କୁ ଅନ୍ୱେଷଣ କରିବାରେ ବ୍ୟାପୃତ ହେଲେ ।

ଏକାଦଶ ସର୍ଗ— ରାଜା ନଳ ଏହି ବନକୁ ମୃଗୟାର୍ଥେ ଆସିଥିଲେହେଁ ଏବେ ବାଟବଣା ହେଉଛନ୍ତି ଭାବି ବିକଳ ହୋଇ ବିଳାପ କରିବାକୁ ଲାଗିଲେ ।

ରାଣୀ ଦମୟନ୍ତୀ ମଧ୍ୟ ବନରେ ବାଟବଣା ହୋଇ ଓ ପ୍ରିୟତମଙ୍କ ସାକ୍ଷାତ ନ ପାଇ କ୍ରନ୍ଦନ କରିବାକୁ ଲାଗିଲେ । ବନ ମଧ୍ୟରେ କେଉଁଠାରେ ସିଂହ ଗର୍ଜନ ଶୁଭୁଛି, କେଉଁଠି ଅଜଗର ମୁଖରେ ପଡ଼ି ଶୃଗାଳ ଚିତ୍କାର କରୁଛି, ଏ ସବୁ ଦେଖି ଦେଖି ସେ ଭୀତ ହେଲେ । ବାଟରେ ଯାଉ ଯାଉ ପଥରୋଧି ଏକ ଅଜଗର ବିଶାଳ କାୟା ବିସ୍ତାର କରି ପଡ଼ିଥିଲା । ବୃକ୍ଷଲତା ମଧ୍ୟରେ ତାର ଦୀର୍ଘ ଶରୀର ଜଣାପଡୁ ନଥିବାରୁ ଦମୟନ୍ତୀ ତାକୁ ସର୍ପ ବୋଲି ଜାଣି ନପାରି ତା ପାଖକୁ ଯାଆନ୍ତେ, ସେହି ସର୍ପର ଖୋଲା ମୁହଁକୁ ଗୁମ୍ଫା ଭାବି ଓ ତହିଁରେ ବିଶ୍ରାମ ନେବା ମାନସରେ ତା'ରି ମଧ୍ୟରେ ପ୍ରବେଶ କଲେ ।

ଏହି ସମୟରେ ଶ୍ୱାନ ଦ୍ୱାରା ବିତ୍ରସ୍ତ, ବ୍ୟାଧ ଶରାହତ, ଶୋଣିତ ଲାଞ୍ଛିତ ଏକ ମୃଗ ସର୍ପର ମୁଖଗହ୍ୱରରେ ପ୍ରବେଶ କଲା । ସେହି ମୃଗକୁ ଅନୁସରଣ କରୁଥିବା ବ୍ୟାଧ ସର୍ପ ପ୍ରତି ତୀକ୍ଷ୍ଣ ବାଣ ନିକ୍ଷେପ କଲା । ''ହା ନାଥ' ମୋତେ ଛାଡ଼ି କାହିଁ ଗଲ, ଆଉ କି ଦେଖିବି ନାହିଁ' କହି କହି ଉରଗ ମୁଖଗହ୍ୱରେ ଭ୍ରମୁଥିବା କଣ୍ଠତଟଗତ ହେବା ପୂର୍ବରୁ ବ୍ୟାଧ ଦମୟନ୍ତୀଙ୍କୁ ପରଶୁ-ଧାରରେ ଦି'ଗଡ଼ କରି ସର୍ପକୁ କାଟି ପକାଇ ତାଙ୍କୁ ଉଦ୍ଧାର କଲା ।

Digitized by srujanika@gmail.com

ଦ୍ୱାଦଶ ସର୍ଗ— ସର୍ପ ମୁଖରୁ ଚେତନାହୀନା ଦମୟନ୍ତୀଙ୍କୁ ଉଦ୍ଧାର କଲେହେଁ ଶବର ତାଙ୍କୁ ମୃତା ମନେକରି ମନରେ ଦୁଃଖିତ ହୋଇ ତାଙ୍କ ମୁହଁରେ ଜଳ ସିଞ୍ଚି ମୟୂରପୁଚ୍ଛ ବିଞ୍ଚଣାରେ ବିଞ୍ଚି ବିଷହରଣ ପାଇଁ ମନ୍ତ୍ରରେ ଝାଡ଼ି ଥକିଗଲା ଓ ସେ ସ୍ଥାନ ଛାଡ଼ି ଗ୍ଲଲିଗଲା । ଯଜ୍ଞ କାଷ୍ଠ ସଂଗ୍ରହ ପାଇଁ ଆସିଥିବା ଜଣେ ତାପସ ତାଙ୍କର ରୁଚିର କାନ୍ତିରୁ ଅନୁମାନରେ ସେ ମୂର୍ଚ୍ଛିତା ଜାଣି ଅଭିମନ୍ତ୍ରିତ ଜଳ ତାଙ୍କ ଉପରେ ସିଞ୍ଚନ୍ତେ ଭୈମୀ ଚେତନା ପାଇ ଉଠିଲେ ଓ ମୁନିଙ୍କ ଚରଣରେ ପ୍ରଣାମ କଲେ । ମୁନି କହିଲେ "ମୁଁ ତୁମର ଦୁଃଖ କଥା ଯୋଗବଳରେ ଜାଣିପାରିଛି । ନିକଟରେ ମୋର ଆଶ୍ରମ । ସେଠାରେ ରହ ।" ମାତ୍ର ଭୀମଜା ଭାଗ୍ୟ ବିପର୍ଯ୍ୟୟ ହେତୁ ଏପରି ଘଟିବା ଜାଣି ମୁନିଙ୍କୁ ପ୍ରଣାମ କରି ବନକୁ ଗ୍ଲଲିଗଲେ । ନଳଙ୍କ କଥା ଭାଳି ଭାଳି ବିଳାପ କରିବାକୁ ଲାଗିଲେ ।

ରାତିରେ ହାତୀପଲ ଆସି ସେହି ବନରେ ପଥିକମାନଙ୍କୁ ଦଳିଚକଟି ମାରି ଗ୍ଲଲି-ଗଲେ । ଭାଗ୍ୟବଳରେ ଯେଉଁ କେତେ ଜଣ ପଥିକ ବଞ୍ଚିଥିଲେ, ସକଳେ ତାଙ୍କୁ ଦେଖି ପ୍ରଣାମ କଲେ । ନଳଙ୍କ ଭେଟ ନ ପାଇ ବନରୁ ଫେରୁଥିବା ସୁବାହୁ ଦମୟନ୍ତୀଙ୍କୁ ଦେଖି ତାଙ୍କୁ ରାଜନବରକୁ ନେଲେ ଓ ରାଜମାତା ତାଙ୍କୁ ପାଳନ କଲେ । ଚର ମୁଖରୁ ଦମୟନ୍ତୀଙ୍କ ବୃତ୍ତାନ୍ତ ଶୁଣି ରାଜା ଭୀମ ତାଙ୍କୁ ନେଇ ବିଦର୍ଭ ରାଜନ୍ତଃପୁରେ ରଖି ନଳଙ୍କ ଅନ୍ୱେଷଣରେ ଗ୍ଲୌଦିଗକୁ ଚର ପେଷିଲେ ।

ତ୍ରୟୋଦଶ ସର୍ଗ— ବନ ମଧ୍ୟରେ ଅଗ୍ନି ଲାଗିବା ଦେଖି ଓ ସେ ଅଗ୍ନିରେ ପ୍ରାଣପ୍ରିୟା ଦଗ୍ଧ ହୋଇଥିବ ଭାବି ନଳ ଅତ୍ୟନ୍ତ ଦୁଃଖରେ ବୁଲୁବୁଲୁ ସେ ଧୂମାୟିତ ବନଭୂମିରେ ଗୋଟିଏ ମନୁଷ୍ୟ କଣ୍ଠ ଶୁଣିଲେ, "ମୋତେ ଏ ଅଗ୍ନିରୁ ରକ୍ଷାକର ।" ନଳ ସେଠାରେ ପହଞ୍ଚି ଦେଖିଲେ ଗୋଟିଏ ସର୍ପ ପଡ଼ିଛି । ସେ କହିଲା "ବ୍ରହ୍ମାଙ୍କ ପୁତ୍ର ନାରଦଙ୍କ ଅଭିଶାପରୁ ମୋର ଏପରି ଦଶା ହୋଇଛି । ନଳଙ୍କ କରସ୍ପର୍ଶ ପାଇଲେ ମୋର ଶାପମୋଚନ ହେବ । ମୋର ନାମ କର୍କୋଟକ । ମୋତେ ଏଠାରୁ ନେଇ ଦଶପାଦ ଗଲାପରେ ମୁଁ ତୁମର ମଙ୍ଗଳସାଧନ କରିବି ।" ରାଜା ସେପରି କରି ଦଶପାଦ ଗଲାପରେ ସର୍ପଟି ତାଙ୍କର ଦକ୍ଷିଣ କରରେ ଦଂଶନ କଲା ଓ ରାଜା କଳା ପଡ଼ିଗଲେ । ତାଙ୍କର ଶରୀର ବିକୃତ ହେଲା । ନଳ ଏଥିରେ ବିମନା ହେବା ଦେଖି ସର୍ପ କହିଲା, "ମୁଁ ତୁମର ମଙ୍ଗଳ କରିଛି । ତୁମ ପ୍ରତି କପଟାଚରଣ କରି ଯିଏ ତୁମକୁ କଷ୍ଟ ଦେବାପାଇଁ ତୁମ ଦେହରେ ରହିଛି, ମୋର ବିଷଜ୍ୱାଳାରେ ସେ ଦଗ୍ଧ ହେବ । ତୁମର ଏ ବିକୃତ ରୂପକୁ କେହି ଚିହ୍ନି ପାରିବେ ନାହିଁ । ଏବେ ଯାଇ ଅଯୋଧ୍ୟାର ରାଜା ଋତୁପର୍ଣ୍ଣଙ୍କ ପାଖରେ ସାରଥୀ କାର୍ଯ୍ୟରେ ନିଯୁକ୍ତ ହେବ । କିଛିଦିନ ପରେ ରାଣୀଙ୍କ ସଙ୍ଗେ ମିଳନ ହେବ ।" ଦୁଇଟି ଦିବ୍ୟ ବସ୍ତ୍ର ଦେଇ କହିଲା "ଏହାକୁ ଯେତେବେଳେ ପିନ୍ଧିଲେ ନିଜର ପୂର୍ବରୂପ ଫେରିପାଇବ ।" ସର୍ପ ବାକ୍ୟରେ ଆଶ୍ୱସ୍ତ ହୋଇ ରାଜା ଅଯୋଧ୍ୟାକୁ ଗଲେ ।

Digitized by srujanika@gmail.com

ଚତୁର୍ଦ୍ଦଶ ସର୍ଗ— ନଳ ଅଯୋଧ୍ୟାରେ ପହଞ୍ଚି ବାହୁକ ନାମରେ ପରିଚୟ ଦେଲେ । ତାଙ୍କ ଦେହରେ ଥିବା କଳି କର୍କୋଟକ ବିଷରେ ଜର୍ଜରିତ ହେଲା । ଛଦ୍ମବେଶୀ ନଳଙ୍କୁ ନେଇ ରାଜା ଋତୁପର୍ଣ୍ଣ ମନ୍ତ୍ରଣାଦାତା କଲେ । ନଳଙ୍କ ମନରେ ବେଳୁବେଳ ଦମୟନ୍ତୀଙ୍କ ବିରହ ଜାଗ୍ରତ ହେଲା । ବିଦର୍ଭର ଜଣେ ଚର ସୁବାହୁଙ୍କୁ ନଳ ସନ୍ଦେହ କରି ଏକାନ୍ତରେ ଦମୟନ୍ତୀଙ୍କ ବାର୍ତ୍ତା ଦେଲା ଓ ତାଙ୍କଠାରୁ ଉତ୍ତର ପାଇ ଦମୟନ୍ତୀଙ୍କୁ ଜଣାଇଲା । ନଳଙ୍କ ବିରୂପ ସମ୍ବାଦରେ ରାଣୀ ବ୍ୟଥିତା ହେଲେ । ଅନ୍ୟ ଜଣେ ଦୂତ ମଧ୍ୟ ଯାଇ ନଳଙ୍କୁ ସାକ୍ଷାତ କରି ତାଙ୍କ ଅତୀତ ବୃତ୍ତାନ୍ତ ଜାଣିଲା । ଭୈମୀ ଦୂତମୁଖରୁ ନଳଚରିତ ଅବଗତ ହେବାରୁ ତାଙ୍କର ଚିତ୍ତ ଖେଦରେ ବୁଡ଼ିଗଲା ।

ପଞ୍ଚଦଶ ସର୍ଗ— ପ୍ରଭାତରେ ରାଜା ଋତୁପର୍ଣ୍ଣ ସଭା-ମଣ୍ଡପରେ ବସିଥିଲାବେଳେ ଜଣେ ଚର ଆସି ତାଙ୍କ ପାଖରେ ନଳଙ୍କ ବନଗମନ ଓ ଦମୟନ୍ତୀ ବିଦର୍ଭ ରାଜନବରରେ ରହି ସ୍ୱାମୀ ବିରହରେ ଜୀବନ ଝାସିବା ପଣ କରିଥିବା ବିଷୟ ବର୍ଣ୍ଣନା କଲା । ରାଜା ଋତୁପର୍ଣ୍ଣ ସୁବାହୁଙ୍କୁ ଡାକି କୁଣ୍ଡିନ ଯିବା କଥା କହିଲେ । ଏକାଦିନେ ବହୁ ଯୋଜନ ପଥ ଅତିକ୍ରମି ଯିବା ବିଦ୍ୟା କେବଳ ନଳଙ୍କୁ ଜଣାଥିଲା । ସାରଥୀ ସାଜି ନଳ ଋତୁପର୍ଣ୍ଣଙ୍କୁ ରଥରେ ବସାଇ ଯିବାବେଳେ ପଥରେ ତାଙ୍କ ଦେହରୁ କଳି ବାହାରି ଆପଣାର ପରିଚୟ ଦେଲା ଏବଂ ତା'ରି ଯୋଗୁଁ ନଳଙ୍କର କଷଣ କଥା କହି ତାର ଅପରାଧ ପାଇଁ ଦଣ୍ଡ ଦେବାକୁ କହିଲା । ନଳ ତାକୁ ଅଭୟ ଦେବାରୁ ସେ ସ୍ୱର୍ଗକୁ ଚାଲିଗଲା । ସନ୍ଧ୍ୟାବେଳକୁ ରଥ ଯାଇ କୁଣ୍ଡିନ ନଗ୍ରରେ ପହଞ୍ଚିଗଲା । କୁଣ୍ଡିନ ନଗ୍ରକୁ ଋତୁପର୍ଣ୍ଣଙ୍କ ଆଗମନ ଜାଣି ରାଜା ଭୀମ ତାଙ୍କୁ ପାଛୋଟି ଆଣିଲେ ।

ରଥ ଶବ୍ଦ ଶ୍ରବଣରେ ଦମୟନ୍ତୀ ସ୍ତବ୍ଧ ହୋଇଥିଲେ । ତାଙ୍କର ବାମନେତ୍ର ଘନଘନ ସ୍ଫୁରଣ ହୋଇ ଶୁଭ ଶକୁନମାନ ଦେଖାଗଲା । ନଳଙ୍କ ପାଖକୁ ସଖୀ କେଶିନୀକୁ ପ୍ରେରଣ କରି ତାକୁ ନଳଙ୍କୁ ଚିହ୍ନିବା ପାଇଁ ଥିବା ତାଙ୍କ ବିଶିଷ୍ଟ ଗୁଣ କଥା ବତାଇଦେଲେ । ମାତ୍ର ବିରୂପ ନଳଙ୍କୁ ଚିହ୍ନି ନ ପାରି କେଶିନୀ ଆସି କହିଲା, ''ନଳଙ୍କ ପାଇଁ ଯେଉଁ ଲକ୍ଷଣ ନିର୍ଦ୍ଦେଶ କରିଥିଲ, ସେପରି କିଛି ପାଇଲି ନାହିଁ ।'' ଏହା ଶୁଣି ଦମୟନ୍ତୀ କହିଲେ— କାଲି ପ୍ରଭାତରୁ ଚିତାରେ ମୁଁ ଝାସଦେବି ।

ରାଣୀଙ୍କ ଆଜ୍ଞାମତେ ଚିତା ପ୍ରସ୍ତୁତ ହେଲା । ବାହୁକ ସହିତ ନଗରବାସୀ ସମସ୍ତେ ଆସି ଅଗ୍ନିର ଲେଲିହାନ ଶିଖା ଦେଖିବାରେ ଲାଗିଲେ । ରାଣୀ ଅଗ୍ନିଙ୍କୁ ପ୍ରଦକ୍ଷିଣ କରିବା ସମୟରେ ଶୂନ୍ୟବାଣୀ ହେଲା,

''ଏ କି ସାହସ ତୋ ନଳ ପ୍ରେୟସି !
ଝାସୁଛୁ ଅନଳେ କେହ୍ନେ ଭରସି,

Digitized by srujanika@gmail.com

ନ କର ନ କର ଏତେ ଅକାର୍ଯ୍ୟ
ଦେଖାଦେବେ ଆଜି ନୈଷଧ-ଆର୍ଯ୍ୟ,
ଅବିଳମ୍ବେ ରାଜସୁତେ !
ଶୋକ-ଶଲ୍ୟ ଆଉ ନ ରହିବ ଚିତେ
ଦେଖିବୁ ଉତ୍‌ଫୁଲ୍ଲ ନେତ୍ରେ ।''

ଆକାଶବାଣୀ ଶୁଣିବାପରେ ରାଜା ନଳ କର୍କୋଟକ ପ୍ରଦତ୍ତ ଦିବ୍ୟ ବସନ ପିନ୍ଧି ଦମୟନ୍ତୀଙ୍କ ଆଗରେ ଉଭା ହେଲେ । ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ପ୍ରେୟସୀଙ୍କ ସହିତ ମିଳିତ ହୋଇ ରାଜା ନଳ ବିଦର୍ଭପୁରେ ବହୁଦିନ ସୁଖରେ ବାସ କଲେ । ଏହାପରେ ତାହାଙ୍କ ନିଜ ରାଜ୍ୟର ମନ୍ତ୍ରୀମାନେ ଜଣ ଜଣ କରି ଆସି ତାଙ୍କୁ ସାକ୍ଷାତ କଲେ ଏବଂ ସେମାନେ ଆଗେ ଆଗେ ଯାଇ ମାର୍ଗପ୍ରଦର୍ଶନ କରି ସ୍ୱଦେଶ ନିଷଧରାଜ୍ୟକୁ ବାହୁଡ଼ାଇ ନେଲେ । ନିଜ ରାଜ୍ୟରେ ନଳ ସୁଖରେ ପ୍ରଜାପାଳନ କଲେ । ବୃଦ୍ଧ ମନ୍ତ୍ରୀଙ୍କ ସହିତ ଆସି ପୁଷ୍କର ଆପଣା ଅପରାଧ ସ୍ୱୀକାର କରି କ୍ଷମାଭିକ୍ଷା କଲା । କବି କୃଷ୍ଣାନନ୍ଦ ପରିଚୟ ଦେଇ ଲେଖିଛନ୍ତି,

''ନୃସିଂହ ମୂରତି ବୈକୁଣ୍ଠ ଉରେ
ଯାବତ ଇନ୍ଦିରା ଅଛନ୍ତି ସ୍ଥିରେ
ହର ଜଟାଜୁଟେ ସୁର-ସରିତ
ଅବସ୍ଥାନ କରୁଛନ୍ତି ଯାବତ
କପିଞ୍ଜଳ—କୁଳ—ଚନ୍ଦ୍ର
କୃଷ୍ଣାନନ୍ଦ କବି— କାବ୍ୟ ସୁଧାବୃନ୍ଦେ
ବିତରୁ ଆନନ୍ଦ ସାନ୍ଦ୍ର ।''

କବି କୃଷ୍ଣାନନ୍ଦ କୃତ ବୋଲି ଉଲ୍ଲେଖ ନ କରିଥିଲେ ଏହି କାବ୍ୟର ଭାଷାଗତ ମୌଳିକତା ଏପରି ଯେ ଏହା ଏକ ଅନୁବାଦ ବୋଲି ଜଣାପଡ଼ନ୍ତା ନାହିଁ । ଏଣୁ ଅନୁବାଦକ ପଣ୍ଡିତ ବାନାମ୍ବରଙ୍କ ପ୍ରତିଭାର ପଟାନ୍ତର ନାହିଁ ବୋଲି କହିବାକୁ ହେବ ।

— o —

Digitized by srujanika@gmail.com

# 'କୋଣାର୍କେ'ର ଟୀକାକାର

ପଣ୍ଡିତ ନୀଳକଣ୍ଠ ଦାସଙ୍କ ଲିଖିତ କାବ୍ୟଯୁଗ୍ମ 'ରାମଚଣ୍ଡୀଠାରେ ରାତି ଓ ସକାଳ' ଏବଂ 'ମାୟାଦେବୀ' । ୧୯୧୭ ମସିହା ବର୍ଷାକାଳରେ ଆଠଗଡ଼ଠାରୁ ହାତୀରେ ଚଢ଼ି ହିନ୍ଦୋଳ ଯିବା ବାଟରେ ବର୍ଷା ହେଲା ଓ ରାତିରେ ଢେଙ୍କାନାଳ ରାଜ୍ୟ ସୀମାରେ ଥିବା 'ଭାଆପୁର' ଡାକବଙ୍ଗଳାରେ ରାତ୍ରିଯାପନ କଲେ । ସେଠାରେ ଅନୁଗୁଳ ରାଜାଙ୍କ ଭାଟବଂଶର ଜଣେ ଭିକ୍ଷମାଗି ଆସିଥିଲା । ତା'ର ଘରେ ଥିବା ବୀଣାଟିକୁ ସେ ଦଶରା ଦିନ ପୂଜା କରେ ଓ ରାଜାଙ୍କ ବଂଶଧରଙ୍କ ପାଖକୁ ଯାଏ । ସେଇ ଭାଟ ସହିତ କଥାବାର୍ତ୍ତାର ଫଳଶ୍ରୁତି ହେଉଛି 'ମାୟାଦେବୀ' କାବ୍ୟର ପୀଠିକା । ଇଂରେଜ କବି ସ୍କଟ୍ ଏଇପରି ଗୋଟିଏ ଭାଟକୁ ଦେଖି ଲେଖିଥିଲେ 'ଶେଷ ବନ୍ଦୀ ଭାରତୀ' (Lay of the last Minstrel) । ସେଇ ଭାଟକଥା ସ୍ମରଣ କରି 'ମାୟାଦେବୀ' କାବ୍ୟ ସପ୍ତାହକରେ ଶେଷ କରି ପକାଇଲେ ।

ପୁଣି ସେହି ୧୯୧୭ ମସିହାର କୁମାରପୂର୍ଣ୍ଣିମାରେ 'ସତ୍ୟବାଦୀ ବିହାର'ର ଛାତ୍ରମାନଙ୍କୁ ସଙ୍ଗରେ ନେଇ ଶରତ ଜ୍ୟୋତ୍ସ୍ନାରେ କୋଣାର୍କ ଦର୍ଶନ କରିବାକୁ ଯାଇ ବର୍ଷାଯୋଗୁ ବ୍ୟର୍ଥ ହୋଇ ଫେରିଆସି ଚାରି ମାଇଲ ଦୂର ରାମଚଣ୍ଡୀ ମନ୍ଦିରରେ ରାତ୍ରିଯାପନ କଲେ । ତରୁଣ ଶିକ୍ଷକ କବି ସୁପ୍ତ କିଶୋର ଛାତ୍ରମାନଙ୍କର ସ୍ୱପ୍ନ ପର୍ଯ୍ୟାୟକୁ ବିନିଦ୍ର ରହି 'ରାମଚଣ୍ଡୀଠାରେ ରାତି'ରେ ବର୍ଣ୍ଣନା କଲେ । ସକାଳ ହେବାରୁ ଶିକ୍ଷକ ଓ ଛାତ୍ରଗଣ ସତୃଷ୍ଣ ନୟନରେ କୋଣାର୍କକୁ ଚାହିଁ ଚାହିଁ ସତ୍ୟବାଦୀ ଫେରିଛନ୍ତି । ବକୁଳ ବନର ଛାଇ ତଳେ କବି-କୁଳପତି କିଶୋରମାନଙ୍କ ଜିଜ୍ଞାସାର ଉତ୍ତର ଛଳରେ ଅତୀତ ଇତିହାସର ଦ୍ୱାର ଉଦ୍‌ଘାଟନ କରିବା ପାଇଁ କହି ଚାଲିଛନ୍ତି କୋଣାର୍କକୁ କେନ୍ଦ୍ର କରି ଏ ଦେଶର ଗରିମାମୟ ଇତିବୃତ୍ତ ।

ଡକ୍ଟର ମାୟାଧର ମାନସିଂହଙ୍କ ଭୂମିକା, ସତ୍ୟବାଦୀ ବିଦ୍ୟାଳୟର ଖ୍ୟାତନାମା ପଣ୍ଡିତ ବାସୁଦେବ ମହାପାତ୍ରଙ୍କ ଗ୍ରନ୍ଥ ପ୍ରବେଶ ଓ ପାଦଟୀକା ସହିତ ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ଟୀକାଦ୍ୱାରା ଏ ଗ୍ରନ୍ଥ ମଣ୍ଡିତ ହୋଇଛି । ପଣ୍ଡିତ ଆଚାର୍ଯ୍ୟ ପ୍ରାଚୀନ କାବ୍ୟ ଓ ଶାସ୍ତ୍ରମାନଙ୍କର ଟୀକା କରିଥିଲେ । ମାତ୍ର ସେ ସବୁ ଥିଲା କାବ୍ୟକୁଶଳତାର ସରଳ ଅର୍ଥଗତ ଭାବର ପରାକାଷ୍ଠା । କିନ୍ତୁ ଇଂରେଜୀ କାବ୍ୟ ପ୍ରେରଣାରେ ରଚିତ ପଣ୍ଡିତ ନୀଳକଣ୍ଠଙ୍କ ଆଧୁନିକ ରଚିସମ୍ପନ୍ନ ଓ ପାଶ୍ଚାତ୍ୟ ପ୍ରଭାବିତ ପ୍ରତୀକ ଓ ରୂପକଳ୍ପର ସଙ୍ଗତିସୁଲଭ ବ୍ୟାଖ୍ୟା ଜଣେ ସଂସ୍କୃତ ପଣ୍ଡିତଙ୍କ ପକ୍ଷେ ଆୟାସସାପେକ୍ଷ ହେଲେ ବି ପଣ୍ଡିତ ବାନାମ୍ବରଙ୍କ ହସ୍ତରେ

Digitized by srujanika@gmail.com

ଦୁର୍ବୋଧ୍ୟ ପଦ ସବୁ ସୁବୋଧ୍ୟ ଓ ସରଳ ହୋଇପାରିଛି । ସେ ମଧ୍ୟ ସ୍ଥଳବିଶେଷରେ ଇଂରେଜୀ ଉପମାର ତୁଳନାତ୍ମକ ବ୍ୟାଖ୍ୟା କରିଛନ୍ତି । ତାହା ସହିତ ଆଞ୍ଚଳିକ ଦୃଶ୍ୟମାନଙ୍କ ପରିଚୟ ପ୍ରଦାନ କରି ପାଠକ ମନରେ ସନ୍ତୋଷ ଦେଇ ତାର ଜିଜ୍ଞାସାକୁ ପ୍ରଶମିତ କରିବାରେ ସହାୟକ ହୋଇଛନ୍ତି । ଉଦାହରଣସ୍ୱରୂପ— ''ଉରଗ-କୁଟିଳ-ତଟିନୀ ଭରା ଆସାର-ନୀରେ''— କୋଣାର୍କ ବାଲିପାଟରେ ବର୍ଷା ହୋଇଗଲେ ସାପ ପରି ବଙ୍କା ଛୋଟ ଧାର ସବୁ ବହିଯିବା— ଦୃଶ୍ୟଟି ଦେଖି ନଥିଲେ ବୁଝାଇବା ସହଜ ହୁଅନ୍ତା ନାହିଁ । ସେହିପରି,

''ସମୀର ହିଲ୍ଲୋଳ ସାଗର କୂଳେ ଉଠନ୍ତା ଫୁଲି,
ମୃଦୁଭଙ୍ଗେ ବେଣୀ-କୁଞ୍ଚନେ ଆସୁଥାଆନ୍ତା ମାଡ଼ି ।
ଲବଣି ସୋହାଗେ ଉଗାରି ଧୀର-କୁଟିଳ-ଗାରେ
ଫେନ ସୀମା କାଟି ଦିଅନ୍ତା ବେଳା-ଚିକ୍କଣ-ଧାରେ ।''

ଲହରୀ ଭାଙ୍ଗିଲା ପରେ ଲହୁଣୀ ପରି ଧଳା ଫେଣ ଚିକ୍କଣ ଓଦା ବାଲି ଉପରେ ସୁନ୍ଦର ବଙ୍କା ଗାର କାଟିଲା ପରି ମାଡ଼ିଯାଏ ।

ପଣ୍ଡିତ ନୀଳକଣ୍ଠଙ୍କ କାବ୍ୟରେ ଥିବା ଐତିହାସିକ ସଂକେତକୁ ପଣ୍ଡିତ ଆଗ୍ନେର୍ଯ୍ୟ ବିଶଦ ବ୍ୟାଖ୍ୟା କରିଛନ୍ତି ।

''ତାମ୍ରଲିପ୍ତି-ପୁର ବିଦ୍ରୋହେ କେହୁ ଏକାକୀ ବୀର,
ବାଣିଜ୍ୟ-ବୋଇତେ ଆଦରି, ହେଲେ ଅରାତି ଚର,
ଇଙ୍ଗିତ-ସ୍ଥଳନେ ବଣିକେ ତରବାରୀ ଆସ୍ଫାଳି,
କୈବର୍ତ୍ତ କୀରତି ଟେକିଲେ ଜଳଦସ୍ୟୁ ସଂହାରି ।''
ବିଦ୍ରୋହ ଭଜିଲା ନିଉନ, ତହିଁ କୈବର୍ତ୍ତେ ରହି,
ଉତ୍ତର-ଉତ୍କଳ-ପତନେ ଦେଲେ ପୁର ଫିଟାଇ ।''

ତାମ୍ରଲିପ୍ତିରେ ବାରମ୍ବାର ବିଦ୍ରୋହ ଓ ଜଳଦସ୍ୟୁ ଅତ୍ୟାଚାର ହେଉଥିଲା । ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଗୋଟିଏ ବିଦ୍ରୋହ ଦମନ କରି ଓଡ଼ିଶାର କେତେକ କୈବର୍ତ୍ତ(ନାବିକ) ତାମ୍ରଲିପ୍ତିରେ ନୂତନ ନଗର ବସାଇଥିଲେ । ସେହି କୈବର୍ତ୍ତଙ୍କ ବଂଶଧରମାନେ ଏବେ 'ମାହିଷ୍ୟ' ନାମରେ ପରିଚିତ । ସେମାନଙ୍କ ଅଦ୍ୟାବଧି 'ଜାନା' (ଜେନା), 'ମାଇତି' (ମହାନ୍ତି) ଆଦି ସଂଜ୍ଞା ଅଛି ।

ଆଉଥରେ ଶତ୍ରୁର ସନ୍ଧିପ୍ରାର୍ଥୀ ଦୂତକୁ କୌଣସି ରାଜାଙ୍କର ସାମନ୍ତ-ସେନାପତି ଅପମାନ ଦେଇ ସେଇ ରାଜାଙ୍କ ଆଜ୍ଞାରେ ମୁଣ୍ଡକାଟ ଶାସ୍ତି ପାଇଲେ । ସେ ଦୂତ ଯାଇ ସେନାପତିର ମୃତ୍ୟୁ ସମ୍ବାଦ ଜଣାଇବାରୁ ଶତ୍ରୁମାନେ ସନ୍ଧିପ୍ରସ୍ତାବ ଛାଡ଼ି ଆକ୍ରମଣ କଲେ । ସେନାନାୟକ ଅଭାବରେ ଯୁଦ୍ଧ ଉଦ୍ୟମରେ ବାଧା ଘଟିଲେ ସୁଦ୍ଧା, ରାଜା ନିଜେ ମରଣାନ୍ତ ଯୁଦ୍ଧ କରି ଜିଣିଲେ । ଏହି ପୃଷ୍ଠଭୂମି ଜାଣିବା ପରେ ପାଠକର ବୋଧ୍ୟ ହୁଏ—

Digitized by srujanika@gmail.com

''ଦୂତେ ଅପମାନ ଦେଖି କେ, ବହୁ ଅ ଧେ,
ପରାଣେ ଦଣ୍ଡିଲେ ସାମନ୍ତେ, ନିଜ ବାହା ଛିଣ୍ଡାଇ;
ସେହୁ ଦୂତ ଏହି ସନ୍ଦେଶ ଦେଲା ଶତ୍ରୁ ଶିବିରେ,
ମିତ୍ରତା ବରଜି ସଇନି ଆସି ବେଢ଼ିଲେ ଖରେ ।
ଚଣ୍ଡ ରଣ-ମଦେ ଉଠିଲେ ତହୁଁ ନୃପ-କେଶରୀ,
ଛତ୍ରଭଙ୍ଗ-ଭୟୁ ଅଳପ ମାତ୍ର ସେନା ଉଦ୍ଧାରି,
ତୀବ୍ର ତରବାରୀ ଆସ୍ଫାଳି, ଆଗେ ପଶିଲେ ରଣେ,
ବିଜୟ ବାରତା ଶୁଣିଲେ ମାତ୍ର ମରଣ କ୍ଷଣେ;
କହିଲେ, ''ଉତ୍କଳ-ଜନନି, ସୁଖେ ମରୁଛି ମୁହିଁ
ବୀରର ବିବେକେ ଶୋହୁ ଗୋ ଚିର ତୋର ଏ ମହୀ ।''

ପଣ୍ଡିତ ନୀଳକଣ୍ଠଙ୍କ ସୂଚନାଗୁଡ଼ିକୁ ପଣ୍ଡିତ ଆଗ୍ନର୍ଯ୍ୟ ବିସ୍ତାରିତ କରିଛନ୍ତି । 'ମାୟାଦେବୀ' ପ୍ରଥମ ସର୍ଗରେ ସୁନ୍ଦରୀ ମଉଡ଼ ଜମ୍ମୁଜେମାଙ୍କର କନ୍ଦୁକକ୍ରୀଡ଼ା ପ୍ରସଙ୍ଗରେ—

''ବିପିନ-ବିହାରେ କନ୍ଦୁକ ଫୋପାଡ଼ି
ଶଇଳ-ସାଗରେ ଖେଳଇ ବାଳା
ରାଜହଂସମାଳା ନଗ୍ନଇ ତରଙ୍ଗ
ଲେଉଟଇ, ଭେଟି ପୁଳିନ-ଶିଳା ।

ଏହି ପଂକ୍ତିଗୁଡ଼ିକର ବ୍ୟାଖ୍ୟା କରି ପଣ୍ଡିତ ଆଗ୍ନର୍ଯ୍ୟ କହନ୍ତି, ''ପର୍ବତ ତଳେ ଛୋଟ ହ୍ରଦରେ ରାଜହଂସ ପହଁରୁଥା'ନ୍ତି । ପେଣ୍ଡୁ ଫିଙ୍ଗିବାରୁ ତରଙ୍ଗ ଉଠେ । ସେଥିରେ ରାଜହଂସ ଦୋହଲନ୍ତି ଓ ସେ ତରଙ୍ଗ କୂଳ ପଥରରେ ବାଜି ଫେରେ ।''

ପ୍ରଥମ ସର୍ଗରେ ବ୍ୟବହୃତ ''ପଲ୍ଲବ ଦଶାର୍ଣ୍ଣ ଗଉଡ଼ କଟକେ
ଉଠେ ଚତୁରଙ୍ଗ-କୀରତି-କଳା''ର ବ୍ୟାଖ୍ୟା ।''

ଚତୁରଙ୍ଗ-ହସ୍ତୀ, ଅଶ୍ୱ, ରଥ, ପଦାତି— ଏଇ ଗ୍ନରି ସେନାଙ୍କର କୀରତି ଓ ସାହିତ୍ୟ (କାବ୍ୟାଦି) ସଙ୍ଗୀତ (ନୃତ୍ୟ, ଗୀତ, ନାଟ୍ୟ), ଚିତ୍ର, ସ୍ଥାପତ୍ୟ ଏଇ ଗ୍ନରି କଳା । ସୀମାନ୍ତ ଦେଶମାନଙ୍କରେ ସେନା ସଜ୍ଜିତ ଥିବାରୁ ଦେଶରେ ଶାନ୍ତି ଥିଲା । ପୁଣି ସୀମାନ୍ତ ପ୍ରଦେଶମାନଙ୍କରେ ମଧ୍ୟ ଓଡ଼ିଶାର ଚତୁରଙ୍ଗ କଳା ପ୍ରଭାବ ବିସ୍ତାର କରୁଥିଲା— ଏ ଦୁଇ ଅର୍ଥ ଏଠାରେ ଅଛି ।

''ମଣୁଥିଲା ଥରେ ପଶିବ ଯବନ
ନୀଳାଚଳ-ନାଥେ ହୋଇ ଭଗାରି;
ଦୂର-ସୁରଧୁନୀ- ପୁଳିନେ ରାଜନ
ପେଶିଲେ ସଂଦେଶ, ଗଲା ସେ ଡରି । ୧ । ୧୭୦ (ମାୟାଦେବୀ)

Digitized by srujanika@gmail.com

ଏଠାରେ ସ୍ୱପ୍ନେଶ୍ୱର ଶିଳାଲିପିର ସୂଚନା ଦେଇ ପଣ୍ଡିତ ଆଗ୍ରର୍ଯ୍ୟ କହନ୍ତି— ତୃତୀୟ ଅନଙ୍ଗଭୀମ ବଙ୍ଗର ମୁସଲମାନ ସୁଲତାନଙ୍କୁ ଜିଣିଥିଲେ । ପୁଣି ତାଙ୍କ ବୃଦ୍ଧ ପିତା ରାଜରାଜ ଦେବଙ୍କ ଅମଳରେ ମୁସଲମାନମାନେ ବଙ୍ଗଳାରୁ ଆସୁ ଆସୁ ଫେରିଯାଇଥିଲେ ।

''ପରବତ-ତୂଳ ସହଇ ଝଟିକା, ଦରୀମୁଖେ ଉଠେ ତଟିନୀ ଫୁଲି,
ସେହି ନଦୀ ପୁଣି ଶିଶୁ ପରବତେ ସେହି ସେ ସଲିଳେ ଦିଅଇ ବୁରି ।'' ୨।୮୮

ବ୍ୟାଖ୍ୟା—ପର୍ବତ ଉପରୁ ନଦୀର ଜନ୍ମ । ସେ ପର୍ବତ ଝଡ଼ର ମାଡ଼ ସହେ । କିନ୍ତୁ ଜନ୍ମିଥିବା ନଦୀ ଛାତି ଫୁଲାଇ ସ୍ରୋତେ ଓ ସେଇ ପର୍ବତର ଆଶ୍ରିତ ଛୋଟ ପଥରଗୁଡ଼ିକ ବୁରିଦିଏ ।

''କାର୍ତ୍ତିକ-କେଦାର-କଟକ-ବିତାନ-ପ୍ରାନ୍ତେ ହସୁଥିଲା ରଜତ-ବେଳା;
ଶ୍ରୀଫଳ-ନିକୁଞ୍ଜ-ପୁଞ୍ଜିତ-ତାମସ-ପ୍ରସାର ସେ କିବା ସାଗର-ଲୀଳା ।୩।୩୦୪

ଟୀକା—କ୍ଷେତର ପାଚିଲା ଧାନ ପରେ ସମୁଦ୍ର କୂଳ ଧଳା ବାଲି ଦିଶୁଥିଲା । ନଡ଼ିଆ ମାଳମାନଙ୍କରେ ଜମା ହୋଇଥିବା ଅନ୍ଧାର ପ୍ରସାରିତ ହୋଇ ସାଗର ହୋଇଛି କି ?

ନରସିଂହ ଦେବଙ୍କ ଅଗ୍ରତେ କଟରାହ ଗଡ଼ର କବି, ଶାରଙ୍ଗ କଟକ କବି ଗାନ କଲା ପରେ ମୃଗଶାଳା ଗଡ଼ର କବି ନାୟିକାର ନାୟକ ସହିତ ଯୁଦ୍ଧକ୍ଷେତ୍ରକୁ ଯିବା ମନୋଭାବ ପ୍ରକାଶ କରିଥିବା ସଙ୍ଗୀତଟି ଗାନ କରିଛନ୍ତି । ନାୟିକା କହୁଛନ୍ତି—

'ନ ଜାଣନ୍ତି ପିତାମାତା, ନ ଜାଣନ୍ତି ଜନେ;
ଗୋପନେ ପରାଣ ଘେନି ଯିବ ହେ କେସନେ ?
ପ୍ରାଣ ନିଅ ପିଣ୍ଡେ ଧରି,
ନ ଡର ଅବଳା ବୋଲି, ମୁଁ ବୀର ସୁନ୍ଦରୀ ।— ୪ର୍ଥ ସର୍ଗ

ଟୀକା—'ନ ଜାଣନ୍ତି', ଏଠାରେ କାକୂକ୍ତି; ଅର୍ଥାତ୍ ମୁଁ ତମର ପ୍ରାଣ ବୋଲି ସମସ୍ତେ ତ ଜାଣନ୍ତି, ଲୁଚ୍ଚାଇ କରି ମୋତେ ସାଙ୍ଗରେ ନେବ ବୋଲି କିଆଁ ଭାବୁଚ ? ପିଣ୍ଡ ସଙ୍ଗେ ପ୍ରାଣ ଯିବା ସ୍ୱାଭାବିକ । ଲାଜ ନାହିଁ । ପୁଣି ମୁଁ ବୀର ହାତ ଧରିଚି, ଭୟ ବି ନାହିଁ ।

''ଯଉବନ ଜଳେ ଅନନ୍ତ ବିଭାସେ
ତରୁଣ ବିକାଶେ ଅନନ୍ତ ମୁଖେ,
କରମ ସଂଯମ ଗରବ ବିନୟ
ତରୁଣେ ଖେଳଇ ଅନନ୍ତ ସୁଖେ ।''— ୪ର୍ଥ ସର୍ଗ ୨

Digitized by srujanika@gmail.com

ଟୀକା—ଯୌବନରେ ଚିତ୍ତବୃତ୍ତି ବନ୍ଧୁରୂପରେ ଅଭିଳଷିତ ମାର୍ଗରେ ଅଦମ୍ୟ ହୁଏ । ତହିଁରେ କୌଣସି କଳନା ବା ଇୟତ୍ତା ନ ଥାଏ । ସେଥିରେ ପ୍ରୀତି ଅଲକ୍ଷିତ ଭାବରେ ଫୁଟେ ଓ ତରୁଣକୁ ବଶ କରେ ।

"କୀରତି କରମ ବୀରତ୍ୱ ବିବେକ ରସାଣି, ଫୁଟଇ ତରୁଣ-ଯଶ"

ଟୀକା—କୀର୍ତ୍ତି, କର୍ତ୍ତବ୍ୟ, ବୀରତ୍ୱ ଓ ବିବେକ ପ୍ରକୃତ ପ୍ରୀତିରେ ହିଁ ଅଧିକ ଉଜ୍ଜ୍ୱଳ ହୋଇଉଠେ । ପ୍ରକୃତିରୁ ତାହାର ଉଦାହରଣମାନ ପରେ କୁହାଯାଇଛି ।

"ବିକଟ କଟକ ଛାଡ଼ିଯାଏ ରୁଚି ପ୍ରୀତି-ଢଳଢଳ ଏକାମ୍ର-ବନେ ।"

— ୬ଷ୍ଠସର୍ଗ ୧୨୪ ପଦ ।

ଟୀକା—କଟକ = ରାଜଧାନୀ । ଏଠାରେ 'ବାରାଣସୀ କଟକ' । 'ବିଡ଼ାନାସୀ ଏବ 'କଟକ' ସହରକୁ ଘେନି 'ବାରାଣସୀ କଟକ' ବା 'କଟକ ବାରାଣସୀ' ସହରଟି ପୂର୍ବରୁ ଥିଲା ।

ବିଶ୍ୱକର୍ମା-ସୁତା ସଂଜ୍ଞା-ନାମେ ଥିଲେ, ଶୁକ୍ର-ସୁତ ଭୁଲି ରହିଲେ ତାରେ,
କେତେଥର ସେହୁ ମାଗିଲେ ବରଣ, ବାଗ୍ମିନ-ଗିରେ କି କବିତା ଝରେ ।

(ଉପସଂହାର)

ଟୀକା—ପୁରାଣରେ ଅଛି, ସୂର୍ଯ୍ୟ ବିଶ୍ୱକର୍ମାଙ୍କ ଝିଅ ସଂଜ୍ଞାଙ୍କୁ ବିଭା ହୋଇଥିଲେ । ସଂଜ୍ଞା ସୂର୍ଯ୍ୟଙ୍କ ତେଜ ସହି ନପାରି 'ଛାୟା' ନାମ୍ନୀ କନ୍ୟାଟିକୁ ସୂର୍ଯ୍ୟଙ୍କ ପାଖେ ରଖି ନିଜେ ଅନ୍ତର ହୋଇଗଲେ । ପରେ ସୂର୍ଯ୍ୟ ପୁଣି ସଂଜ୍ଞାଙ୍କୁ ଖୋଜି ତାଙ୍କ ପାଖକୁ ଯିବାରୁ ବିଶ୍ୱକର୍ମା କୁନ୍ଦ ବା (ଶାନ) ଯନ୍ତ୍ରରେ ବସାଇ ସୂର୍ଯ୍ୟଙ୍କ ତେଜ କମାଇ ଦେଲେ । ଏହି କର୍ତ୍ତନ ଯୋଗୁଁ ସୂର୍ଯ୍ୟଙ୍କର ଗୋଟିଏ ନାମ ହେଲା 'ବିକର୍ତ୍ତନ' ।

ପଣ୍ଡିତ ବାନାମ୍ବରଙ୍କ ବ୍ୟାଖ୍ୟା ଯେ ପଣ୍ଡିତ ନୀଳକଣ୍ଠଙ୍କ କାବ୍ୟରେ ଥିବା ପ୍ରଚ୍ଛନ୍ନ ଭାବକୁ ବୁଝିବାରେ କେତେଦୂର ସହାୟକ ହେଇଛି, ତାହା ଅନୁମେୟ ।

— ୦ —

Digitized by srujanika@gmail.com

# ରସମୁକ୍ତାବଳୀ

କେନ୍ଦୁଝରର ଭୂତପୂର୍ବ ମହାରାଜା ୰ ଗଦାଧର ନାରାୟଣ ଭଞ୍ଜଦେବଙ୍କ କୃତ 'ରସମୁକ୍ତାବଳୀ' ନାମକ ଅଳଙ୍କାର ଗ୍ରନ୍ଥର ସଂପାଦନା କରିଛନ୍ତି ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ । ଗଦାଧର ନାରାୟଣ ଭଞ୍ଜ ୧୮୩୧ ଖ୍ରୀଷ୍ଟାବ୍ଦଠାରୁ ୧୮୬୧ ପର୍ଯ୍ୟନ୍ତ କେନ୍ଦୁଝର ରାଜା ଥିଲେ । ୧୮୫୭ ମସିହାରେ ଛୋଟନାଗପୁରରେ ଅର୍ଜୁନ ସିଂହଙ୍କ ନେତୃତ୍ୱରେ ଦେଖାଦେଇଥିବା ବିଦ୍ରୋହ ଦମନ ପାଇଁ ଗଦାଧର ବ୍ରିଟିଶ ସରକାରଙ୍କୁ ସୈନ୍ୟ ଓ ଅର୍ଥ ସାହାଯ୍ୟ କରିଥିବାରୁ ୧୮୫୮ରେ ସେ ମହାରାଜା ଉପାଧିପ୍ରାପ୍ତ ହୋଇଥିଲେ ଓ ବାର୍ଷିକ ପେସ୍‌କିସ୍‌ରୁ ଏକହଜାର ଟଙ୍କା ଛାଡ଼ ପାଇଥିଲେ । ତାଙ୍କ ଅମଳରେ କେନ୍ଦୁଝରରେ ପ୍ରଥମକରି ବନ୍ଦୋବସ୍ତ ହୋଇଥିଲା । ତାଙ୍କର ସୁଯୋଗ୍ୟ କର୍ମଚାରୀ ଚନ୍ଦ୍ରଶେଖର ଧଳଙ୍କ କାର୍ଯ୍ୟଦକ୍ଷତା ପାଇଁ ଇଂରେଜ ସରକାର ତାଙ୍କୁ 'ରାୟବାହାଦୁର' ଉପାଧି ପ୍ରଦାନ କରିଥିଲେ । ଏପରି ସମ୍ମାନ ପାଇବାରେ ସେ ଥିଲେ ଓଡ଼ିଶାର ପ୍ରଥମ ବ୍ୟକ୍ତି । ୧୮୬୧ ସାଲରେ କଲିକତା ନିକଟବର୍ତ୍ତୀ ତ୍ରିବେଣୀ ଘାଟକୁ ଗଙ୍ଗାସ୍ନାନ ପାଇଁ ଯାଇ ମାର୍ଚ୍ଚ ୨୨ ତାରିଖରେ ସେ ସ୍ୱର୍ଗାରୋହଣ କଲେ ।

ଗଦାଧର ଥିଲେ ବିଦ୍ୱାନ, ତେଜସ୍ୱୀ, ରସିକ ପୁରୁଷ । ସାହିତ୍ୟ ସଙ୍ଗୀତ ସାଧନାରେ ସେ କାଳାତିପାତ କରୁଥିଲେ ।

କଠିନ ଅଳଙ୍କାର ଶାସ୍ତ୍ରକୁ କାବ୍ୟାକାରରେ ରଚନା କରିଛନ୍ତି ଗଦାଧର ଭଞ୍ଜ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରସପଞ୍ଚକ ଦ୍ୱାରା ଅନୁପ୍ରାଣିତ ହୋଇ ଏହି ଗ୍ରନ୍ଥ ରଚନା କରିଥିବା ସ୍ୱୀକାର କରି କବି ଲେଖିଛନ୍ତି—

ଗ୍ରନ୍ଥ ଅନେକ ହେବା ଭୟରେ ମୁହିଁ
ସମସ୍ତ ଲକ୍ଷଣରେ ବର୍ଣ୍ଣିଲି ନାହିଁ ।
ଉପଇନ୍ଦ୍ର ଭାଷିତ ରସପଞ୍ଚକେ
ଲକ୍ଷଣ ନିରୂପଣ ହୋଇଛି ଥୋକେ । ୪ର୍ଥ ଛାନ୍ଦ ୨୭ ପଦ ।

ପାଞ୍ଚଟି ଛାନ୍ଦରେ ଶ୍ରୀମତୀ ଓ ଲଳିତାଙ୍କ ପ୍ରଶ୍ନୋତ୍ତର ଛନ୍ଦରେ ଏ ଗ୍ରନ୍ଥ ଲିଖିତ । ପ୍ରଥମ ଛାନ୍ଦରେ ଲଳିତାଙ୍କର ଶ୍ରୀକୃଷ୍ଣ ଗୁଣକୀର୍ତ୍ତନ ପ୍ରସଙ୍ଗରେ ରସକଥାର ଅବତାରଣା, ଶ୍ରୀମତୀଙ୍କ ରସ ବିଷୟରେ ପ୍ରଶ୍ନ, ଲଳିତାଙ୍କର ବ୍ୟାଖ୍ୟାନ, ରସସ୍ୱରୂପ, ବିଭାବ ଅନୁଭାବାଦି, ଲକ୍ଷଣ ଓ ବିଭାଗ ତଥା ରସର ଅଲୌକିକତାଦିର ବର୍ଣ୍ଣନା ।

Digitized by srujanika@gmail.com

ଦ୍ୱିତୀୟ ଛାନ୍ଦ— ସ୍ଥାୟୀ ଲକ୍ଷଣ ଓ ଭେଦ, ନବରସର ନାମ, ଶୃଙ୍ଗାର ରସର ସଂଭୋଗ ଓ ବିପ୍ରଲମ୍ଭ ବିଭାଗଦ୍ୱୟର ଉପବିଭାଗମାନ, ଦଶଦଶା, ସାତ୍ତ୍ୱିକ ଭାବମାନଙ୍କ ଲକ୍ଷଣ ।

ତୃତୀୟ ଛାନ୍ଦ— ନିର୍ବେଦାଦି ବ୍ୟଭିଗ୍ୱରି ବର୍ଗର ଲକ୍ଷଣ ଓ ସଂକ୍ଷେପରେ ଦୃଷ୍ଟାନ୍ତ ନାୟକ ସହାୟଗଣ ବର୍ଣ୍ଣିତ ।

ଚତୁର୍ଥ ଛାନ୍ଦ— ଅଷ୍ଟବିଧ ନାୟିକା ଲକ୍ଷଣ, ନାୟିକା ଭେଦାନ୍ତର ନବରସର ବିଭାବାନୁଭାବାଦିର ବର୍ଣ୍ଣନା ।

ପଞ୍ଚମ ଛାନ୍ଦ— କାବ୍ୟ ଲକ୍ଷଣ, ଗୁଣ, ରୀତି, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ନାମ ଲିଖିତ ।

ଏହା ଏକ ଅଳଙ୍କାର ଗ୍ରନ୍ଥ ହୋଇଥିବାରୁ ଏଥିରେ ରସର ଲକ୍ଷଣ ନିର୍ଦ୍ଦେଶ ରହିଛି ସିନା, ମାତ୍ର କାବ୍ୟିକ ମାଧୁରୀ ମିଳିବ ନାହିଁ । କାମର ଦଶଦଶା ଓ ଅଷ୍ଟନାୟିକା ବର୍ଣ୍ଣନାରେ କବିଙ୍କ ରଚନାପାଟବ ପ୍ରକଟିତ । ଏ ପୁସ୍ତକ ରଚନାରେ କବି ଦୀକ୍ଷିତ ଶ୍ରୀ ନରହରି ମିଶ୍ର ନାମକ ପଣ୍ଡିତଙ୍କ ସଂସ୍କୃତ ଗ୍ରନ୍ଥ 'ରସବଲ୍ଲୀ'ର ଅନୁସରଣ କରିଛନ୍ତି । ରସବଲ୍ଲୀ ଗ୍ୱରୋଟି ସ୍ତବକ ବିଶିଷ୍ଟ ଏବଂ ସାହିତ୍ୟ ଦର୍ପଣର ତୃତୀୟ ପରିଚ୍ଛେଦର ସୁବିସ୍ତୃତ ଭାଷ୍ୟ । ରସ ମୁକ୍ତାବଳୀର ପଞ୍ଚମ ଛାନ୍ଦ ତୃତୀୟ ପଦରେ ରୀତିକୁ କାବ୍ୟର ଆତ୍ମା କୁହାଯାଇଥିବାରୁ ବାମନଙ୍କ କାବ୍ୟାଳଙ୍କାର ଗ୍ରନ୍ଥର 'ରୀତିରାତ୍ମା କାବ୍ୟସ୍ୟ' ଅନୁସରଣ କରାଯାଇଥିବା ସମ୍ଭବପର । ପୁଣି ସେହି ଛାନ୍ଦର ରସକୁ 'କାବ୍ୟର ଆତ୍ମା' ବୋଲି ଓ କାବ୍ୟ ଲକ୍ଷଣରେ 'ନିର୍ଦ୍ଦୋଷ ସରସ ବାକ୍ୟ କବିତ୍ୱ' କୁହାଯାଇଥିବାରୁ ଏଥିରେ ଉଭୟ ସାହିତ୍ୟ ଦର୍ପଣ ଓ ସରସ୍ୱତୀ କଣ୍ଠାଭରଣର କାବ୍ୟ ଲକ୍ଷଣକୁ ମିଶ୍ରଣ କରିଥିବା ଜଣାଯାଉଛି ।

ଏହି ଗ୍ରନ୍ଥର ଉପୋଦ୍‌ଘାତରେ ପଣ୍ଡିତ ଆଗ୍ନର୍ଯ୍ୟ ଅଳଙ୍କାର ଶାସ୍ତ୍ରର ଉତ୍ପତ୍ତିଠାରୁ ଏକ ଧାରାବାହିକ ଇତିହାସ ଦେବାକୁ ପ୍ରୟାସ କରିଛନ୍ତି । ଋଗ୍‌ବେଦ ଓ ଉପନିଷଦ-ମାନଙ୍କରେ ଆଳଙ୍କାରିକ ମନ୍ତ୍ରମାନ ଦୃଷ୍ଟ ହୁଏ । ଯାସ୍କଙ୍କ ନିରୁକ୍ତରେ ଗାର୍ଗ୍ୟଙ୍କ ଦ୍ୱାରା ଉକ୍ତ ଉପମାର ଲକ୍ଷଣ ଉଦ୍ଧୃତ । ପାଣିନିଙ୍କ ବ୍ୟାକରଣରେ ଉପମାନ ଓ ଉପମେୟାଦି ବ୍ୟବହୃତ । ପାଣିନି ପାତାଳବିଜୟ ଓ ଜାମ୍ବବତୀବିଜୟ ନାମକ ଦୁଇଟି ଆଳଙ୍କାରିକ ପଦ୍ୟମୟ ମହାକାବ୍ୟ ରଚନା କରିଥିବା ପ୍ରବାଦ ରହିଛି । ରାମାୟଣ, ମହାଭାରତ ଓ ପ୍ରାଚୀନ ଶିଳାଲେଖମାନଙ୍କରେ ଅଳଙ୍କାର ପ୍ରୟୋଗ ଦେଖାଯାଏ । ଭାମହଙ୍କୁ ଅଳଙ୍କାର ଶାସ୍ତ୍ରର ପ୍ରଥମ ପ୍ରଣେତା ବୋଲି ଧରାଯାଇଛି ।

ନାଟକର ଅଙ୍ଗ ରୂପେ କାବ୍ୟ ଆତ୍ମପ୍ରକାଶ କରିଥିଲା । ବାମନଙ୍କ 'କାବ୍ୟାଳଙ୍କାର ସୂତ୍ର'ରେ 'ଦଶରୂପକସ୍ୟୈବା ସ୍ୱାଦଂ ସର୍ବଂ ବିଳସିତ—' ଅର୍ଥାତ୍ ନାଟକରୁ ଏ ସମସ୍ତ କାବ୍ୟର

Digitized by srujanika@gmail.com

ଉପରି ଲେଖିଛନ୍ତି । ଭରତ ନାଟ୍ୟଶାସ୍ତ୍ରରେ ମଧ୍ୟ ଏହି ମତ ଦେଇଛନ୍ତି । କାବ୍ୟ ନାଟକରୁ ସ୍ୱତନ୍ତ୍ର ହେବାପରେ ନାଟକକୁ ନିଜର ଅଙ୍ଗରୂପେ ଗ୍ରହଣ କରିଛି । ଅଳଙ୍କାରସର୍ବସ୍ୱର ଟୀକାକାର ସମୁଦ୍ରବନ୍ଧ, ଉଦ୍‌ଭଟ, କୁନ୍ତକ, ଭଟ୍ଟନାୟକ ଓ ଆନନ୍ଦବର୍ଦ୍ଧନଙ୍କ ମତ ସର୍ବୋତ୍କୃଷ୍ଟ ବୋଲି ପଣ୍ଡିତଜୀ ମତପୋଷଣ କରିଛନ୍ତି । ଆନନ୍ଦବର୍ଦ୍ଧନଙ୍କ ମତରେ ଅଭିଧା, ଲକ୍ଷଣା ପ୍ରଭୃତି ବ୍ୟାପାରମାନଙ୍କୁ ଅତିକ୍ରମ କରି ବ୍ୟଞ୍ଜନା-ନାମକ ଅଭିନବ ବ୍ୟାପାର ବା ବୃତ୍ତିଦ୍ୱାରା ବାଚ୍ୟ ଓ ଲକ୍ଷ୍ୟାର୍ଥଠାରୁ ବ୍ୟଙ୍ଗ୍ୟ ନାମକ ଏକ ଅର୍ଥକାବ୍ୟର ପରମ ଚମତ୍କାରିତା ସଂପାଦନ କରିଥାଏ ।

ରସମୁକ୍ତାବଳୀ ଅଳଙ୍କାର ଗ୍ରନ୍ଥର 'ଦୀପ୍ତି' ଟିପ୍ପଣୀ ଲେଖିଛନ୍ତି ବିଦ୍ୟାଭୂଷଣ ମହାଶୟ । ଯେଉଁ ଯେଉଁ ସ୍ଥଳରେ ଜଟିଳ ଆଳଙ୍କାରିକ ତତ୍ତ୍ୱର ବିବରଣ ବାଂଛନୀୟ ବୋଲି ଅନୁଭୂତ ହୋଇଛି, ସେଠାରେ ସେ ଟୀକା ପ୍ରଦାନ କରି ପାଠକକୁ ବୋଧଗମ୍ୟ ହେବାପାଇଁ ସହଜ କରିଅଛନ୍ତି । ରସର ସ୍ୱରୂପ ସମ୍ବନ୍ଧେ କହିଛନ୍ତି— ବିଭାବ, ଅନୁଭାବ ବ୍ୟଭିଚାରୀ ଓ ସାତ୍ତ୍ୱିକ ଏପରି ଚାରିଭାଗ ସଂଯୋଗରୁ ସ୍ଥାୟୀଭାବ ଜାତ ହୁଏ । ମାତ୍ର ତାହା ହୃଦୟରେ ଅତି ସୂକ୍ଷ୍ମଭାବେ ଅବସ୍ଥିତ ଥାଏ । ନାୟକ-ନାୟିକା-ଚନ୍ଦ୍ର-ଚନ୍ଦନ- ବସନ୍ତ-କୋକିଳାଦି-ବିଭାବ ରୂପ କାରଣ ସମ୍ପର୍କରେ ତାହା ସ୍ଫୁଟ ହୁଏ । ତତ୍ପରେ କଟାକ୍ଷ, ଭୂଜକ୍ଷେପ (ହାତ ଉପରକୁ ଟେକି ଅଳସ ଭାଙ୍ଗିବା) ପ୍ରଭୃତି ଅନୁଭବ ରୂପ କାର୍ଯ୍ୟର ମେଳନରେ କ୍ରମେ ପ୍ରତୀତ ହୁଏ । ତତ୍ପରେ ନିର୍ବେଦ, ଗ୍ଲାନି, ଶଙ୍କା, ଈର୍ଷା ପ୍ରଭୃତି ବ୍ୟଭିଚାରୀଭାବ ରୂପ ସହକାରୀ କାରଣମାନଙ୍କ ସଂଯୋଗ ପାଇ ପରିବର୍ଦ୍ଧିତ ହୁଏ । ତତ୍ପରେ ସ୍ତମ୍ଭ-ସ୍ୱେଦାଦି ସାତ୍ତ୍ୱିକ ଭାବମାନଙ୍କଦ୍ୱାରା ତାହାର ସତ୍ତା ସ୍ପଷ୍ଟ ହୋଇପଡ଼େ । ଏ ପ୍ରକାର ସ୍ଥାୟୀଭାବକୁ ରସ କହନ୍ତି । ରସାନୁଭୂତି କେବଳ ପୂର୍ବଜନ୍ମ ପୁଣ୍ୟବଳରେ ଜାତ ହୁଏ ବୋଲି ଶାସ୍ତ୍ରକାରମାନେ କହିଛନ୍ତି । ସଜାତୀୟ ବା ବିଜାତୀୟ ଭାବ ମଧ୍ୟରେ ମଧ୍ୟ ସ୍ଥାୟୀଭାବ ଅନୁଭୂତ ହୁଏ । ଅର୍ଥାତ୍ କୌଣସି ବିରୁଦ୍ଧ ବା ଅବିରୁଦ୍ଧ ଭାବ ତାହାକୁ ଲୋପ ବା ଆଚ୍ଛନ୍ନ କରି ପାରେ ନାହିଁ ।

ଶୃଙ୍ଗାର, ବୀର, କରୁଣ, ହାସ୍ୟ, ଭୟାନକ, ଅଦ୍ଭୁତ, ବୀଭତ୍ସ, ରୌଦ୍ର— ଏପରି ରସ ଆଠ ପ୍ରକାର ବୋଲି ଅମର ସିଂହ ଓ ମମ୍ମଟଙ୍କ ମତ । ଭରତ ମୁନିଙ୍କ ମତରେ ଦଶ ପ୍ରକାର । ରତ୍ନକୋଷାଦି ମତେ ନଅପ୍ରକାର । ଶାନ୍ତ, ଦାସ୍ୟ, ସଖ୍ୟ ଓ ବାତ୍ସଲ୍ୟ ମିଶି ବାର ପ୍ରକାର । ଗୋସ୍ୱାମୀମାନଙ୍କ ମତରେ ଷୋହଳ ପ୍ରକାର । ଶାନ୍ତ ରସର ସ୍ଥାୟୀଭାବ ନିର୍ବେଦ ଅଭିନୟୋପଯୋଗୀ ହୋଇ ନ ଥିବାରୁ ଏହା ରସରୂପେ ଗ୍ରାହ୍ୟ ହୁଏ ନାହିଁ ।

ରସ ପ୍ରତ୍ୟକ୍ଷ ନୁହେଁ । କାରଣ ଏହା କେବଳ ଶବ୍ଦରୁ ଜାତ ଅନୁଭବ ବା ଜ୍ଞାନବିଶେଷ । ଯେଉଁ ଜ୍ଞାନ କେବଳ ଶବ୍ଦରୁ ଜାତ, ତାହା ପ୍ରତ୍ୟକ୍ଷ ନୁହେଁ । ଯଥା— ଦଶରଥ ବୋଲି ଜଣେ ରାଜା ଥିଲେ ।

Digitized by srujanika@gmail.com

ରସ ଅନୁମାନଗମ୍ୟ ନୁହେଁ । କାରଣ ଅନୁମାନଦ୍ୱାରା ଉପଲବ୍ଧ ବସ୍ତୁ ବା ଜ୍ଞାନ ଅପରୋକ୍ଷ ନୁହେଁ । ଯାହା ପ୍ରତ୍ୟକ୍ଷ ନୁହେଁ, ତାହାର ଚର୍ବଣ ବା ଆସ୍ୱାଦନ ଅସମ୍ଭବ ।

ସହିତ୍ୟ ଦର୍ପଣକାର ରସ ନିତ୍ୟ ନୁହେଁ ବୋଲି ପ୍ରମାଣ କରିଛନ୍ତି । କାରଣ ନିତ୍ୟ ବସ୍ତୁର ଜ୍ଞାନ ସବୁବେଳେ ସବୁ ଅବସ୍ଥାରେ ଥାଏ । ମାତ୍ର ରସ ପ୍ରତୀତିକାଳରେ ହିଁ ଜ୍ଞାତ ହୁଏ— ତତ୍‌ପୂର୍ବରୁ ନୁହେଁ ।

ରସ ଦ୍ରବ୍ୟ ନୁହେଁ । କାରଣ ଦ୍ରବ୍ୟ ଥାଇ ସୁଦ୍ଧା ଅବସ୍ଥା ବିଶେଷରେ (ନିଦ୍ରାକାଳରେ) ଅଜଣା ରହିଯାଏ । ରସ ଗୁଣ ନୁହେଁ, କାରଣ ତାହା ଦ୍ରବ୍ୟରେ ଅବସ୍ଥିତ ରହେ ।

ରସ ସ୍ୱପ୍ରକାଶ । ରସକୁ କାର୍ଯ୍ୟ କହିଲେ, ବିଭାବାଦିକୁ ତା'ର କାରଣ ବୋଲି କହିବାକୁ ପଡ଼ିବ । କାର୍ଯ୍ୟର ପୂର୍ବରୁ କାରଣର ଜ୍ଞାନ ହେବା ହିଁ ନିୟମ । କିନ୍ତୁ ରସ-ପ୍ରତୀତି ପୂର୍ବରୁ ବିଭାବାଦିର ଜ୍ଞାନ ନ ହୋଇ ରସ ଓ ବିଭାବାଦିଙ୍କର ଏକ କାଳରେ ଜ୍ଞାନ ହୁଏ । ଅତଏବ ରସ କାର୍ଯ୍ୟ ନୁହେଁ ।

ଯେହେତୁ ରସ ପ୍ରତ୍ୟକ୍ଷ, ଅନୁମାନ, ଦ୍ରବ୍ୟ, ଗୁଣ, କାର୍ଯ୍ୟ କିଛି ନ ହୋଇ ସୁଦ୍ଧା ପ୍ରତୀତ ହେଉଛି, ତେଣୁ ଏହା ଲୋକୋତ୍ତର ବା ଅସାଧାରଣ ଏବଂ ଚମତ୍କାରୀ ବା ବିସ୍ମୟ-ଜନକ । ରଜ ଓ ତମ ଗୁଣକୁ ଦୂରକରି ସତ୍ତ୍ୱଗୁଣ ହୃଦୟରେ ଜାତ ହେଲେ ରସ ଅନୁଭୂତ ହୁଏ । 'ସତ୍ତ୍ୱଂ ସୁଖେ ସଞ୍ଚୟତି ରଜଃ କର୍ମଣି ଭାରତ' ଇତ୍ୟାଦି ଗୀତାବାକ୍ୟ ଅନୁସାରେ ମନ ସେତେବେଳେ ଆନନ୍ଦବିଭୋର ହୁଏ । ଅତଏବ ରସ ଆନନ୍ଦମୟ ଓ ଜ୍ଞାନମୟ । ବେଦାନ୍ତ ସୂତ୍ରରେ ବ୍ରହ୍ମଙ୍କ ଲକ୍ଷଣ ଯେପରି ଲେଖାଅଛି, ସେହିପରି ହୋଇଥିବାରୁ 'ରସୋ ବୈ ସଃ'' ଶ୍ରୁତିବାକ୍ୟ ଅନୁସାରେ ରସ ବ୍ରହ୍ମଠାରୁ ଅଭିନ୍ନ । ଅତଏବ, ରସାନୁଭୂତି ବ୍ରହ୍ମାନନ୍ଦ-ଲାଭ ପରି ବାହ୍ୟଜ୍ଞାନର ସତ୍ତା ପର୍ଯ୍ୟନ୍ତ ଲୋପ କରିଦିଏ । କାଠଘୋଡ଼ା ଯେପରି ପ୍ରକୃତ ଘୋଡ଼ା ନ ହେଲେ ସୁଦ୍ଧା ଘୋଡ଼ା ବୋଲି କଥିତ ହୁଏ, ସେହିପରି କେବଳ ସ୍ଥାୟୀଭାବ ରସ ନ ହେଲେ ସୁଦ୍ଧା ତାହା ବିଭାବାଦି ଯୋଗେ ରସ ରୂପେ ପରିଣତ ହୋଇ ରସ ନାମରେ କଥିତ ହୁଏ । କଦଳୀ, ଦୁଧ, ଛେନା, ଗୁଡ଼, ମରିଚ, ଇତ୍ୟାଦି ଦ୍ରବ୍ୟ ମିଳିତ ହେଲେ ଯେପରି ପଣା ବୋଲି ଏକ ଅପୂର୍ବ ସ୍ୱାଦୁ ବିଶିଷ୍ଟ ବସ୍ତୁ ସୃଷ୍ଟି ହୁଏ, ସେହିପରି ସ୍ଥାୟୀ, ବିଭାବ, ଅନୁଭାବ ପ୍ରଭୃତି ମିଶି ଅପୂର୍ବ ରସର ସୃଷ୍ଟି ହୁଏ ।

ସ୍ଥାୟୀ ସହିତ ବିଭାବାଦି ମିଶିଲେ ପରଗତ ରସ ନିଜର ପରି ଅନୁଭୂତ ହୁଏ । ଯଥା— ରାମଙ୍କ ବନଗମନ ଦୃଶ୍ୟରେ ରାମଙ୍କ ବନବାସ କାଳରେ ଦଶରଥଙ୍କ ବିଳାପ ବାକ୍ୟ ଶୁଣିବାମାତ୍ରେ ଦର୍ଶକ/ ଶ୍ରୋତା ମଧ୍ୟ ସେହିପରି ଦୁଃଖୀ ଅନୁଭବ କରୁଥିବାରୁ ତା'ଠାରେ କ୍ରନ୍ଦନର ସୂଚନା ମିଳେ । ଏହାର କାରଣ ସଂପର୍କରେ ବିଶ୍ୱନାଥ କବିରାଜ କହନ୍ତି— ବିଭାବାଦିଙ୍କର ସାଧାରଣୀକୃତ ବୋଲି ଥିବା ଅଦ୍ଭୁତ କ୍ଷମତା ପ୍ରଭାବରେ ଦର୍ଶକ ବା ଶ୍ରୋତା

Digitized by srujanika@gmail.com

ଦେଖୁଥିବା ଅଭିନୟ ବା କାବ୍ୟର ବର୍ଣ୍ଣନାକୁ ନିଜର ପରି ମନେକରେ । ତା'ର ବିଭାବ ଅନୁଭାବାଦିକୁ ନିଜର ବୋଲି ଅଭିମାନ ଜାତ ହୋଇଥିବାରୁ ଅଭିନେୟ ବା ବର୍ଣ୍ଣନୀୟ ନାୟକ ନାୟିକାଗତ ରତି ଶୋକାଦି ଦର୍ଶକଠାରେ ରସରୂପେ ଦେଖାଦିଅନ୍ତି । ଚନ୍ଦ୍ରକାନ୍ତ ମଣି ଚନ୍ଦ୍ର କିରଣରେ ତରଳେ । ମାତ୍ର ଅକର୍ମଶିଳା ଚନ୍ଦ୍ରକିରଣରେ ଚିରକାଳ ରହିଲେ ହେଁ ତହିଁରେ କିଛି ପରିବର୍ତ୍ତନ ଘଟେ ନାହିଁ । ଐହିକ ବା ପ୍ରାକ୍ତନ ବାସନା ନ ଥିଲେ ରସ ଅନୁଭୂତ ହୁଏ ନାହିଁ । ଐହିକ ଓ ପ୍ରାକ୍ତନ ସଂସ୍କାରବଶରୁ ହୋଇଥାଏ ।

ଏହି ଗ୍ରନ୍ଥରେ ମହାରାଜା ଗଦାଧର ନାରାୟଣ ଭଞ୍ଜଦେବ ରସର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ପଦ୍ୟାକାରରେ ଉଲ୍ଲେଖ କରିଛନ୍ତି ଏବଂ ପଣ୍ଡିତ ଆଗ୍ଚର୍ଯ୍ୟ ସେ ସବୁର ବିଶଦ ଆଲୋଚନା ଓ ଦୀପ୍ତିଟୀକା ପ୍ରଦାନ ମଧ୍ୟରେ ଆପଣାର ବହୁଶାସ୍ତ୍ରଦର୍ଶୀତାର ପରିଚୟ ଦେଇଛନ୍ତି ।

ରସର ସ୍ୱରୂପ, ବିଭାବର ବିଭାଗ, ଆଲମ୍ବନ, ଉଦ୍ଦୀପନା ଲକ୍ଷଣ ଆଦି ପ୍ରଥମ ଛାନ୍ଦର ବିଷୟବସ୍ତୁ ।

ଦ୍ୱିତୀୟ ଛାନ୍ଦରେ ରସ-ମହିମା-ବର୍ଣ୍ଣନା ଲକ୍ଷଣ ବର୍ଣ୍ଣିତ । ରତି, ଶାନ୍ତି, ହାସ, ଭୟ, ଉତ୍ସାହ, ଶୋକ, କ୍ରୋଧ, ନିନ୍ଦା ଓ ବିସ୍ମୟ ଆଦି ସ୍ଥାୟୀ-ଅନୁଭବ ଯୋଗୁ ସ୍ଥାୟୀଭାବ ହୋଇଥାଏ ।

ଶୃଙ୍ଗାର, ହାସ୍ୟ, କରୁଣ, ଅଦ୍ଭୁତ, ରୌଦ୍ର, ବୀର, ଭୟ, ବୀଭତ୍ସ, ଶାନ୍ତ ଆଦି ନବରସ । ମନରେ ପର-ପ୍ରୀତି ଚିନ୍ତନ ସାତ୍ତ୍ୱିକ ଲକ୍ଷଣ । ଅନ୍ତରରେ ସଞ୍ଚାରିତ ନିର୍ବେଦ, ଗ୍ଲାନି, ଚିନ୍ତା, ଶ୍ରମ, ଧୈର୍ଯ୍ୟ, ଜାଡ୍ୟ, ହର୍ଷ, ତ୍ରାସ, ଦୈନ୍ୟ, ଶଙ୍କା, ଆଳସ୍ୟ, ଈର୍ଷା, ଗର୍ବ, ହାସ, ମଦ, ମରଣ, ସ୍ମୃତି, ସୁପ୍ତି, ନିଦ୍ରା, ମୋହ, ସୁମତି, ଲଜ୍ଜା, ଅପସାର, ବେଗ, ତର୍କ, ଅବହିତ୍ଥା, ଉନ୍ମାଦ, ବ୍ୟାଧି, ଔତ୍ସୁକ୍ୟ, ଚପଲ୍ୟ, ବିଷାଦ, ଆଦି ତେତିଶି ପ୍ରକାର ।

ଶୃଙ୍ଗାର ରସର ନାମାନ୍ତର ଶୁଚି, ମଧୁର ଓ ଉଜ୍ଜ୍ୱଳ । ଶୃଙ୍ଗାରକୁ ଅନୁଭବ କରିବା ଚେଷ୍ଟା ହେଉଛି ଅଷ୍ଟାଦଶ— ଭାବ, ହାବ, ଧୈର୍ଯ୍ୟ, ମାଧୁର୍ଯ୍ୟ, ଲୀଳା, ବିଳାସ, ବିଚ୍ଛିତ୍ତି, ବିଭ୍ରମ, ହେଳା, ବିବ୍ୟୋକ, ମୋଟ୍ଟାୟିତ, କୁଟ୍ଟମିତ, କୁତୂହଳ, ସୁଲଳିତ, ଚକିତ, କିଳକିଞ୍ଚିତ, ବିହୃତ ।

ଭାବାଦି ଲକ୍ଷଣ, ମାନୋତ୍‌ପତ୍ତି କାରଣ, ମାନଭେଦ, ମାନଶାନ୍ତି, ଶୃଙ୍ଗାର ରସ ବିଭାଗ, ସପ୍ତବିଧ ସଂଭୋଗ ଲକ୍ଷଣ-ପ୍ରେମାଭିଳାଷ, ଅନୁରାଗ, ସ୍ନେହ, ପ୍ରେମ, ରତି, ଶୃଙ୍ଗାର ଆଦି । ସଂଭୋଗର ବ୍ୟବହାର, ସଂକ୍ଷେପରେ ଦ୍ୱୈବିଧ୍ୟ, ବିସ୍ତାର ତ୍ରୈବିଧ୍ୟ, ନବୀନସଂଭୋଗ, ବିରହପ୍ରାନ୍ତ ସଂଭୋଗ, ଅଭିମାନାନ୍ତ ସଂଭୋଗ, ବିସ୍ତାର ସଂଭୋଗ, ଆଭ୍ୟନ୍ତର ଭେଦ, ବିପ୍ରଲମ୍ଭ ଭେଦ, ଅଯୋଗ ବିପ୍ରଲମ୍ଭ ଲକ୍ଷଣ, ବିରହ ବିପ୍ରଲମ୍ଭ ଲକ୍ଷଣ, ଦର୍ଶନେଚ୍ଛା, ତଦ୍‌ଗତ

Digitized by srujanika@gmail.com

ମନ, ସୁସଙ୍ଗ-କଳ୍ପନା, ଅନିଦ୍ରା, ଶରୀର କୃଶତା, ରୋଷେ ଅପ୍ରୀତି, ଲଜ୍ଜା ତ୍ୟାଗ, ଚିତ୍ତ-ଉନ୍ମାଦ, ମୂର୍ଚ୍ଛା ଓ ମୃତ୍ୟୁ ଆଦି କାମର ଦଶଦଶା ଓ ସ୍ତମ୍ଭ, ସ୍ୱେଦ, ବେପଥୁ, ମନବିଷାଦ, ବୈବର୍ଣ୍ଣ୍ୟ, ରୋମାଞ୍ଚ, ଦୁଃଖ, ହର୍ଷ, ଅଶ୍ରୁପ୍ରଳୟ ଓ ଇନ୍ଦ୍ରିୟମୂର୍ଚ୍ଛା ଆଦି ଅଷ୍ଟସାତ୍ତ୍ୱିକ ଲକ୍ଷଣ ବର୍ଣ୍ଣିତ ।

ତୃତୀୟ ଛାନ୍ଦରେ ନାଗରଠାରେ ସଖୀବାକ୍ୟ, ନାୟକ ଲକ୍ଷଣ-ଅନୁକୂଳ, ଦକ୍ଷିଣ, ଶଠ ଓ ଧୃଷ୍ଟାଦି ଚତୁର୍ବିଧ ନାୟକ; ମହାକୁଳୀନତା, ଉଦାରତା, ଭାଗ୍ୟ, ବୈଦଗ୍ଧ୍ୟ ବା ଚତୁରତା, ତେଜସ୍ୱିତା, ଧାର୍ମିକତା, ସୌନ୍ଦର୍ଯ୍ୟ, କୀର୍ତ୍ତି, ପ୍ରତାପ ଆଦି ଗୁଣ; ଶୃଙ୍ଗାର ନାୟକ—ଧୀରୋଦାତ୍ତ, ଧୀରୋଦ୍ଧତ, ଧୀରଶାନ୍ତ, ଧୀରଲଳିତ ଆଦି ନାୟକ; ପୀଠମର୍ଦ୍ଦ, ବିଟ, ବିଦୂଷକ ଓ ଚେଟ ଆଦି ସହାୟକ ଦୂତମାନଙ୍କର ବର୍ଣ୍ଣନା ହୋଇଛି ।

ଚତୁର୍ଥ ଛାନ୍ଦରେ ସ୍ୱାଧୀନ ଭର୍ତ୍ତୃକା, ବାସକ ସଜ୍ଜିକା, ବିରହୋତ୍କଣ୍ଠିତା, ପ୍ରୋଷିତ-ଭର୍ତ୍ତୃକା, ବିପ୍ରଲବ୍ଧା, କଳହାନ୍ତରିତା, ଅଭିସାରିକା, ଖଣ୍ଡିତା ଆଦି ଅଷ୍ଟନାୟିକା; ମୁଗ୍ଧା, ମଧ୍ୟା, ପ୍ରଗଲ୍‌ଭା, ଧୀରା, ଅଧୀରା ଓ ଧୀରା ଧୀରା ନାୟିକା ଭେଦ ଏବଂ ପଦ୍ମିନୀ, ଶଙ୍ଖିନୀ, ଚିତ୍ରିଣୀ ଓ ହସ୍ତିନୀ ଆଦି ନାୟିକାମାନଙ୍କର ପ୍ରକାର ଭେଦ କଥା ବର୍ଣ୍ଣିତ ।

ପଞ୍ଚମ ଛାନ୍ଦରେ ଗୌଡ଼ୀ, ବୈଦର୍ଭୀ, ପାଞ୍ଚାଳୀ ଆଦି ତିନି ରୀତି; ମାଧୁର୍ଯ୍ୟ, ଶ୍ଳେଷ, ପ୍ରସାଦ ଆଦି ଦ୍ୱାବିଂଶତି ଗୁଣ, ରସର ଅଙ୍ଗିତା, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ଭେଦ ଆଦି ଦର୍ଶାଯାଇଛି ।

— ୦ —

Digitized by srujanika@gmail.com

# ଛାନ୍ଦ ଶବ୍ଦର ଉତ୍ପତ୍ତି

୧୯୪୭ ନବଭାରତ ପୂଜା ସଂଖ୍ୟାରେ ପଣ୍ଡିତ ଆଚାର୍ଯ୍ୟ ''ଛାନ୍ଦ'' ଶବ୍ଦର ଉତ୍ପତ୍ତି ସମ୍ପର୍କରେ ଗୋଟିଏ ପ୍ରବନ୍ଧ ଲେଖି 'ସ୍କନ୍ଦ' ଶବ୍ଦରୁ 'ଛାନ୍ଦ' ଶବ୍ଦ ବ୍ୟୁତ୍ପନ୍ନ ବୋଲି ମତପ୍ରକାଶ କରିଥିଲେ। କାରଣ ସଂସ୍କୃତରେ 'ସ୍କନ୍ଦ' ଶବ୍ଦର ପ୍ରକୃତି ଓ ପ୍ରବୃତ୍ତି ସହିତ ଓଡ଼ିଆ 'ଛାନ୍ଦ' ଶବ୍ଦର ପ୍ରକୃତି ଓ ପ୍ରବୃତ୍ତି ସମାନ । ବାତ୍ସାୟନଙ୍କ କାମସୂତ୍ରରେ 'ଗାଥା ଓ ସ୍କନ୍ଦ' ନାମକ ଦୁଇଟି ପ୍ରକାର ରଚନାର ଉଲ୍ଲେଖ ଅଛି ।

ବିଦ୍ୟାଭୂଷଣଙ୍କ ଏ ମତର ବିରୋଧ କରି ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ୧୪ଟି ଯୁକ୍ତି ଦର୍ଶାଇ ତାହାର ଖଣ୍ଡନ କରିଥିବାରୁ ପଣ୍ଡିତ ମହାଶୟ ଅଧିକ ତଥ୍ୟ ଉପସ୍ଥାପନ କରି ତାଙ୍କର ଯୁକ୍ତିର ସାରବତ୍ତା ପ୍ରତିପାଦନ କରିଥିଲେ । ସେ ସମସ୍ତ ତଥ୍ୟାବଳୀ ଏଠାରେ ଆଲୋଚ୍ୟ ।

**ସ୍କନ୍ଦ ଶବ୍ଦର ଅଳଙ୍କାର ଓ ଛନ୍ଦଃ-ଶାସ୍ତ୍ରରେ ବ୍ୟବହାର :**

(କ) ସ୍କନ୍ଦ— ରଚନାବିଶେଷ : ଆଳଙ୍କାରିକ ଆଚାର୍ଯ୍ୟ ଦଣ୍ଡୀ ମହାକାବ୍ୟ ବା ସର୍ଗବନ୍ଧର ଲକ୍ଷଣ ନିର୍ଦ୍ଦେଶ କରି ଏହି ସର୍ଗବନ୍ଧ ପ୍ରାକୃତ ଓ ଅପଭ୍ରଂଶ ଭାଷାରେ ଭିନ୍ନ ନାମ ଧାରଣ କରେ ବୋଲି ଲେଖିଛନ୍ତି ।

ସଂସ୍କୃତଂ ସର୍ଗବନ୍ଧାଦି ପ୍ରାକୃତଂ ସ୍କନ୍ଦକାଦି ଚ
ଆସାରାଦୀନ୍ୟପଭ୍ରଂଶୋ ମିଶ୍ରଂ ନାଟକମୁଚ୍ୟତେ ।

ଅର୍ଥାତ୍— ସଂସ୍କୃତ ଭାଷାରେ ମହାକାବ୍ୟ ରଚିତ ହେଲେ, ତାହା ସର୍ଗବନ୍ଧ ପ୍ରଭୃତି ଅର୍ଥାତ୍ ମୁକ୍ତକ, ଖଣ୍ଡକାବ୍ୟ, କୋଷକାବ୍ୟ ପ୍ରଭୃତି ନାମ ଗ୍ରହଣ କରେ । ପ୍ରାକୃତ ଭାଷାରେ ରଚିତ ହେଲେ ସ୍କନ୍ଦ ଆଦି ଶବ୍ଦ ଥିବାରୁ ଗାଥା ପ୍ରଭୃତି ନାମଧାରଣ କରେ । ଅପଭ୍ରଂଶ ଭାଷାରେ ରଚିତ ହେଲେ ତାହାର ନାମ 'ଆସାର' ପ୍ରଭୃତି ହୁଏ । ମିଶ୍ର ଭାଷାରେ ରଚିତ କାବ୍ୟର ନାମ ନାଟକ ।

ସ୍କନ୍ଦ— ସ୍କନ୍ଦକ ''ସଂଜ୍ଞାୟାଂ କନ୍'' । ଏଥିରୁ ଜଣାଯାଏ ପ୍ରାକୃତ ଭାଷାରେ ମହାକାବ୍ୟକୁ ସ୍କନ୍ଦ କହନ୍ତି । ଓଡ଼ିଆ ଭାଷା ପ୍ରାକୃତ ଭାଷା ହୋଇଥିବାରୁ 'ସ୍କନ୍ଦ' ଓଡ଼ିଆରେ 'ଛାନ୍ଦ' ହୋଇଛି ଓ 'ଗାଥା' ଗାହା ହୋଇଛି । ଦେବଦୁର୍ଲଭ ଦାସଙ୍କ ରହସ୍ୟ ମଞ୍ଜରୀରେ ଉଭୟର ସ୍ୱରୂପ ରହିଛି ।

Digitized by srujanika@gmail.com

(ଖ) ସ୍କନ୍ଧ— ପରିଚ୍ଛେଦ ବିଶେଷ—

ବିଦ୍ୟାନାଥଙ୍କ 'ପ୍ରତାପରୁଦ୍ରୀୟ ଯଶୋଭୂଷଣ' ଅଳଙ୍କାର ଗ୍ରନ୍ଥରେ 'ଭୋଗାବଳୀ' ନାମକ କ୍ଷୁଦ୍ର-ପ୍ରବନ୍ଧ ବିଶେଷର ଲକ୍ଷଣରେ ଲେଖାଅଛି—

ଆଦ୍ୟନ୍ତ ପଦ୍ୟସଂଯୁକ୍ତା ସଂସ୍କୃତ ପ୍ରାକୃତାତ୍ମିକା
ଅଷ୍ଟଭିର୍ବା ଚତୁର୍ଭିର୍ବା ବାକ୍ୟୈଃ ସ୍କନ୍ଧସମନ୍ୱିତା
ପ୍ରତିସ୍କନ୍ଧଂ ଭିନ୍ନ ବାକ୍ୟରୀତି ର୍ଦେବ-ନୃପୋଚିତା
ସର୍ବତୋ ଦେବଶବ୍ଦାଦିରେଷା ଭୋଗାବଳୀ ମତା ।

ଅର୍ଥାତ୍— ଭୋଗାବଳୀ ନାମକ କ୍ଷୁଦ୍ର-ପ୍ରବନ୍ଧର ଉପକ୍ରମ ଓ ଉପସଂହାରରେ ମାଳିନୀ ପ୍ରଭୃତି ବୃତ୍ତର ପଦ୍ୟ ରହିବ । ଏହା ସଂସ୍କୃତ ବା ପ୍ରାକୃତ ଭାଷାରେ କିମ୍ବା ଉଭୟର ମିଶ୍ରଣରେ ରଚିତ ହେବ । ଏଥିରେ ଅଲଗା ଅଲଗା ସ୍କନ୍ଧ ରହିବ । ପ୍ରତି ସ୍କନ୍ଧ ଆଠଗୋଟି ବା ଅନ୍ତତଃପକ୍ଷେ ଚାରିଗୋଟି ବାକ୍ୟରେ ରଚିତ ହେବ । ପ୍ରତି ସ୍କନ୍ଧ (ଓଡ଼ିଆ ଛାନ୍ଦ)ର ରଚନା-ରୀତି ଭିନ୍ନ ଭିନ୍ନ ହୋଇଥିବ । ଏଥିରେ ଦେବତା ବା ରାଜାଙ୍କର ବର୍ଣ୍ଣନା ରହିବ । ପ୍ରତିବାକ୍ୟ(ପଦ)ର ଆଦିରେ 'ଦେବ !' ସମ୍ବୋଧନ ପଦ ବ୍ୟବହାର କରାଯିବ ।

ଟୀକାକାର ମଲ୍ଲୀନାଥଙ୍କ କନିଷ୍ଠ ପୁତ୍ର କୁମାରସ୍ୱାମୀ ଉକ୍ତ ଲକ୍ଷଣ ଶ୍ଳୋକସ୍ଥ ''ସ୍କନ୍ଧ'' ଶବ୍ଦର 'ଭୋଗାବଳୀ' ଟୀକାରେ ଲେଖିଛନ୍ତି, ''ସ୍କନ୍ଧଃ ପରିଚ୍ଛେଦଭେଦଃ'' । ''ଅତ୍ର ଭୋଗୋପକରଣୋଦ୍ୟାନ-ବସନ୍ତ-ନାୟକ-ଗୁଣାଦି ବର୍ଣ୍ଣନଂ ପ୍ରାୟେଣ କର୍ତ୍ତବ୍ୟଂ ।'' ଅର୍ଥାତ୍— ସ୍କନ୍ଧ କହିଲେ ପରିଚ୍ଛେଦ ବିଶେଷକୁ ବୁଝାଏ । ଏଥିରେ ଭୋଗର ସମସ୍ତ ସାମଗ୍ରୀ— ଉଦ୍ୟାନ, ବସନ୍ତ ଓ ନାୟକ-ଗୁଣ ପ୍ରଭୃତି ବହୁଳ ଭାବେ ଗଣିତ ହେବା ଉଚିତ । ଆମ ଛାନ୍ଦ ଗ୍ରନ୍ଥରେ ୧ମ, ୨ୟ ଓ ୩ୟ ଛାନ୍ଦ ଇତ୍ୟାଦି ପରିଚ୍ଛେଦବାଚକ ଅଟେ ।

(ଗ) ସ୍କନ୍ଧ— ଛାନ୍ଦୋବିଶେଷ—

ସାହିତ୍ୟ ଦର୍ପଣର ୬ଷ୍ଠ ପରିଚ୍ଛେଦରେ କାବ୍ୟଭେଦ ବର୍ଣ୍ଣନ ପ୍ରସଙ୍ଗରେ ବିଶ୍ୱନାଥ କବିରାଜ ଲେଖିଛନ୍ତି, ପ୍ରାକୃତରେ ମହାକାବ୍ୟ ରଚିତ ହେଲେ ତାହାର ସର୍ଗଗୁଡ଼ିକର ନାମ 'ଆଶ୍ୱାସ' ହେବ ଓ ତାହା 'ସ୍କନ୍ଧ' ତଥା ଗଳିତକ ଛନ୍ଦରେ ଲେଖାଯିବ । ଏଠାରେ ସ୍କନ୍ଧ ଶବ୍ଦ ଅର୍ଥ ଛନ୍ଦୋବିଶେଷ । ପ୍ରାକୃତ ପିଙ୍ଗଳ ସୂତ୍ରରେ ଏହାର ନାମ ଖଂଧା । ଏହା ଛନ୍ଦଃ-ଶାସ୍ତ୍ରୀୟ ''ଆର୍ଯ୍ୟଗୀତି''ରୁ ଅଭିନ୍ନ । ଆର୍ଯ୍ୟଗୀତିର ଲକ୍ଷଣ ହେଉଛି, ''ଅର୍ଦ୍ଧେ ବସୁଗଣ ଆର୍ଯ୍ୟଗୀତିଃ'' (ପିଙ୍ଗଳ), ଅର୍ଥାତ୍ ଏହାର ପ୍ରଥମାର୍ଦ୍ଧରେ ଚାରିମାତ୍ରା ବିଶିଷ୍ଟ ଆଠଗୋଟି ଗଣ ରହିବ । (୩୨ମାତ୍ରା) । ଦ୍ୱିତୀୟାର୍ଦ୍ଧ ପ୍ରଥମାର୍ଦ୍ଧର ଅନୁରୂପ । ମନ୍ତବ୍ୟ—ଆର୍ଯ୍ୟଗୀତି 'ପଦ୍ୟ' ନୁହେଁ— 'ଗୀତି' । କାରଣ ଏଥିରେ ପଦ ବ୍ୟବସ୍ଥା ନାହିଁ । ତେଣୁ ଲକ୍ଷଣରେ 'ଅର୍ଦ୍ଧ' ଶବ୍ଦର ବ୍ୟବହାର ଦେଖାଯାଏ । ହଳାୟୁଧଙ୍କ ମତରେ ଆର୍ଯ୍ୟାଦି ଛନ୍ଦର ପଦବ୍ୟବସ୍ଥା ନାହିଁ । ଦୁଇପାଦ ସଂଯୁକ୍ତ ହୋଇଥାଏ । ବୃତ୍ତରେ ପୁନଃ ପୃଥକ୍ ହୋଇଥାଏ ।

Digitized by srujanika@gmail.com

ବାଙ୍ମୟ ବିବେକରେ ଗଳିତକର ଲକ୍ଷଣ— ଏହାର ପ୍ରତି ଅର୍ଦ୍ଧଭାଗର ଅନ୍ତଭାଗ ଯମକଯୁକ୍ତ ହେବ । ଏଥିରେ ମାତ୍ରା ସଂଖ୍ୟା ଗ୍ରହଣୀୟ ନୁହେଁ । ସବୁମାତ୍ରା ଅଦୀର୍ଘ ଅର୍ଥାତ୍ ଏକମାତ୍ର ରୂପେ ଉଚ୍ଚାରିତ ହେବ, ଗଣନା କରାଯିବ ।

ମନ୍ତବ୍ୟ— ସଂସ୍କୃତ ପଦ୍ୟରେ ଚ୍ୱରିପାଦ ହେବା ବିଧି । କିନ୍ତୁ ପ୍ରାକୃତ ଭାଷାର ''ଗଳିତକ''ରେ ପାଦ ବ୍ୟବସ୍ଥା ନାହିଁ । ଏଥିରେ ଅର୍ଦ୍ଧଭାଗ କଳ୍ପନା କରାଯାଇଛି । ସଂସ୍କୃତ ପଦ୍ୟରେ ପାଦ ଶେଷରେ ଅକ୍ଷର-ମୈତ୍ରୀ ଅବଶ୍ୟ କର୍ତ୍ତବ୍ୟ ନୁହେଁ । କିନ୍ତୁ ଗଳିତକରେ ଏହା ଅବଶ୍ୟ କର୍ତ୍ତବ୍ୟ । ଗଳିତକ ଅନେକ ପ୍ରକାର । ବାଙ୍ମୟ ବିବେକରେ ଏହା ବିସ୍ତୃତ ଉଦାହରଣ ସହ ଲିଖିତ । ଆମ ଛାନ୍ଦ ସାହିତ୍ୟରେ ଗଳିତକ ପରି ଅକ୍ଷରମୈତ୍ରୀ ଅପରିହାର୍ଯ୍ୟ । ଆହୁରି ମଧ୍ୟ ପ୍ରତି ଅକ୍ଷରକୁ ଏକମାତ୍ର ରୂପେ ଗ୍ରହଣ କରାଯାଇଥାଏ ।

ସ୍କନ୍ଧ ଶବ୍ଦ ସଂସ୍କୃତ ଭାଷାରେ କ, ଖ ଓ ଗ ଚିହ୍ନିତ ଅର୍ଥରେ ବ୍ୟବହୃତ ହେଉଥିବାର ଉଦାହରଣ ଦିଆଗଲା । ଆମ ଓଡ଼ିଆ ଭାଷାରେ 'କ' ଓ 'ଖ' ଚିହ୍ନିତ ଅର୍ଥରେ ଅର୍ଥାତ୍ ରଚନା ବିଶେଷ ଓ ପରିଚ୍ଛେଦ ବିଶେଷ ଅର୍ଥରେ ବ୍ୟବହୃତ ହୋଇଥାଏ । ଏହାର ଦୃଷ୍ଟାନ୍ତ—

୧୮୯୬ ଖ୍ରୀଷ୍ଟାବ୍ଦରେ ପ୍ରିଣ୍ଟିଂ କମ୍ପାନୀରୁ ପ୍ରକାଶିତ 'ସଙ୍ଗୀତ ସୁଧାନିଧି' ପୁସ୍ତକର (ଦ୍ୱିତୀୟ ସଂସ୍କରଣ) ଆଠ ପୃଷ୍ଠାରେ ନିମ୍ନଲିଖିତ ଗୀତଟି ଅଛି ।

**ଛାନ୍ଦ** ରାଗ । ସ୍ୱୟଂ ଦୂତୀ ।

ମଦନ ଅନଳେ ବାଇପରି କେ ଯୁବତୀ ।
ଆଚରଇ ପ୍ରଳାପରେ ସ୍ୱୟଂଦୂତୀ ଭୀତି । ୧ ।
କେଉଁ ପଥିକକୁ ପୁଚ୍ଛେ କି ହେ ପାଟପୋଷି ।
ବୁଝ ତ କି ଯୋଗ ଆଜ ପତି ପରବାସୀ । ୨ ।
x x x
ଅନାଅନା ନେତ୍ରାଞ୍ଚଳେ ପିଇଦେଲା ପରି ।
ଅଧର ମଧୁପାନରେ ଧରି ପରନାରୀ । ୭ ।
ଶୁଣି ତାକୁ ଦ୍ୱାରତୁଲ୍ୟ କଲା ପାନ୍ଥ ଯୁବା
କହେ ଅଷ୍ଟଦୁର୍ଗ ସ୍ୱର୍ଗ ନଗରୀ ମଘବା । ୮ ।

ଉକ୍ତ ସଙ୍ଗୀତ କବିସୂର୍ଯ୍ୟଙ୍କ ରଚିତ ଓ ଆଠଗଡ଼ ରାଜାଙ୍କ ନାମରେ ଭଣିତ । ଏଠାରେ ଛାନ୍ଦ ଗୋଟିଏ ରାଗକୁ ବୁଝାଉଛି । ଏହି ଛାନ୍ଦ ଶବ୍ଦ ବିଶ୍ୱନାଥ କବିରାଜଙ୍କ ସ୍କନ୍ଧ ଶବ୍ଦର ଓ ପିଙ୍ଗଳୋକ୍ତ ପ୍ରାକୃତ ଖନ୍ଧା ଶବ୍ଦର ଓଡ଼ିଆ ରୂପ ଏଥିରେ ସନ୍ଦେହ ନାହିଁ । ଏହି ଛାନ୍ଦ ଶବ୍ଦ ଯେ ସଂସ୍କୃତ 'ଛନ୍ଦସ୍'ରୁ ଉତ୍ପନ୍ନ ହୋଇନାହିଁ— ଏହାମଧ୍ୟ ନିଃସନ୍ଦେହ । 'ଛନ୍ଦସ୍'ରେ ସ୍ଥଳବିଶେଷରେ ଗୁରୁ ଲଘ୍ୱକ୍ଷର ପ୍ରୟୋଗର ନିୟାମକ ରଚନା ପ୍ରଣାଳୀ ମାତ୍ରକୁ ବୁଝାଇଥାଏ ।

Digitized by srujanika@gmail.com

କିନ୍ତୁ ସ୍କନ୍ଧ ଶବ୍ଦ ରଚନା, ପରିଚ୍ଛେଦ ଓ ଛନ୍ଦୋବିଶେଷକୁ ବୁଝାଉଥିବାରୁ ଅନନ୍ତରୋକ୍ତ ପ୍ରମାଣ ଦ୍ୱାରା ସିଦ୍ଧ ହେଲା । ଆମ 'ଛାନ୍ଦ' ଶବ୍ଦ ମଧ୍ୟ ଏହି ଅର୍ଥତ୍ରୟର ଜାତକରୂପେ ପ୍ରଯୁକ୍ତ ହେଉଥିବା ପ୍ରମାଣସିଦ୍ଧ ।

**ପ୍ରାଚୀନ କବିମାନଙ୍କ ଦୃଷ୍ଟିରେ ଛାନ୍ଦ ଓ ପ୍ରବନ୍ଧ ଶବ୍ଦର ପ୍ରବୃତ୍ତି :**

ବ୍ରଜନାଥ ବଡ଼ଜେନା 'ସମର ତରଙ୍ଗ'ର ସପ୍ତମ ଛାନ୍ଦରେ ଲେଖିଛନ୍ତି,

(କ) ସଂସ୍କୃତ ପରାକୃତ ଖୋରଠା ବୋଲି
ନାନା ଭାଷାରେ ଗୀତ କବିତା କଲି ।
ବିବିଧ ଚଉପଦୀ ଚଉତିଶା ହିଁ
ବୋଲି **ଛାନ୍ଦ ପ୍ରବନ୍ଧ** ବୋଲିଛି ମୁହିଁ ।

ଏଥିରୁ ଜଣାଯାଏ, ଚଉତିଶା, ଚଉପଦୀ ବୋଲି ଓ ଛାନ୍ଦ ପ୍ରବନ୍ଧ— ଏଗୁଡ଼ିକ ଭିନ୍ନ ଭିନ୍ନ ଗୀତିର ରଚନା ।

ସେ ପୁଣି 'ରାଜସଭା' ପୁସ୍ତକର ୧୧ପଦରେ ଲେଖିଛନ୍ତି,

(ଖ) ଚଉପଦୀ ଚଉତିଶା ବିବିଧ ଲୀଳା
**ଛାନ୍ଦ ବୋଲି ପୋଇ ପ୍ରବନ୍ଧ**
ଦଣ୍ଡକ ଚୂର୍ଣକ ଆଦି ଶକାର ବନ୍ଧ ।

ସେହି ପୁସ୍ତକର ୭୪ ପଦରେ

(ଗ) 'ବିଚକ୍ଷଣା' ପଦର ଛାନ୍ଦ,
ବ, ବା, ବି, ବୁ, ବେ, ବୈ, ବୋ, ବୌ କ୍ରମେ **ପ୍ରବନ୍ଧ** ।

(ଘ) 'ଗୁଣ୍ଡିଚ୍ଚା ବିଜେ'ରେ ସେହି କବି ଲେଖିଛନ୍ତି,

ଗୁଣ୍ଡିଚ୍ଚା କବିତା ଗୀତ **ଛନ୍ଦ ପରବନ୍ଧ** ବତ
ବହୁବିଧ ଯାତକୀ ଜାତ ଖ୍ୟାଲା ।

(ଘ)ରେ ପ୍ରଦତ୍ତ 'ଛନ୍ଦ୍' ଶବ୍ଦର ପ୍ରୟୋଗ ଦେଖି ଏହା 'ଛନ୍ଦସ୍' ଶବ୍ଦରୁ ଉତ୍ପନ୍ନ ବୋଲି ଭାବିବା ଠିକ୍ ନୁହେଁ । କବି ହିନ୍ଦୀ ଭାଷାରେ ଲେଖିଥିବାରୁ ଏପରି ଲେଖିଛନ୍ତି; କିନ୍ତୁ ଅନ୍ୟସବୁ ସ୍ଥଳରେ 'ଛନ୍ଦପ୍ରବନ୍ଧ' ଲେଖିଅଛନ୍ତି ।

ଉପରଲିଖିତ ଉଦାହରଣମାନଙ୍କରେ ପ୍ରବନ୍ଧ ଶବ୍ଦଟି ଛାନ୍ଦ ଶବ୍ଦର ସହଚରିତ ଓ ସମ୍ବନ୍ଧବାନ୍ ପଦରୂପେ ବ୍ୟବହୃତ ହୋଇଅଛି । ମଥୁରାମଙ୍ଗଳ ଛାନ୍ଦ ୧୪ । ୨୩ ପଦରେ ଛାନ୍ଦ ପ୍ରବନ୍ଧ ଶବ୍ଦ ପ୍ରୟୋଗ ହୋଇଛି ।

Digitized by srujanika@gmail.com

ସଂସ୍କୃତ ଓ ଓଡ଼ିଆ ଉଭୟ ଭାଷାରେ ପ୍ରବନ୍ଧ ଶବ୍ଦ ସର୍ବବିଧ ରଚନାକୁ ବୁଝାଉଥିଲେ ସୁଦ୍ଧା ଏଠାରେ ଯୋଗରୂଢ଼ ଶବ୍ଦରୂପେ ବ୍ୟବହୃତ । ତେଣୁ ଏହି ପ୍ରବନ୍ଧ ଶବ୍ଦ ସଂଗୀତ ଶାସ୍ତ୍ରସମ୍ମତ ପ୍ରବନ୍ଧକୁ ବୁଝାଏ । ଜୟଦେବଙ୍କ ''ଗୀତଗୋବିନ୍ଦ''ରେ ''ଏତଂ କରୋତି ଜୟଦେବ କବିଃ ପ୍ରବନ୍ଧଂ'' ସ୍ଥଳରେ ବ୍ୟବହୃତ ପ୍ରବନ୍ଧ ଶବ୍ଦ ମଧ୍ୟ ସଂଗୀତ ଶାସ୍ତ୍ରୀୟ ପ୍ରବନ୍ଧପର । ଗୀତଗୋବିନ୍ଦରେ ପାଠ୍ୟ ଓ ଗୀତ ଉଭୟର ସମାବେଶ ହୋଇଛି । ଏଥିରେ ଥିବା ଶ୍ଳୋକଗୁଡ଼ିକ ପାଠ୍ୟ ଓ ରାଗବିଶେଷ ଓ ତାଳବିଶେଷ ଦ୍ୱାରା ଯାହାକୁ ଗାନ କରିବାକୁ ନିର୍ଦ୍ଦେଶ ଦିଆଯାଇଚି, ତାହା ଗୀତ । ଯେପରିକି 'ଲଳିତ ଲବଙ୍ଗଲତା' ଗୀତ ପାଇଁ ଲେଖାଅଛି, ''ବସନ୍ତ ରାଗ ଯତି ତାଳାଭ୍ୟାଂ ଗୀୟତେ ।''

ଋଗ୍‌ବେଦରେ ଅର୍ଥ ଅନୁସାରେ ପାଦର ବ୍ୟବସ୍ଥା କରାଯାଇଛି । କ୍ୱଚିତ୍ ଗଦ୍ୟ କ୍ୱଚିତ୍ ପଦ୍ୟାତ୍ମକ । ଗୀତିଯୁକ୍ତ (ଗାନଯୋଗ୍ୟ) ହେଲେ ଏହା ସାମ । ଯେଉଁଥିରେ ଛନ୍ଦ ନାହିଁ, ଯାହା ଧ୍ୟେୟ ନୁହେଁ, ତାହା ଯଜୁଃ । ଏଥିରୁ ଜଣାଯାଏ— ଛନ୍ଦୋବଦ୍ଧ ପଦ୍ୟ ଏବଂ ଗୀତ ଏ ଦୁଇଟି ପୃଥକ୍ ପଦାର୍ଥ ।

କାବ୍ୟ ମୀମାଂସାର ସପ୍ତମ ଅଧ୍ୟାୟ ଅନୁସାରେ କି ଗଦ୍ୟ କି ପଦ୍ୟ କି ମିଶ୍ର (ନାଟକ) ସବୁପ୍ରକାର କାବ୍ୟରେ ପାଠ କାଳରେ ଦ୍ରାବିଡ଼ କବିମାନେ ଗାନ ରୀତିରେ ପାଠ କରନ୍ତି ।

ଅଭିନବଗୁପ୍ତ ଲୋଚନ ଟୀକାରେ ଲେଖିଛନ୍ତି, କାବ୍ୟ—ଗୀତ ନୁହେଁ । ''କବନୀୟଂ କାବ୍ୟଂ । ତସ୍ୟ ଭାବଶ୍ଚ କବନୀୟତ୍ୱଂ । ନ ଚ ନୃତ୍ତଗୀତାଦି କବନୀୟ ମୁଚ୍ୟତେ ।'' (୧ମ ଉଦ୍ଯୋତ) । ଆମ କବିମାନେ ସେହି କାରଣରୁ ନିଜ ରଚନାକୁ କାବ୍ୟ ନ କହି ଗୀତ ବା ପ୍ରବନ୍ଧ କହିଛନ୍ତି । ଉପେନ୍ଦ୍ରଭଞ୍ଜ ଶ୍ଳେଷ ଯମକାଦି ଅଳଙ୍କାରମୟ ରଚନାର ବୋଧ ସୌକର୍ଯ୍ୟ ପାଇଁ ଯେଉଁ କୋଷଗ୍ରନ୍ଥ ଭାଷାରେ ଲେଖିଛନ୍ତି, ତାର ନାମ ''ଗୀତାଭିଧାନ'' ।

ତେବେ ଗୀତ କ'ଣ ?

କର୍ଣ୍ଣାଟବାସୀ ହରି ନାୟକ ସଂଗୀତସାର ଗ୍ରନ୍ଥରେ ଲେଖିଛନ୍ତି,

''ଗୀତଂ ରଞ୍ଜକ-ଧାତୁ-ମାତୁ ସହିତଂ ।'' ମନୋହର ଧାତୁ ଓ ମାତୁର ସମାହାର ହେଉଛି ଗୀତ । ''ଗୁଣାଦି ଧାରଣଦ୍ଧାତୁର୍ଗୀତାବୟବ ଏବ ସଃ ।''

ଧାତୁର ଲକ୍ଷଣ— ଗୁଣ ଅଳଙ୍କାର ବାକ୍ୟରେ ରଞ୍ଜନ ଓଜସ୍ୱିତା ରହିଥିବ । ''ମାତୁଃ ସ କଥିତ ସ୍ତଜଜ୍ଞୈର୍ମୁନିଭିର୍ଭରତାର୍ଦିଭିଃ ।''

ପ୍ରସାଦ, ମାଧୁର୍ଯ୍ୟ ଓ ଓଜଃ ଗୁଣ ଏବଂ ଅନୁପ୍ରାସାଦି ଅଳଙ୍କାର ଧାରଣ କରୁଥିବାରୁ ଗୀତର ଅବୟବକୁ— **ଗୀତଘଟକ** ଗୁଣାଳଙ୍କାରମୟ ବାକ୍ୟାବଳୀର ରଞ୍ଜକତା ଓ ଓଜସ୍ୱିତା ଯାହା ଯୋଗୁ ଉତ୍ପନ୍ନ ହୁଏ, ତାହାକୁ ମାତୁ କହନ୍ତି । ନାରଦସଂହିତାର ମତ ଅନୁରୂପ ।

Digitized by srujanika@gmail.com

ଉଭୟଙ୍କ ମିଶ୍ରଣରେ ଗୀତର ଉତ୍ପତ୍ତି । ଧାତୁ ବା ମାତୁ ଭାବେ ଗୀତ ପଦବାଚ୍ୟ ହୁଅନ୍ତି ।

ଗୀତ ଦୁଇପ୍ରକାର— ଅନିବଦ୍ଧ ଓ ନିବଦ୍ଧ । ଯେଉଁଥିରେ ଧାତୁ ବା ମାତୁ ନାହିଁ, କେବଳ ଲାଳିତ୍ୟ ଅଛି, ତାହା ଅନିବଦ୍ଧ ଗୀତ ।

ହରିନାୟକଙ୍କ ମତରେ ଅକ୍ଷର-ବର୍ଜିତ ସଙ୍ଗୀତ-ଶାସ୍ତ୍ର ପ୍ରସିଦ୍ଧ ଗମକର ଆଳାପକୁ ଅନିବଦ୍ଧ ଗୀତ କହନ୍ତି ।

ନିବଦ୍ଧ ଗୀତ— ପ୍ରବନ୍ଧ— ଧାତୁ ଓ ଅଙ୍ଗବିଶିଷ୍ଟ ରଚନା ନିବଦ୍ଧ ଗୀତ । ଏହି ନିବଦ୍ଧ ଗୀତର ଅପର ନାମ ପ୍ରବନ୍ଧ । ପ୍ରବନ୍ଧର ଷଡ଼ ଅଙ୍ଗ— ସଦ, ସ୍ୱର, ତେନ, ପାଟ, ତାଳ ଓ ବିରୁଦ ।

ସଦ—ଅର୍ଥବାନ୍ ପରସ୍ପର ଅନ୍ୱିତ ଶବ୍ଦସମୂହ ।
ସ୍ୱର—ସ, ରି, ଗ, ମ, ପ, ଧ, ନି— ଏହି ସ୍ୱରର ନିବେଶ ।
ତେନ—ତାନା, ତାନା ଶବ୍ଦର ଗୀତ—ରାଗ ଅନୁସାରେ ଆବୃତ୍ତ ।
ପାଟ—ରୋକଟ (ଧା, ଧା, ଧୁଗୁ, ଧୁଗୁ ଇତ୍ୟାଦି)
ତାଳ—ଆଦି, ଯତି ପ୍ରଭୃତି ତାଳର ବିନ୍ୟାସ ।

ବିରୁଦ— ଗୀତ ଶେଷରେ କବି ବା ନାୟକର ଗୁଣ ବର୍ଣ୍ଣନାଯୁକ୍ତ ପଢ଼ାଯାଉଥିବା ଗଦ୍ୟ । ଏହି ଛଅ ଅଙ୍ଗ ଶୁଦ୍ଧ ପ୍ରବନ୍ଧରେ ବ୍ୟବହୃତ ହୁଏ । କ୍ଷୁଦ୍ର ପ୍ରବନ୍ଧ ଓ ସାଲଗ (ଛାୟାଲଗ) ବୋଲି ଆଉ ଦୁଇପ୍ରକାର ପ୍ରବନ୍ଧ ଅଛି । କ୍ଷୁଦ୍ର ପ୍ରବନ୍ଧର ଅନ୍ୟ ନାମ ସଂକୀର୍ଣ୍ଣ (ସଂଗୀତ ନାରାୟଣ) ।

ଛାନ୍ଦ ସାହିତ୍ୟର ଅନେକ ସ୍ଥଳରେ ଏକ ଜାତୀୟ ପଦବିନ୍ୟାସବିଶିଷ୍ଟ ସମାକ୍ଷର ଗୀତରେ ଭିନ୍ନ ଭିନ୍ନ ପ୍ରକାର ରାଗର ନାମ ଦିଆଯାଇଥାଏ । ଉଦାହରଣସ୍ୱରୂପ— ରାମକୃଷ୍ଣ କେଳିକଲ୍ଲୋଳ (ତ୍ରିପୁରାରି ଦାସ)—

୧୦ମ ଛାନ୍ଦ ଶଙ୍କରାଭରଣ, ରାଗ—ଭାଗବତବାଣୀ ୯ ଅକ୍ଷର,
୧୫ଶ ଛାନ୍ଦ—କେଦାର କାମୋଦୀ ୧୨ ଅକ୍ଷର, ଅନ୍ୟତ୍ର କଳହଂସ କେଦାର ।
୨୬ଶ ଛାନ୍ଦ—ଆଶାବରୀ—ରସକୁଲ୍ୟା ବାଣୀ
ପଦ୍ମାବତୀ ପରିଣୟ (ଲୋକନାଥ ବିଦ୍ୟାଧର)—
୧୮ଶ ଛାନ୍ଦ—ରାଗ କଲ୍ୟାଣ ଆହାରୀ—ଶ୍ରେଣୀ ବାଣୀରେ ଗାଇବ ।

ଏହା ଛାନ୍ଦ ଗୀତର ତାଳ-ପ୍ରାଧାନ୍ୟକୁ ସୂଚାଉଛି । ଆମ ଛାନ୍ଦ ଗୀତର ଅକ୍ଷର ବିନ୍ୟାସାଦି କେବଳ କାଳଦ୍ୱାରା ନିୟମିତ ହୁଏ । ଏହା କ୍ଷୁଦ୍ର ପ୍ରବନ୍ଧର ଲକ୍ଷଣ । କ୍ଷୁଦ୍ର

Digitized by srujanika@gmail.com

ପ୍ରବନ୍ଧରେ ଖଣ୍ଡ—ଉଦ୍‌ଗ୍ରହ, ଧ୍ରୁବ ଓ ଆଭୋଗ (ଓଡ଼ିଆରେ ଘୋଷା, ପଦ, ଭଣିତା) ପ୍ରଭୃତିରେ ଥିବା ଅକ୍ଷରମାନଙ୍କ ମାତ୍ରା ପ୍ରଭୃତି ଉପରେ ଦୃଷ୍ଟି ଦିଆଯାଏ ନାହିଁ । ପ୍ରାୟ ସବୁ ଅକ୍ଷରକୁ ହ୍ରସ୍ୱମାତ୍ରକ କରି ପାଠ କରାଯାଏ ।

ସଙ୍ଗୀତ ନାରାୟଣରେ ଉକ୍ତ ଅଛି, "ଗୀତରେ କୌଣସି କୌଣସି ସ୍ଥଳରେ ଦୀର୍ଘ ବର୍ଣ୍ଣ ହ୍ରସ୍ୱରୂପେ ଏବଂ ହ୍ରସ୍ୱ ଦୀର୍ଘରୂପେ ଉଚ୍ଚାରିତ ହୁଏ । କୌଣସି ବର୍ଣ୍ଣ ଦ୍ୱିତ୍ୱପ୍ରାପ୍ତ ହେଲାପରି ଉଚ୍ଚାରିତ ହୁଏ । ଯଥା—(ନ୍ନ = ନ)+ପ୍ରସନ୍ନ = ପରସନ । ଏହାର ବିପରୀତ ମଧ୍ୟ ଦେଖାଯାଏ । ଯଥା— ଦରହାସ = ଦ୍ରହାସ । କେତେକ ସ୍ଥଳରେ ରେଫ୍ ( ର୍ ) ର ଫଳା ( ୍ର ) ରୂପେ ଓ ର ଫଳା ରେଫ୍ ରୂପେ ଉଚ୍ଚାରିତ ହୁଏ । ଯଥା— ଦର୍ଶନ = ଦ୍ରଶନ, ପ୍ରକଟ = ପର୍କଟ ।

ଗୀତ ପ୍ରକାଶ ଓ ସଙ୍ଗୀତ ଦାମୋଦରରେ ଲେଖା ଅଛି, ଭାଷା ଗୀତରେ ପୁନରୁକ୍ତି, ବର୍ଣ୍ଣର ଶୀଘ୍ର କିମ୍ବା ମିଶାମିଶି କରି ଉଚ୍ଚାରଣ ବା ଲମ୍ୱେଇ ଉଚ୍ଚାରଣ ଦୋଷାବହ ନୁହେଁ ।

ଆମ ଛାନ୍ଦ ସାହିତ୍ୟରେ ଏପରି ବହୁଳଭାବେ ଦୃଷ୍ଟିଗୋଚର ହେଉଥିବାରୁ ପ୍ରାଚୀନ କବିମାନଙ୍କର ଈଦୃଶ ପ୍ରୟୋଗକୁ ଅଜ୍ଞତାଜନିତ କହିବା ନିଜର ଅଜ୍ଞତାସୂଚକ । ବୋଧହୁଏ ଗଙ୍ଗବଂଶୀୟ ଗଜପତିମାନଙ୍କ ରାଜତ୍ୱରେ କର୍ଣାଟବାସୀ ହରିନାୟକଙ୍କ ମତ ଉତ୍କଳରେ ପ୍ରସାର ଲାଭ କରିଥିଲା । ତେଣୁ ପ୍ରଥମେ ଚଉପଦୀ ତତ୍ପରେ ଛାନ୍ଦର ପ୍ରଚଳନ ହୋଇଥିବା ସମ୍ଭବପର । କେବଳ ପ୍ରାକୃତ ଭାଷାରେ ପ୍ରଯୁଜ୍ୟ ଗଳିତକ ଛାନ୍ଦର କଥା ଉତ୍କଳୀୟ ବିଶ୍ୱନାଥ ଓ ଉତ୍କଳୀୟ ବାଙ୍ମୟ ବିବେକକାରଙ୍କ ପୁସ୍ତକରେ ଦୃଷ୍ଟ ହୁଏ, ତାହାର ଲକ୍ଷଣ ଉକ୍ତ ମତର ଅନୁରୂପ ଅଟେ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଓଡ଼ିଆ ଛାନ୍ଦ ଗୀତରେ ସଙ୍ଗୀତ ଶାସ୍ତ୍ରୋକ୍ତ ପ୍ରବନ୍ଧର ଲକ୍ଷଣମାନ ସୁପରିସ୍ଫୁଟ ଥିବା ପ୍ରତୀତ ହୁଏ । ପୁଣି ଅଳଙ୍କାର ଶାସ୍ତ୍ରସମ୍ମତ ମହାକାବ୍ୟ (ପ୍ରାକୃତ ନାମ ସ୍କନ୍ଧ) ଲକ୍ଷଣମାନ ମଧ୍ୟ ଏଥିରେ ବିଦ୍ୟମାନ । କାରଣ ମହାକାବ୍ୟ ଆଶୀର୍ବାଦ ବା ନମସ୍କ୍ରିୟା ଦ୍ୱାରା ଆରମ୍ଭ, ପୌରାଣିକ ବା କାଳ୍ପନିକ କଥା ଏହାର ବିଷୟବସ୍ତୁ । ରାମ, କୃଷ୍ଣ ଆଦି ଚତୁର ଓ ଉଦାର ଦିବ୍ୟାଦିବ୍ୟ ପୁରୁଷ ଏହାର ନାୟକ । ଏଥିରେ ନଗର, ଶୈଳ, ଋତୁ, ସୂର୍ଯ୍ୟ ଚନ୍ଦ୍ରଙ୍କର ଉଦୟାସ୍ତ, ବନବିହାର, ଜଳକେଳି ଓ ରତୋତ୍ସବ ପ୍ରଭୃତି ବର୍ଣ୍ଣିତ ଏବଂ ଏହା ପ୍ରଚୁର ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରରେ ମଣ୍ଡିତ । ରସ ଓ ଭାବ ପ୍ରଭୃତିର ସମାବେଶର ଅଭାବ ମଧ୍ୟ ନାହିଁ । ବହୁ ସ୍କନ୍ଦ ବା ଛାନ୍ଦ ବା ସର୍ଗରେ ବିଭକ୍ତ । ଅତଏବ ସଂସ୍କୃତ ଭାଷାରେ ଏହାର ନାମ ମହାକାବ୍ୟ ବା ସର୍ଗବନ୍ଧ, ପ୍ରାକୃତ ଭାଷାରେ ସ୍କନ୍ଧ ତଥା ଓଡ଼ିଆ ଭାଷାରେ ଛାନ୍ଦ ଅଟେ । ଏହିପରି ଛାନ୍ଦ ଓ ପ୍ରବନ୍ଧ ଲକ୍ଷଣାକ୍ରାନ୍ତ ହୋଇଥିବାରୁ କବିମାନେ ଏହାକୁ ଛାନ୍ଦପ୍ରବନ୍ଧ ଆଖ୍ୟା ଦେଇଅଛନ୍ତି ।

Digitized by srujanika@gmail.com

ବେତାଳ ପଞ୍ଚବିଂଶତିର ଦୁଇଟି ପ୍ରାଚୀନ ଓଡ଼ିଆ ଅନୁବାଦ ଦେଖାଯାଏ । ସେଥିମଧ୍ୟରୁ ଗୋଟିଏ ଗଦ୍ୟରେ ଓ ଅନ୍ୟଟି ପଦ୍ୟରେ ଲିଖିତ । ପଦ୍ୟ ବେତାଳ ପଞ୍ଚବିଂଶତିର ନାମ ପୋଥି ଉପରେ "ଛାନ୍ଦପ୍ରବନ୍ଧ ବେତାଳ ପଞ୍ଚିଶା" ଲେଖାଯାଇଛି ; କିନ୍ତୁ ଗଦ୍ୟ ବହିରେ କେବଳ 'ବେତାଳ ପଞ୍ଚିଶ ଲିଖିତ' । ଏଣୁ "ଛାନ୍ଦପ୍ରବନ୍ଧ" ପଦଟି ମଧ୍ୟ ସମସ୍ତ ପଦ ଅଟେ । ଅନ୍ୟ କବିମାନେ ଏହିପରି ସମସ୍ତ ପଦରେ "ଛାନ୍ଦପ୍ରବନ୍ଧ" ଶବ୍ଦର ବ୍ୟବହାର କରିଛନ୍ତି । ପୂର୍ବୋଦ୍ଧୃତ ବଡ଼ଜେନାଙ୍କ ଲେଖା ଏହାର ପ୍ରମାଣ ।

ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣି ସହିତ ପ୍ରୋକ୍ତ ଛାନ୍ଦ ପ୍ରବନ୍ଧର ଲକ୍ଷଣକୁ ମିଳାଇ ତାହାର ଯୌକ୍ତିକତା ଦେଖାଯାଉ ।

ବିଦଗ୍ଧଚିନ୍ତାମଣି ଏକ ୯୬ ଛାନ୍ଦବିଶିଷ୍ଟ ରଚନା । ଏହା ଅନେକ ତାଳଯୁକ୍ତ ଗୁଣାଳଙ୍କାରମୟ ବାକ୍ୟରେ ଘଟିତ । ଏହାର ପ୍ରଥମ ଛାନ୍ଦ ସଙ୍ଗୀତ ଶାସ୍ତ୍ର ପ୍ରସିଦ୍ଧ 'ମାତୃକା ପ୍ରବନ୍ଧ' । ଇଷ୍ଟଦେବ ସ୍ତୁତିରୂପ ମଙ୍ଗଳକୁ କବି ମଙ୍ଗଳ ରାଗରେ ଲେଖିଛନ୍ତି । ନିର୍ବିଘ୍ନରେ ଗ୍ରନ୍ଥ ସମାପ୍ତି ପାଇଁ ମଙ୍ଗଳାଚରଣ କରାଯିବା ଶିଷ୍ଟ ପରମ୍ପରା । ମାତୃକା ସର୍ବମନ୍ତ୍ରମୟୀ ଓ ସର୍ବସିଦ୍ଧି ପ୍ରଦାୟିନୀ । ତେଣୁ କବି ପ୍ରଥମରେ ତାକୁ ଗ୍ରହଣ କରିଛନ୍ତି । ପାରଳା ମହାରାଜା ଗଜପତି ନାରାୟଣ ଦେବଙ୍କ 'ସଙ୍ଗୀତ ନାରାୟଣ'ରେ ମାତୃକା ପ୍ରବନ୍ଧର ଲକ୍ଷଣ ସମ୍ପର୍କରେ କୁହାଯାଇଛି, ମାତୃକା— ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ୡ, ଏ, ଐ, ଓ, ଔ, ଅଂ, ଅଃ ଏହି ୧୬ଟି ସ୍ୱରବର୍ଣ୍ଣ ଏବଂ 'କ'ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ଟି ବ୍ୟଞ୍ଜନ ବର୍ଣ୍ଣକୁ ବୁଝାଏ । ଅଭିମନ୍ୟୁ ଏହି ୫୦ଟି ଅକ୍ଷରକୁ ଆଦ୍ୟରେ ରଖି ୫୦ ପଦରେ ପ୍ରଥମ ଛାନ୍ଦ ଶେଷ କରିଅଛନ୍ତି । ଏହା ହିଁ ମାତୃକା ପ୍ରବନ୍ଧର ନିୟମ । ତାହା ପୁଣି ତିନି ପ୍ରକାର । ଯଥା— ଦିବ୍ୟା, ମାନୁଷୀ ଓ ଦିବ୍ୟମାନୁଷୀ । ଏହି ହେତୁ ଅଭିମନ୍ୟୁ "ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେବ ସିଦ୍ଧି" ଗ୍ରନ୍ଥର ଉପକ୍ରମରେ ଲେଖିଛନ୍ତି । ଏଥିରେ ଗୋଟିଏ ତାଳ, ଗୋଟିଏ ରାଗ ବ୍ୟବହୃତ ହୁଏ । କିମ୍ବା ବହୁତାଳ ବା ବହୁ ରାଗର ବିନ୍ୟାସ ହୋଇପାରେ । ଏହା ସର୍ବମନ୍ତ୍ରମୟୀ ଓ ସର୍ବସିଦ୍ଧି ପ୍ରଦାୟିନୀ ଅଟେ ।

ଭୋଗାବଳୀ ପ୍ରବନ୍ଧର ପ୍ରୋକ୍ତ ଲକ୍ଷଣରେ "ସ୍କନ୍ଧ ସମନ୍ୱିତା" ବୋଲି ଲେଖାଅଛି । ବିଦଗ୍ଧ ଚିନ୍ତାମଣିର ୯୬ ଛାନ୍ଦ ଗୋଟିଏ ଗୋଟିଏ ପରିଚ୍ଛେଦ ବା ସର୍ଗ ଅଟେ ।

ଭୋଗାବଳୀ ଲକ୍ଷଣରେ ପ୍ରତି ସର୍ଗ ବା ଛାନ୍ଦରେ ଭିନ୍ନ ଭିନ୍ନ ପ୍ରକାର ରଚନାରୀତି ଅନୁସୃତ ହେବା ବିଧି ଅଛି । ବିଦଗ୍ଧ ଚିନ୍ତାମଣିରେ ୧ମ ଛାନ୍ଦ ମାତୃକା ପ୍ରବନ୍ଧ, ୨ୟ— ଆଦ୍ୟଯମକ, ୩ୟ—ଅନ୍ତ୍ୟାନୁପ୍ରାସ, ୪ର୍ଥ—ଅନୁପ୍ରାସ ଇତ୍ୟାଦି । ଏହିପରି ଆ, ଇ, ଉ, କ, ଚ, ଟ, ତ, ପ, ସ, ବ ପ୍ରଭୃତି ବର୍ଣ୍ଣକୁ ଆଦ୍ୟରେ ରଖି ଛାନ୍ଦମାନ ରଚିତ ହୋଇଛି ।

Digitized by srujanika@gmail.com

ଏଗୁଡ଼ିକ ବର୍ଣ ବିଶେଷ ଅବଲମ୍ବିତ ହୋଇ ରଚିତ ଥିବାରୁ 'ସଂଗୀତ ନାରାୟଣ'ରେ ଏହାର ନାମ 'ବର୍ଣପ୍ରବନ୍ଧ' । ଏହି ରୀତିରେ ବୈଦେହୀଶ ବିଳାସ, ଅମ୍ବିକା ବିଳାସ, ସୁଭଦ୍ରା ପରିଣୟ, ରସକଲ୍ଲୋଳ, କଳାକୌତୁକ ଓ ଶ୍ୟାମରାସୋତ୍ସବ ପ୍ରଭୃତି ସ୍କନ୍ଧ ବା ଛାନ୍ଦବିଶିଷ୍ଟ ଗ୍ରନ୍ଥମାନ ''ବର୍ଣପ୍ରବନ୍ଧ'' ।

ଚଉତିଶାଗୁଡ଼ିକୁ 'ସଂକ୍ଷିପ୍ତ ମାତୃକା ପ୍ରବନ୍ଧ', 'ବ୍ୟଞ୍ଜନ ପ୍ରବନ୍ଧ' ବା 'ଚଉତିଶା ପ୍ରବନ୍ଧ' କୁହାଯାଇପାରେ । ହିନ୍ଦୀରେ କବୀରଙ୍କ 'ଚଡିଶା' ରୀତିରେ ଅସମର କବି ଶଙ୍କର ଦେବ (୧୪୪୯-୧୫୬୯) ଅସମୀ ଭାଷାରେ 'ଚତିହା' ଲେଖିଥିଲେ । ଇଂରାଜୀରେ ଚସର ଲାଟିନ୍ ବର୍ଣମାଳା ପ୍ରଥମରେ ରଖି କବିତା ଲେଖିଛନ୍ତି ।

ଭୋଗାବଳୀ ପ୍ରବନ୍ଧରେ ''ଅଷ୍ଟଭିର୍ବା, ଚତୁର୍ଭିର୍ବା ବାକ୍ୟୈଃ''— ଅର୍ଥାତ୍ ପ୍ରତି ସ୍କନ୍ଧ ବା ଛାନ୍ଦରେ ଆଠଗୋଟି ବାକ୍ୟପଦ—ରହିବା ବିଧି ବୋଲି ଲେଖା ହୋଇଛି । କିନ୍ତୁ ଓଡ଼ିଆ ଛାନ୍ଦ ଗ୍ରନ୍ଥର ଛାନ୍ଦଗୁଡ଼ିକର ପଦସଂଖ୍ୟା ନିୟମିତ ନୁହେଁ । ଚଉପଦୀଗୁଡ଼ିକ ଚାରିଠାରୁ ଆଠ ପର୍ଯ୍ୟନ୍ତ ପଦ (ବାକ୍ୟ) ବିଶିଷ୍ଟ ହୋଇଥିବାରୁ ସେଗୁଡ଼ିକ କ୍ଷୁଦ୍ର ପ୍ରବନ୍ଧଭାବେ ଗୃହୀତ ହୋଇପାରେ; କିନ୍ତୁ ଛାନ୍ଦ କିପରି କ୍ଷୁଦ୍ର ପ୍ରବନ୍ଧ ରୂପେ ଗୃହୀତ ହେବ ?

ଏ ପ୍ରସଙ୍ଗରେ— ସଙ୍ଗୀତ ଶାସ୍ତ୍ରରେ ଚିତ୍ରାପଦା, ପାଞ୍ଚାଳୀ, ଚିତ୍ରକଳା ଓ ଧ୍ରୁବପଦା ଆଦି ଚାରିପ୍ରକାର କ୍ଷୁଦ୍ରଗୀତ ବିଷୟ ବିଚାର୍ଯ୍ୟ। ଯେଉଁଥିରେ ଗୀତଘଟକ ପଦସମୂହର ବୈଚିତ୍ର୍ୟ ଥାଏ, ତାହା ଚିତ୍ରପଦା । ଯେଉଁଥିରେ କଳାମାତ୍ରା (ତାଳ)ର ବୈଚିତ୍ର୍ୟ ଗୃହୀତ, ତାହା ଚିତ୍ରକଳା । ଯେଉଁଥିରେ ଗୋଟିଏ ପଦ 'ଧ୍ରୁବ' ରୂପେ ଗୃହୀତ ତାହା, ଧ୍ରୁବପଦା (ଅମ୍ବିକା ବିଳାସ ୨ୟ ଛାନ୍ଦ) ।

ପାଞ୍ଚାଳୀର ପଦସଂଖ୍ୟାର ନିୟମ ନାହିଁ । 'ସଙ୍ଗୀତ ମୁକ୍ତାବଳୀ' ଅନୁସାରେ,

''ଅତି ବିସ୍ତାରପଦତା ପଞ୍ଚପ୍ରୋକ୍ତାମନୀଷିଭିଃ,
ସା ଯତ୍ରାସୀତି ସା ପ୍ରୋକ୍ତା ପାଞ୍ଚାଳୀ ଭବତାଦିଭିଃ ।''

ପଦର ବହୁଳତାକୁ 'ପଞ୍ଚ' କହନ୍ତି । ତାହା ଯେଉଁ ପ୍ରବନ୍ଧରେ ଗୃହୀତ ହୋଇଥାଏ, ତାହାର ନାମ ପାଞ୍ଚାଳୀ । ବଙ୍ଗଳାରେ ପାଞ୍ଚାଳୀ ପ୍ରବନ୍ଧ ଥିବା 'ସଙ୍ଗୀତ ନାରାୟଣ'ରେ ଅଛି । ଆମ ଛାନ୍ଦ ସାହିତ୍ୟରେ ପଦସଂଖ୍ୟା ନିୟମିତ ନ ଥିବାରୁ ଏହା ମଧ୍ୟ ପାଞ୍ଚାଳୀଶ୍ରେଣୀୟ ।

କବି ଲୋକନାଥ ବିଦ୍ୟାଧର ନିଜ ଗୀତକୁ ''ପାଞ୍ଚାଳୀବନ୍ଧ''ରେ ରଚନା କରିଥିବା ଖ୍ରୀ: ୧୬୯୯ରେ ଲିଖିତ 'ପଦ୍ମାବତୀ ପରିଣୟ' ୩୨ ଛାନ୍ଦରେ ଲେଖିଛନ୍ତି ।

''ତାଙ୍କ ଏ ପାଦ ପ୍ରସାଦରେ,
ଏ ଗୀତ ମୁଁ ରଚିଲି **ପଞ୍ଚାଳୀ ବନ୍ଧ**ରେ ।''

Digitized by srujanika@gmail.com

ଏଥିରେ ବ୍ୟବହୃତ 'ଗୀତ' ଓ 'ପଞ୍ଚଳୀବନ୍ଧ' ପଦଦ୍ୱୟ ସଙ୍ଗୀତ ଶାସ୍ତ୍ରୀୟ କ୍ଷୁଦ୍ରଗୀତ ବା କ୍ଷୁଦ୍ର ପ୍ରବନ୍ଧର ଅବାନ୍ତର ଭେଦବିଶେଷ— 'ପାଞ୍ଚାଳୀବନ୍ଧ'କୁ ବୁଝାଉଅଛି ।

ଆହୁରି ମଧ୍ୟ ସ୍କନ୍ଧ ଅର୍ଥାତ୍ ଭାଷାରଚିତ ମହାକାବ୍ୟ ସହିତ ସଙ୍ଗୀତ ଶାସ୍ତ୍ରୀୟ ପ୍ରବନ୍ଧର ସମ୍ମିଶ୍ରଣ ଦ୍ୱାରା 'ଛାନ୍ଦପ୍ରବନ୍ଧ' ନାମରେ ନୂତନ ପ୍ରକାରର ରଚନା ସୃଷ୍ଟ ହୋଇଥିବାରୁ କ୍ଷୁଦ୍ର ପ୍ରବନ୍ଧଗତ ପଦସଂଖ୍ୟା ନିୟମ ଏଥିରେ ସ୍ୱୀକୃତ ହୋଇନାହିଁ । ବିଦଗ୍ଧ ଚିନ୍ତାମଣି ଷଷ୍ଠ ଛାନ୍ଦର ଶେଷପଦ—

''ଆପୂର୍ବାନୁପ୍ରାସ ଛାନ୍ଦ ପ୍ରାନ୍ତଯମକରେ
**ଆଭୋଗ** ହୋଇଲା ଏ ତୋଷିବ ରସିକରେ ।''

'ଆଭୋଗ' ସଙ୍ଗୀତ ଶାସ୍ତ୍ରୀୟ ପାରିଭାଷିକ ପଦ । ଏହାର ଲକ୍ଷଣ— ଗୀତର ଯେଉଁ ଅଂଶରେ କବିର ନାମ ଥାଏ ବା କାବ୍ୟ ବର୍ଣିତ ନାୟକର ନାମ ଥାଏ, ତାକୁ ଆଭୋଗ କହନ୍ତି । ପୁଣି ''ପ୍ରାନ୍ତେ ଆ ଭାଗ ଇଷ୍ୟତେ—' ଅର୍ଥାତ୍ ଗୀତର ଶେଷଭାଗରେ 'ଆଭୋଗ' ରହିବା ଉଚିତ । ଅଭିମନ୍ୟୁ ଅନେକ ସ୍ଥଳରେ 'ସଙ୍ଗୀତବିଦ୍' । ତାଙ୍କ ପୁସ୍ତକର ପ୍ରବନ୍ଧ ପଦ ସଙ୍ଗୀତ ଶାସ୍ତ୍ରୀୟ ପ୍ରବନ୍ଧପର ଅଟେ । ସେ ଲେଖିଛନ୍ତି,

''ଯମକାଦି ଚିତ୍ର କାବ୍ୟ ପ୍ରବନ୍ଧ ପ୍ରବନ୍ଧ
ଯଥା ଜାତ ଧନ୍ଦା ଏ ଟି ବୁଧ ମନ ବୋଧ ।'' (୧ମ ଛାନ୍ଦ)

ଏଠାରେ ପ୍ରଥମ ପ୍ରବନ୍ଧ ପଦ କାବ୍ୟରୂପ ପ୍ରବନ୍ଧ (ସାମନ୍ୟତଃ ରଚନାର) ବୋଧକ । ଦ୍ୱିତୀୟ 'ପ୍ରବନ୍ଧ' ପଦଟି ସଙ୍ଗୀତ ଶାସ୍ତ୍ରୀୟ ପ୍ରବନ୍ଧର ବୋଧକ । କାବ୍ୟ— ପ୍ରବନ୍ଧରେ ରାଗ ତାଳାଦିର ବିନ୍ୟାସ ପାଇଁ ବିଧି ନାହିଁ । ସଙ୍ଗୀତ— ପ୍ରବନ୍ଧରେ ଅନୁପ୍ରାସ ବ୍ୟତୀତ ଯମକ ପ୍ରଭୃତି ଅନ୍ୟାନ୍ୟ ଦୁଷ୍କର ଚିତ୍ରକାବ୍ୟର ବ୍ୟବହାର ପାଇଁ କବି ସମ୍ମତି ନାହିଁ । ଅଭିମନ୍ୟୁ ନିଜ ପୁସ୍ତକରେ ଏ ଦୁଇଟିର ସମାବେଶ କରିଛନ୍ତି । ତେଣୁ ସେ ନିଜ ଛାନ୍ଦପ୍ରବନ୍ଧକୁ କାବ୍ୟଠାରୁ ଭିନ୍ନ ବୋଲି ନିଜେ କହିଛନ୍ତି । ଯଥା—

''ନ୍ୟାୟାଦି ଶାସ୍ତ୍ର-ପୁରାଣ ବେଦାଗମ କାବ୍ୟ,
ନ୍ୟାସ କଲା ଲୋକର ଏ ହୋଇବଟି ଭାବ୍ୟ'' ।

ଏହାର ଅନ୍ୟ ଅର୍ଥ କରିବା ଦୁରାଗ୍ରହ ମାତ୍ର । ଏଠାରେ ସ୍କନ୍ଦ ଶବ୍ଦରୁ 'ଛାନ୍ଦ' ଶବ୍ଦ କିପରି ବ୍ୟୁତ୍ପନ୍ନ, ତାହାର କ୍ରମନିର୍ଦ୍ଦେଶ କରି ବିଦ୍ୟାଭୂଷଣ ମହାଶୟ ତାଙ୍କ ଲିଖିତ ପ୍ରବନ୍ଧର ପ୍ରତିବାଦର ଉତ୍ତର ଦେଇଥିଲେ ।

ପ୍ରଫେସର ପି.ଏଲ୍.ବୈଦ୍ୟଙ୍କ ସମ୍ପାଦିତ ''ପ୍ରାକୃତ ପ୍ରକାଶ'' ୩ୟ ପରିଚ୍ଛେଦ ୨୯ ସୂତ୍ରରେ ସ୍କନ୍ଦ ଶବ୍ଦର ଖଂଦ, ଖଂଧ ଏ ଦୁଇଟି ପ୍ରାକୃତ ରୂପ ସ୍ୱୀକୃତ । ହସ୍ତ = ହତ୍ଥ =

Digitized by srujanika@gmail.com

ହାଥ = ହାତ ହେଲାପରି ଖଂଦ = ଖନ୍ଦ ହେବା ସ୍ୱାଭାବିକ । 'ଷ' ଓ 'ଖ'ର ଉଚ୍ଚାରଣ ସାମ୍ୟ ଥିବାରୁ ଖାନ୍ଦ = ଷାନ୍ଦ ହେଲା । ସେପରି ଷଷ୍ଠୀ = ଛଟ୍‌ଠୀ, ଷଟ୍ = ଛଡ଼ ହେଲାପରି ଷନ୍ଦ = ଛନ୍ଦ ହେଲା । ପୂର୍ବ ପ୍ରବନ୍ଧରେ ଖନ୍ଧା କିପରି ଷଣ୍ଢାରେ ପରିଣତ ହୋଇ ସ୍କନ୍ଧ ଅର୍ଥ ପ୍ରକାଶ କରୁଛି, ତାହା ଦର୍ଶାଇଥିଲେ । 'ଷ'ର 'ଖ' ଉଚ୍ଚାରଣ 'ଷ' ଯୋଗରୁ ଘଟିଥାଏ । କ + ଷ = କ୍ଷ । ସେଥିପାଇଁ 'ଖ' ପରିବର୍ତ୍ତେ 'କ୍ଷ' ମଧ୍ୟ ଲେଖାଯାଏ ।

''ଖଗପତି ପୂର୍ଣ୍ଣକର ଏ ମୋର ମାନସ,
କ୍ଷିତିପାବନ ମଙ୍ଗଳ ବର୍ଣ୍ଣିବି ତୋ ଯଶ ।'' (ବି.ଚି.୧ମ ଛାନ୍ଦ)

'ଖ' କୁ 'କ୍ଷ' ସହିତ ସମଧ୍ୱନିରୂପେ ଗ୍ରହଣ କରିବା 'ଷ' ସହ ସମଧ୍ୱନିରୂପେ ଗ୍ରହଣ କରିବା ସଙ୍ଗେ ସମାନ । ତେଣୁ ଖାନ୍ଦ = ଷାନ୍ଦ = ଛାନ୍ଦ । ଏହା ନିଃସନ୍ଦେହ ।

ବୌଦ୍ଧଗାନ ଓ ଦୋହାର ପ୍ରଥମ ଚର୍ଯାରେ ଲୁଇପାଦଙ୍କର ''କାଆ ତରୁବର ପଞ୍ଚ ବି ଡାଲ''ରେ ''ଏଡ଼ି ଏଉ ଛାନ୍ଦକ ବନ୍ଧ କରଣକ ପାଟର ଆସ ।'' ବୋଲି ଯେଉଁ ପାଦଟି ଅଛି, ତହିଁରେ ଥିବା ''ଛାନ୍ଦକ'' ଶବ୍ଦ 'ସ୍କନ୍ଦ' ଶବ୍ଦରୁ ଉତ୍ପନ୍ନ ହୋଇଥିବା କଥା ପୂର୍ବ ପ୍ରବନ୍ଧରେ ଲେଖିଥିଲେ । ସେହି ପଦର ସଂସ୍କୃତ ଟୀକା ଯଥା— ଷଣ୍ଢା (ପଣ୍ଡା) ଛାନ୍ଦକଂ ଓଡ଼ିୟାନ କରଣାଦି ବନ୍ଧଂ ବିହାୟ ଇତ୍ୟାଦି ବାକ୍ୟାଂଶର ଅର୍ଥ ଲେଖିଥିଲେ । 'ଉଡ୍ଡୀୟାନ' ଶବ୍ଦରୁ ଅନୁସ୍ୱାରଟି ଭ୍ରମକ୍ରମେ ଚ୍ୟୁତ ହୋଇଥିବାର ଅନୁମାନ କରି 'ଓଡ଼ିଆ ଭାଷା' ବୋଲି ଲେଖିଥିଲେ । ତାହା ଗୃହୀତ ନ ହେଲେ, ଅର୍ଥ ହେବ ଉଡ୍ଡୀୟାନଂ = ନୈରାତ୍ମ୍ୟଂ ତସ୍ୟ କାରଣଦୀନାଂ ସଂପାଦନ ପ୍ରଭୃତି କର୍ମଣାଂ ବନ୍ଧଃ ପ୍ରତିବନ୍ଧକୀ ଭୂତଃ ଯଃ ପାଟଃ— କାୟମନୋ ବାଗାନନ୍ଦ ରୂପଃ ତଂ ବିହାୟ ପରିତ୍ୟଜ୍ୟ ଇତ୍ୟାଦି । ଅର୍ଥାତ୍ ରୂପାଦି ପଞ୍ଚସ୍କନ୍ଧରୁ ଜାତ ଓ ନୈରାତ୍ମ୍ୟ ସାଧନର ଅନ୍ତରାୟ ରୂପେ ଅବସ୍ଥିତ ପାଟ— କାୟମନୋବାକ୍ୟରେ ଆନନ୍ଦାନୁଭୂତିକୁ ପରିତ୍ୟାଗ କରି ଶୂନ୍ୟତାକୁ ଅବଲମ୍ବନ କର । ଏହା ଲୁଇପାଦଙ୍କର ଉପଦେଶ । ପ୍ରୋକ୍ତ ଟୀକାରେ 'ଛାନ୍ଦକ' ଶବ୍ଦର ପ୍ରାକୃତ ରୂପ ଦେବା ଇଚ୍ଛାରେ ଲେଖକ 'ସ୍କନ୍ଧଃ'—ଛାନ୍ଦକଂ ନ ଲେଖି ଷଣ୍ଢା ଖନ୍ଧାଃ ଛାନ୍ଦକଂ ଲେଖିଛନ୍ତି । ସେହି ଚର୍ଯ୍ୟାର ଟୀକାର ଉପକ୍ରମରେ ରୂପାଦି ପଞ୍ଚସ୍କନ୍ଧ କାୟାରୂପକ ତରୁବରର ପଞ୍ଚଡାଳ । ଛଅ ଇନ୍ଦ୍ରିୟ, ପଞ୍ଚବିଷୟ, ସପ୍ତଧାତୁ, ଜ୍ଞାତା, ଜ୍ଞେୟ ଓ ଜ୍ଞାନ । ଏଗୁଡ଼ିକ ତାହାର ପଲ୍ଲବସ୍ଥାନୀୟ ବୋଲି ଲେଖି ସଂକ୍ଷେପରେ ବର୍ଣ୍ଣନୀୟ ବିଷୟର ଉଲ୍ଲେଖ କରିଛନ୍ତି ।

ଖନ୍ଧା କିପରି ଷଣ୍ଢା ହେଲା ? ଏହାର ଉତ୍ତର ଏହି ଯେ ଆମ ଭାଷାରେ 'ନ୍ଧ' ସ୍ଥଳରେ 'ଣ୍ଢ' ହେବା ଦେଖାଯାଏ । ସନ୍ଧି ଶବ୍ଦରୁ 'ସାନ୍ଧବ' 'ସାନ୍ଦିବା' ଓ 'ସାଣ୍ଢିବା' ଏହି ତିନି ରୂପ ହେବା ଦେଖାଯାଏ । ଅତଏବ 'ଖନ୍ଧ'—'ଷନ୍ଧା'—'ଷଣ୍ଢା' ମଧ୍ୟ ହୋଇପାରେ ।

Digitized by srujanika@gmail.com

ପଣ୍ଡିତ ଆଗ୍ନର୍ଯ୍ୟଙ୍କ ଅନୁମାନ, ଲୁଇପାଦଙ୍କ ମୂଳଚର୍ଯ୍ୟା ଓ ତାର ଟୀକା ଓଡ଼ିଆ ଅକ୍ଷରରେ ଲେଖା ହୋଇଥିଲା । ଅନ୍ୟ ଭାଷାର ଅକ୍ଷରରେ ଲେଖାଗଲା ବେଳେ ପ୍ରଥମ ଲେଖକ 'ଷଣ୍ଠା' ବୋଲି ଲେଖିଥିଲେ । ପରେ ମୁଜାବିଲା କଲାବେଳେ ଅନ୍ୟ ଜଣେ ତାକୁ 'ପଣ୍ଡା' ବୋଲି ପଢ଼ି ସେହିପରି ସଂଶୋଧନ କରିଛନ୍ତି । ଓଡ଼ିଆ 'ଷ'ର ପେଟକିଳିଣୀ ଗାରଟିକୁ ସେ ଦେଖି ନପାରି 'ପ' ବୋଲି ପଢ଼ିଲେ । 'ଣ' ଓ 'ଶ'ର ଆକାରଗତ ସାମ୍ୟ ଥିବାରୁ 'ଣ'କୁ 'ଶ' ରୂପେ ପଢ଼ିଛନ୍ତି । 'ଣ'ର ତଳେ ଥିବା 'ଠ'କୁ ବାଧ୍ୟ ହୋଇ 'ଚ' ବୋଲି ପଢ଼ିଲେ । କାରଣ 'ଶ' ତଳେ 'ଚ' ଓ 'ଛ' ଛଡ଼ା ଅନ୍ୟ ବ୍ୟଞ୍ଜନର ଯୋଗ ହୁଏ ନାହିଁ । ତେଣୁ 'ଷଣ୍ଠା' ବା 'ଷଣ୍ଢା' 'ପଶ୍ଚା'ରେ ପରିଣତ ହୋଇଛି ।

''ଖଗପତି ପୂର୍ଣ୍ଣକର ମୋର ଏ ମାନସ
କ୍ଷିତିପାବନ ମଙ୍ଗଳ ବର୍ଣ୍ଣିବି ତୋ ଯଶ ।''

ଏଠାରେ 'ଖ' ଓ 'କ୍ଷ'ର ଧ୍ୱନି ଅଭିନ୍ନ । ସେହିପରି 'କ୍ଷ' ଓ 'ଛ'ର ଧ୍ୱନି ମଧ୍ୟ ସମାନ ଅଭିନ୍ନରୂପେ ଗୃହୀତ ହୋଇଥିବାର ଦେଖାଯାଏ । ଏଠାରେ ମଧ୍ୟ ଷଟ୍ = ଛଡ଼ ହେଲାପରି (କ୍+ଷ) = 'କ୍ଷ'ର 'ଷ' ଅଂଶଟି ହେତୁ 'ଛ' ହୋଇଛି କହିବା ଅସଙ୍ଗତ ନୁହେଁ । ଆହୁରି ମଧ୍ୟ ଚମ୍ପୂର 'ଛ' ଗୀତରେ 'ଶ'ର ଧ୍ୱନିକୁ 'କ୍ଷ' ସଙ୍ଗେ ସମାନ କରାଯାଇଥିବା ଲକ୍ଷିତ ହୁଏ ।

ଏହି ପ୍ରବନ୍ଧରେ ପ୍ରଦତ୍ତ ତାତ୍ତ୍ୱିକ ଅନୁଶୀଳନରେ ରାଗ, ବାଣୀ ଓ ବୃତ୍ତ ବିଷୟରେ ଅନେକ ବିସ୍ତର କରିବାର ଅଛି ।

— ୦ —

Digitized by srujanika@gmail.com

# ବିଦ୍ୟାଭୂଷଣଙ୍କ ସଂସ୍କୃତ ଅନୁବାଦ

'ବିଦଗ୍ଧ ଚିନ୍ତାମଣି'ର ପଞ୍ଚବିଂଶ ଛାନ୍ଦର ସଂସ୍କୃତାନୁବାଦ ପଣ୍ଡିତ ମହାଶୟ ୧୯୬୮। ୧୯୭୦ରେ କରିଥିଲେ । ମୂଳଲେଖାରେ ଏହା କୌଶିକ ରାଗରେ ପ୍ରାନ୍ତାନୁ-ପ୍ରାସରେ ୨୦ ପଦରେ ଲେଖାଯାଇଛି । କିନ୍ତୁ ପଣ୍ଡିତ ଆର୍ଯ୍ୟ ଏହାକୁ ସୁମଧୁର 'ଗୋବିନ୍ଦ ଦାମୋଦର ମାଧବେତି' ସ୍ୱରରେ ପଦ୍ୟାନୁବାଦ ୩୬ପଦ ସଂସ୍କୃତରେ କରିଛନ୍ତି । ମୂଳ ଛାନ୍ଦର ପଦମାନଙ୍କୁ ସଂସ୍କୃତରେ ସ୍ଥଳବିଶେଷରେ ଦୁଇ ତିନି ପଦରେ ପ୍ରକାଶ କରିଅଛନ୍ତି । ତେଣୁ ପ୍ରତ୍ୟେକ ଓଡ଼ିଆ ପଦର ଅନୁବାଦକୁ ତୁଳନାତ୍ମକ ଭାବରେ ଦିଆଗଲେ ଭାବ ଓ ଛନ୍ଦର ଭଙ୍ଗଦୋଷ ଘଟିବା ଆଶଙ୍କା ଥିବାରୁ ଉଭୟ ପାଠ ସ୍ୱତନ୍ତ୍ର ଭାବରେ ଉଦ୍ଧୃତ ହେଲା ।

**ବିଦଗ୍ଧ ଚିନ୍ତାମଣି - ପଞ୍ଚବିଂଶ ଛାନ୍ଦ - ଅଭିମନ୍ୟୁ ସାମନ୍ତସିଂହାର**

ରାଗ-କୌଶିକ-ପ୍ରାନ୍ତାନୁପ୍ରାସ

ରସିକେ ଦୂତୀବିଳମ୍ବରୁ ଗୋବିନ୍ଦ ତନୁ ଅବଶ ହୋଇଲାନି ।
ଦୂର ଦୁର୍ଲଭ ଦୁନ୍ଦୁଭି ଦୁ ପୂର୍ବାଦି ଭାଷାରେ ଆଶା ହୋଇଲାନି ।
ସେହିକାଳକୁ । ଦୂତୀ ସେଠାକୁ ଅଇଲାନି ।
ତା କଥନମୁଖ ଦେଖି ହରିହୃଦେ ଆନନ୍ଦଚନ୍ଦ୍ର ଉଇଁଲାନି । ୧ ।

ଦୂତୀ ରସେ ହସେ, ଭାଷେ ହେ ନାଗର ! ତୁମ୍ଭର ଶୁଭ ଦିଶିଲାନି ।
କିଶୋରୀ ରତନେ ଯତନେ ମଦନ କଦନ ଦେଇ ତ୍ରାସିଲାନି ।
ନବନାଗରୀ । ଶ୍ରୀଅଙ୍ଗେ ଦଶା ଦିଶିଲାନି ।
ହାସ ରସ ବେଶବାସ ଗ୍ରାସ ଆଶ ବିଷ ସମାନ ରସିଲାନି । ୨ ।

---

**ସରଳାର୍ଥ**—ହେ ରସିକମାନେ ! ଦୂତୀ ଆସିବା ବିଳମ୍ବ ହେବାରୁ ଗୋବିନ୍ଦ ତନୁ ଅବଶ ହେଲାଣି । ଦୂର, ଦୁର୍ଲଭ, ଦୁନ୍ଦୁଭି ଆଦି ଦୁ ପୂର୍ବରେ ଥିବା ଶବ୍ଦ ଶୁଣିବାରେ ଆଶା ବଳିଲାଣି । ସେତିକିବେଳେ ଦୂତୀ ସେଠାକୁ ଆସିଲା ଓ ତାର ମୁହଁରୁ କ'ଣ କହିବା ଭଙ୍ଗୀ ଦେଖି ହରିଙ୍କ ହୃଦରେ ଆନନ୍ଦଚନ୍ଦ୍ର (ହର୍ଷ) ଉଇଁଲା ।

ଦୂତୀ ରସି ହସି ଭାଷିଲା । ହେ ନାଗର ! ତୁମ୍ଭର ଶୁଭଯୋଗ ଦେଖାଯାଉଛି । ଯୁବତୀ-ଶ୍ରେଷ୍ଠା ଶ୍ରୀରାଧାଙ୍କୁ କୌଶଳରେ କନ୍ଦର୍ପ ପୀଡ଼ା ଦେଇ ଡରାଇଲାଣି । ସେହି ନବନାଗରୀର ଶ୍ରୀଅଙ୍ଗରେ କାମର ଦଶ ଦଶା (ମନଃସଙ୍ଗ ଠାରୁ ମୂର୍ଚ୍ଛା ପର୍ଯ୍ୟନ୍ତ) ଦେଖାଗଲାଣି । ତାହାର ହାସ ରସ ବେଶ ବାସ (ବସ୍ତ୍ର ବା ସୁଗନ୍ଧ), ଗ୍ରାସକୁ (ଭୋଜନ) ବିଷପ୍ରାୟ ମନେକରୁଛି । ୨ ।

Digitized by srujanika@gmail.com

ପ୍ରଗ୍ରର ଉପଗ୍ରର ଏତେ ବିଗ୍ରର, ସରୁଁ ସାରସ ସରିଲାନି ।
ଦଳତଳପ ନାଳମାଳ ଦେବାର ପ୍ରିୟ କରି ଆଦରିଲାନି ।
ନବନାଗରୀ । ହା ହା ଶବ୍ଦ ଉଚ୍ଚାରିଲାନି ।
ଘନସାର ସାର-ସାରସଲପନା ସାର ହିତ ବିଗ୍ରରିଲାନି । ୩ ।

ପ୍ରାତରଜନୀ ରଜନୀଶବଦନୀ ରଜନିକରେ ଗଡ଼ିଲାନି ।
ଆବେଶେ ଏବେ ସେ ଅବଶେ ଅବେଶେଭୂରେ ପଣତ ପାଡ଼ିଲାନି ।
ନବନାଗରୀ, ଶୋକସାଗରେ ବୁଡ଼ିଲାନି ।
ଜାତବେଦ-ଜାତ-ଯାତନା, ଅତନୁ ସୁତନୁ ତନୁ ପୋଡ଼ିଲାନି । ୪ ।

ରଦେ ରଦବାସ ବାସବମୋହୀ ତ ମୋ ହିତ ପାଇଁ ଭିଡ଼ିଲାନି ।
ଅନ୍ତର ଭିତର ଭୀତି ଅତିତର, ଆତୁର ପଙ୍କେ ସଡ଼ିଲାନି ।
ନବନାଗରୀ, ବରନାଗର ଲୋଡ଼ିଲାନି ।
ଲାଜ ଧଇର୍ଯ କୁଳଶୀଳ ବିବେକ ଚଡ଼ାଇ ବେଳ ମୋଡ଼ିଲାନି । ୫ ।

ଅନେକ-ଦହକ-କନକ ଗଉରୀ-ତନୁ ଧୂଷର ଦିଶିଲାନି ।
ରସାଳସା ରସା ଦରପଣ କରି ଦରପଣରୁ ରସିଲାନି ।
ନବନାଗରୀ । ଶିବ ଶିବ ତ ଘୋଷିଲାନି ।
ଗିରିଦରୀ ସରି ପୁରୀକି ବିଗ୍ରରି କରଜେ ମହୀ ଚଷିଲାନି । ୬ ।

---

ଶୀତଳ ଉପଗ୍ରର ବିଧାନରେ ପୋଖରୀରୁ ପଦ୍ମ ସବୁ ଶେଷ ହେଲେଣି । ପଦ୍ମପାଖୁଡ଼ା ଶେଯ ପଦ୍ମନାଡ଼ର ମାଳା ସୁଖକର ଭାବି ତାକୁ ଆଦରିଛି । ହା ହା ଶବ୍ଦ କରୁଛି । ଉତ୍କୃଷ୍ଟ ପଦ୍ମମୁଖୀ ଶ୍ରୀରାଧା କର୍ପୂରକୁ ଅଧିକ ଉପକାରୀ ମନେକରେ । ୩ ।

ଦିନରାତି ସେ ଚନ୍ଦ୍ରମୁଖୀ ଶ୍ରୀରାଧା ଧୂଳିରେ ଗଡୁଛି । ଶୃଙ୍ଗାର ଭାବରେ ମଜ୍ଜିବାରୁ ଅଶକତ ଭାବରୁ ବେଶ ନ ହୋଇ ଭୂଇଁରେ ପଣତ ପକାଇଛି । ଶୋକସାଗରେ ବୁଡ଼ିଛି । ଅଗ୍ନିରେ ଦଗ୍ଧହେଲେ ଯେପରି ଯନ୍ତ୍ରଣା ହୁଏ, ସୁନ୍ଦରୀ ଶ୍ରୀରାଧାଙ୍କ ଦେହକୁ କନ୍ଦର୍ପ ସେହିପରି ଦହୁଛି । ୪ ।

ଇନ୍ଦ୍ରମୋହନକାରୀ ଶ୍ରୀରାଧା ଦାନ୍ତରେ ଓଠ କାମୁଡୁଛି । ମନ ଭିତରେ ଅତିଶୟ ଭୀତି ଜାତ ହେବାରୁ ଅତ୍ୟନ୍ତ ବ୍ୟାକୁଳତାରୂପକ ପଙ୍କରେ ପଡ଼ିଛି । ଉତ୍କୃଷ୍ଟବିଳାସୀ ପୁରୁଷ ଖୋଜିଲାଣି । ଲାଜ ଧୈର୍ଯ୍ୟକୁଳଶୀଳ ବିବେକ ଶକ୍ତି ହରାଇଲାଣି । ୫ ।

ଆଉଟା ସୁନାପରି ଗୋରୀ ଶ୍ରୀରାଧାର ଦେହ ପାଉଁଶିଆ ଦିଶିଲାଣି । ରସପୂର୍ଣ୍ଣା ଶ୍ରୀମତୀ ପୃଥିବୀକୁ ଦର୍ପଣ କରି ଗ୍ରହିଁ ମୁହଁପୋତି ଭୟହେତୁ ରସିଲା ନାହିଁ । ଶିବ ଶିବ ଘୋଷିଲାଣି । ପର୍ବତ ଗୁମ୍ଫା ପ୍ରାୟ ଗୃହକୁ ବିଗ୍ରରକରି ନଖରେ ଭୂଇଁରେ ଗାର କାଟୁଛି । ୬ ।

Digitized by srujanika@gmail.com

ରାମ ଆରାମ ରାମନେତ୍ରୀ ସକାଶୁଁ ମାଳୀ ଭାଳିତ କାଟିଲାନି ।
ସଜ ନିକର ସଜନୀଙ୍କର କର ଆଦର ତାର ତୁଟିଲାନି ।
ନବନାଗରୀ । ରୀତି ଗୋପେ ଚହଟିଲାନି ।
ମନ୍ଦ ନଣନ୍ଦ ଦ୍ୱନ୍ଦ୍ୱକରି ପଦ୍ମଙ୍କୁ ବ୍ୟାଧି ବିଧିରେ ବଟିଲାନି । ୭ ।

ତା ମନା କାମନା ଶ୍ୟାମା ବେଦନାରୁ ସାମବେଦ ନା ଲୁଚିଲାନି ।
କଞ୍ଜ-ଖଞ୍ଜନ ଗଞ୍ଜନ ନୟନରୁ ନୀର ନିରତେ ମୁଞ୍ଚିଲାନି ।
ନବନାଗରୀ । ଗଣ୍ଡ ପାଣିରେ ସଞ୍ଚିଲାନି ।
ଚମ୍ପାଗାତ୍ରୀ ସବୁରାତ୍ରି ଶିବରାତ୍ରି କରି କାଳକୁ ବଞ୍ଚିଲାନି । ୮ ।

କଳକଣ୍ଠକଣ୍ଠୀ ପଣତରେ ଗଣ୍ଠି କି ମମତାରେ ପାଡ଼ିଲାନି ।
ଦୁର୍ଜନ ଜନ କୁ ବଚନ ରଚନ ଶରକୁ ଶିର ଆଡ଼ିଲାନି ।
ନବନାଗରୀ । ମନ - ତାପରେ ପଡ଼ିଲାନି ।
ନିତି ପ୍ରତି ପ୍ରୀତିବତୀ ମୂର୍ତ୍ତି ଲତା ବିଭାତି ପତ୍ର ଝଡ଼ିଲାନି । ୯ ।

ସଞ୍ଚ ଘଞ୍ଚ ଉଚ୍ଚ କୁଚପରେ ଧୀରେ ମୁଖଚନ୍ଦ୍ରକୁ ଥୋଇଲାନି ।
ବନଜ ନୟନୁଁ ବନ ଘନ ଘନ ମୁଞ୍ଚି ପତ୍ରାଳି ଧୋଇଲାନି ।
ନବନାଗରୀ । ସଖୀ ପଣତ ଧଇଲାନି ।
''ଯିବ ଜୀବ ଜୀବଧବନବରକୁ, ମୋ ଆଶା ଛାଡ଼'' ବୋଇଲାନି । ୧୦ ।

---

ମନୋହର ବଗିଚାକୁ ମୃଗନୟନା ଶ୍ରୀରାଧାଙ୍କ ପାଇଁ ମାଳୀ ଚିନ୍ତିତ ହୋଇ କାଟିଲାଣି । ଅଳଙ୍କାରସବୁ (ସଜ, ନିକର) ସଖୀମାନଙ୍କର ହାତରେ ଧରିବା ଆଗ୍ରହ ତୁଟିଲାଣି। ଏ ରୀତି ଗୋପପୁରେ ବ୍ୟାପିଲାଣି । ଦୁଷ୍ଟ ନଣନ୍ଦ କଳହ କରି ପଦ୍ମରନ୍ତେ ରୋଗ ବୋଲି ଭଣ୍ଡି ଦେଲାଣି ।୭।

ତାର ଇଚ୍ଛା ବନ୍ଦ ହେବାରୁ ଶ୍ରୀରାଧାଙ୍କ କଷ୍ଟ ହେତୁ ସାମବେଦ ଗାନର ନାମ ଲୁଚିଲାଣି । ରାଧାଙ୍କର ନାମ ଥିଲା ଗାନ୍ଧର୍ବିକା । ତାର ସେହି ଗାନ ଇଚ୍ଛା ମନାହେଲାଣି । ପଦ୍ମ ଓ ଗୁଞ୍ଜୁକାଳିକା ପକ୍ଷୀଜିଣା ଆଖିରୁ ସର୍ବଦା ଲୁହ ଝରାଉଛି । ଗାଲ ହାତରେ ରଖିଛି । ଚମ୍ପାବର୍ଣ୍ଣା ଶ୍ରୀରାଧା ସବୁ ରାତିକୁ ଶିବରାତ୍ରି ପରି ଉଜାଗରରେ କାଟୁଛି । ୮ ।

କୋକିଳଭାଷିଣୀ ରାଧା ଆଗ୍ରହରେ ପଣତରେ ଗଣ୍ଠି ପକାଇଛି । ଦୁଷ୍ଟଲୋକଙ୍କ ନିନ୍ଦାବାକ୍ୟ ପ୍ରକାଶରୂପକ କାଣ୍ଡକୁ ମୁଣ୍ଡ ଦେଲାଣି । ମନୋଦୁଃଖରେ ପଡ଼ି ପ୍ରତିଦିନ ପ୍ରୀତିବତୀ ରାଧାର ଦେହରୂପୀ ଲତାରୁ କାନ୍ତିରୂପୀ ପତ୍ର ଝଡ଼ିଲାଣି । ୯ ।

ସୁନ୍ଦର ଘନ ସ୍ତନ ଉପରେ ସ୍ଥିର ଭାବରେ ମୁଖଚନ୍ଦ୍ରକୁ ଥୋଇଲାଣି ବା ମୁହଁପୋତି ବସିଛି। ପଦ୍ମନେତ୍ରରୁ ଅବିରତ ଲୁହ ବୁହାଇ ଚନ୍ଦନପାଟି ଧୋଇଦେଲାଣି । ''ଏ ଜୀବ ଯମ ପୁରକୁ ଯାଉଛି, ମୋ ଆଶା ଛାଡ଼'' କହିଲାଣି । ୧୦ ।

Digitized by srujanika@gmail.com

କାଳୀକି ବଳି ଦେବାରୁ ଛେଳିଆଳି ମେଷ ହିଁ ଶେଷ ହୋଇଲାନି ।
ମାଳୀ ଆଳି କରେ ଚମ୍ପାମାଳି ଦେଇ ଶୂଳୀ ସେବା କରାଇଲାନି ।
ନବନାଗରୀ । ସବୁ ବିଧି କରାଇଲାନି ।
ଆଶା ଭରସା ରସା ଶୋଭୀ ନ ଲଭି କର କପାଳେ ମାଇଲାନି । ୧୧ ।

ଏ ଅନୁମାନୁ ଘେନୁଅଛି, ଅତନୁ କୁସୁମଧନୁ ଆଞ୍ଚିଲାନି ।
ଧରମ-କରମ-ଭରମ-ମରମ-ପୋଡ଼ା ଶରହିଁ ଯୋଚିଲାନି ।
ନବନାଗରୀ । ଏଣୁ ତନୁ ରୋମାଞ୍ଚିଲାନି ।
ପ୍ରକଟ ଲମ୍ପଟ ହୃଦୟତଟରେ ପଟ ପକାଇ ବଞ୍ଚିଲାନି । ୧୨ ।

ଅବଳା ଦୁର୍ବଳା କଳାହୀନ କଳାନିଧି ବିଧିରୁ ବଳିଲାନି ।
ବୀଣାଗୁଣାଜିଣାବଚନା— ଝୁଣ୍ଟିଆ ବଳା ହେବାକୁ ଭାଳିଲାନି ।
ନବନାଗରୀ । ଗରିମା ପଣ ଟଳିଲାନି
କେ କେତେକ ଗରୁ, ଗୁରୁ ଉରୁ ଭୀରୁ ପ୍ରେମ ଧର୍ମକୁ ତୁଳିଲାନି । ୧୩ ।

କଳାବତୀ କଳା କଳାକରେ କଳା ବିଚିତ୍ର ଚିତ୍ର ଲିହିଲାନି ।
ତମ ତମାଳ ଖ-ତମାଳ ମାଳକୁ ଲାଳସେ ଗ୍ରହିଁ ରହିଲାନି ।
ନବନାଗରୀ । ନୀଳବାସ ହିଁ ବହିଲାନି ।
ଅମଳ କଳାକମଳ ଗ୍ରହିଁ ନେତ୍ରେ ନୀର ଥକାଇ ରହିଲାନି । ୧୪ ।

---

କାଳୀଠାକୁରାଣୀଙ୍କୁ ଛେଳିସବୁ ବଳିଦେବା ପରେ ମେଣ୍ଢାମାନେ ମଧ୍ୟ ସରିଲେଣି । ମାଳୀମାନଙ୍କ ହାତରେ ଚମ୍ପାମାଳ ପଠାଇ ମହାଦେବଙ୍କ ପୂଜା କରୁଛି । ସେହି ପୃଥିବୀ ଶୋଭାକାରିଣୀ ରାଧା ବିଧି କରାଇଲାନି ବୋଲି ବଲ୍ଲଭ ନ ଲଭି କରକୁ କପାଳରେ ମାରୁଛି । ୧୧ ।

ଅନୁମାନ କରୁଛି, କନ୍ଦର୍ପ ଫୁଲଧନୁ ଓଟାରିଲାଣି । ଧର୍ମ କର୍ମ ସଂଭ୍ରମ ମର୍ମକୁ ପୋଡ଼ି ଦେଉଥିବା ଶର ଯୋଚିଲାଣି । ଏଣୁ ନବନାଗରୀର ତନୁ ରୋମାଞ୍ଚିତ ହେଲାଣି । ଅତି ଆସକ୍ତ ହୃଦତଟରେ ଶ୍ରୀକୃଷ୍ଣଙ୍କ ଚିତ୍ରପଟ ପକାଇ କାଳ କାଟୁଛି । ୧୨ ।

ସେହି ଅବଳା ଶ୍ରୀରାଧା ବଳହୀନା ଓ କ୍ଷୀଣା ହୋଇ ବେଶୀ ସରୁ ହୋଇଗଲାଣି । ତାର ସ୍ୱର ଜିଣି କଥା କହୁଥିବା ରାଧା କୃଶତା ବା କାମଦଶାବଶରୁ ଏତେ ସରୁ ହେଲା ଯେ ତାର ଝୁଣ୍ଟିଆ ଏବେ ବଳା ହେଲାଣି । ତାର ଗୌରବ ଗଲାଣି । ସେହି ଭୟଶୀଳା ରାଧା ପ୍ରେମ ଓ ଧର୍ମ ମଧ୍ୟରେ ଜିଏ କେତେ ବେଶୀ ବଡ଼, ତାହା ତୁଳିଲାଣି । ୧୩ ।

ସେହି କଳାବତୀ କଜ୍ଜଳାଦିରେ କୃଷ୍ଣବର୍ଣ୍ଣ ସୁନ୍ଦର ଚିତ୍ର ଲେଖିଲାଣି । ଅନ୍ଧକାର ତମାଳ ଗଛ ଓ ଆକାଶର ମେଘମାଳାକୁ ଲୋଭବଶରୁ ଗ୍ରହିଁ ରହିଛି । କଳା ଶାଢ଼ୀ ପିନ୍ଧିଛି । ନୀଳପଦ୍ମକୁ ନେତ୍ରରେ ନୀର ଭରି ଗ୍ରହିଁ ରହୁଛି । ୧୪ ।

Digitized by srujanika@gmail.com

ଋତୁଉଦ୍ଦୀପନମାନ ମାନସରୁ ସବୁ ତାର ଛଡ଼ାଇଲାନି ।
ଦଣ୍ଡ ଦଣ୍ଡକେ ଉଦ୍ଦଣ୍ଡ ଫୁଲ କାଣ୍ଡ ଦଣ୍ଡ ସୁଖ ଏଡ଼ାଇଲାନି
ନବନାଗରୀ । ରସେ ମନ ବୁଡ଼ାଇଲାନି ।
କି ବଗ୍ଘରି - ଗ୍ଘରି ଅଙ୍କ - ମଧ୍ୟା ତବ ନାମେ ଶାଢ଼ୀ ବେଢ଼ାଇଲାନି । ୧୫ ।

ମୁକୁରକୁ ଗ୍ୱହିଁ ବିକାର ବଦନେ ପୂରି ବୁମ୍ବ ଉପୁଜିଲାନି ।
ଗୁଣି ତିଳକ ତିଳକ ତିଳକରେ ଆଦର ଏଣୁ ତେଜିଲାନି ।
ନବନାଗରୀ । ମାନ ପ୍ରେମରେ ମଜ୍ଜିଲାନି ।
ତୁନି ତୁନି କରି କି ମନ୍ତ୍ରର ତରଳାକ୍ଷୀ ଏଥର ଭଜିଲାନି । ୧୬ ।

ଗଣେଶ ଚତୁର୍ଥୀ ତିଥି ଚନ୍ଦ୍ରାଦର ସର୍ବଦା ଏବେ ସେ କଲାନି ।
ଚଡ଼କ ପିକ ଡାକ ମଣି କାକକୁ କୁନ୍ଦଦନ୍ତୀ ଗାଳି ଦେଲାନି ।
ନବନାଗରୀ । ରାତି ଅରାତି ମଣିଲାନି ।
ଦିନକୁ ଦିନ ଦୀନ ଦୀନ କଲାରୁଁ ଅବକାଶ ନ ରହିଲାନି । ୧୭ ।

ଲାଜ ବ୍ୟାଜ ଧୈର୍ଯ୍ୟ ଗାମ୍ଭୀର୍ଯ୍ୟ କେବଳ ପ୍ରବଳା ତହୁଁ ବଳିଲାନି ।
ଏ ଘେନି ମଣୁଛି ଅନ୍ତର ଭିତର ହୀରା ବାନ୍ଧିକି ଝାଳିଲାନି ।
ନବନାଗରୀ । ମୋ ବୋଲ ହିଁ ନ ପାଳିଲାନି ।
ନ ଜାଣି ଧୃତି ଆତୁର ରଣେ ପୁଣି କେ କାହା ବଳ ଟାଳିଲାନି । ୧୮ ।

---

ବସନ୍ତ ପ୍ରଭୃତି ଋତୁମାନଙ୍କରେ କୋକିଳ ପ୍ରଭୃତି ମନରେ କାମଭାବ ଜନ୍ମାଇବା ବିଷୟମାନ ତାହାଙ୍କ ମନରୁ ଅଭିମାନ ସବୁ ଛଡ଼ାଇଲେଣି । ପ୍ରତି ମୁହୂର୍ତ୍ତରେ ଉଦ୍ଦଣ୍ଡ କନ୍ଦର୍ପ ପୀଡ଼ା ଗ୍ୱରି ଅଙ୍କ ସଂଖ୍ୟା (୪)ର ମଧ୍ୟ ଯେପରି ସରୁଥାଏ, ତାର ଅଣ୍ଟା ସେହିପରି ସରୁ ହେଲାଣି । ୧୫ ।

ଦର୍ପଣକୁ ଗ୍ୱହିଁ ସାତ୍ତ୍ୱିକ ପ୍ରଭୃତି କନ୍ଦର୍ପ ବିକାର ହେତୁ ମୁହଁରେ ବୁମ୍ବନସ୍ୱର ପୂର୍ଣ୍ଣ ହେଉଛି । ଗୁଣବତୀ ଶ୍ରେଷ୍ଠା ଶ୍ରୀରାଧା ଅଳ୍କକଚିତା ଘେନିବା ଆଦର ଛାଡ଼ିଦେଲାଣି । ତାହାର ମନ ପ୍ରେମରେ ମଜ୍ଜିଥିବାରୁ ତୁନି ତୁନି କରି ସେ ଚଞ୍ଚଳନେତ୍ରୀ କି ମନ୍ତ୍ର ବୋଲିବାରେ ଲାଗିଛି । ୧୬ ।

(ଗଣେଶ ଚତୁର୍ଥୀର ଚନ୍ଦ୍ର ଦର୍ଶନରେ ପାପ ହୁଏ ଓ ଅପବାଦ ମିଳେ । ତେଣୁ ତାକୁ ଦେଖିବା ନିଷିଦ୍ଧ) ଶ୍ରୀ ରାଧା ଆଉ ଚନ୍ଦ୍ରଙ୍କୁ ଅନାଉ ନାହିଁ । କୋଇଲି ତାକକୁ ବଜ୍ରସମ ମଣୁଛି ଓ କାଉକୁ ଗାଳି ଦେଉଛି । ରାତିକୁ ଶତ୍ରୁ ମନେକରୁଛି । ଦିନକୁ ଦିନ ଦୁଃଖରେ କାଳ କଟାଉଥିବାରୁ ତା'ର ଅବସର ଆଉ ନାହିଁ । ୧୭ ।

ଲାଜ, କପଟ, ଛଳନା, ଧୀରପଣ ଓ ଚତୁରତା ରାଧାଙ୍କ ବଳଠାରୁ ଅଧିକ ହେଲାଣି । ଏଥିଯୋଗୁଁ ମୁଁ ମନେକରୁଛି ନିଜ ମନକୁ (ହୀରା ବାନ୍ଧି ଝାଳିଲାଣି) କଠିନ କରିଦେଲାଣି । ଧୈର୍ଯ୍ୟ ଓ (ଆତୁରତା) ବ୍ୟାକୁଳଭାବ ଏ ଦୁହେଁ ପରସ୍ପର ଯୁଦ୍ଧରେ କିଏ କାହାକୁ ବଳି ପଡ଼ିଲାଣି ଜାଣି ହେଉନାହିଁ ।୧୮ ।

Digitized by srujanika@gmail.com

ଶୁଣି ଏଣାକ୍ଷଣୀ ଭୀତି "ମରି ମରି" ହରି ମୁଖୁଁ ଉଚ୍ଚାରିଲାନି ।
ବିଗ୍ରରି ପଗ୍ରରିଲେ ମୋହୋ ପାଇଁ କି ସତେ ଏତେ ଆଦରିଲାନି ।
ନବନାଗରୀ । ସତେ କାମକୁ ଡରିଲାନି ।
ଦୂତୀ କହେ ତା'ର ଆରମ୍ଭ ଅପାର ଅଥୟେ ତନୁ ଥରିଲାନି । ୧୯ ।

ମହୀମୋହିନୀ ମୋହିତ ମୋ ହିତରେ ସତେ ଦଇବ ବିହିଲାନି ।
ଭାଷି ଭାସିଗଲେ ହରି ହରିଣାକ୍ଷୀ ପ୍ରାପ୍ତିକି ଆଶା ରହିଲାନି ।
ନବନାଗରୀ । ଭାବ ହୃଦୟ ଦହିଲାନି ।
ତାଙ୍କ ଦୁଃଖେ ଦୁଃଖୀ ହୋଇ ଅଭିମନ୍ୟୁ ନୟନୁ ଲୁଅ ବହିଲାନି । ୨୦ ।

---

ମୃଗନୟନା ରାଧାଙ୍କର ଏପରି ଗୀତି ଶୁଣି ହରି ମୁଖରୁ 'ଆହା ମରିଯାଉଥାଏଟି' ଉଚ୍ଚାରିତ ହେଲା । ଏହା ବିଗ୍ରରି ପଗ୍ରରିଲେ ମୋ'ରି ପାଇଁ ସତେ ଏତେ ଆଦରିଛି । ସେ କଣ କାମଦେବଙ୍କୁ ଡରିଛି । ଦୂତୀ କହିଲା, ଏ ତ ଆରମ୍ଭ ମାତ୍ର, ସେ ବହୁତ ଅଥୟ ହେବାରୁ ତା'ର ଦେହ ଥରୁଚି ପରା ।୧୯।

ପୃଥିବୀ ମୋହନକାରିଣୀ ଶ୍ରୀରାଧା ମୋହିତ ହୋଇଛି । ଏହା କ'ଣ ମୋ'ରି ମଙ୍ଗଳପାଇଁ ଦୈବ ଏପରି କରିଛି । ଏହା କହି ଶ୍ରୀକୃଷ୍ଣ ସେହି ମୃଗନେତ୍ରୀ ରାଧାଙ୍କ ପ୍ରାପ୍ତି ଆଶା ରଖିଲେ । ଏହି ଶୃଙ୍ଗାର ଭାବ ତାଙ୍କର ହୃଦୟକୁ ଦଗ୍ଧୀଭୂତ କଲା । ତାଙ୍କ ଦୁଃଖରେ ଦୁଃଖୀ ହୋଇ କବି ଅଭିମନ୍ୟୁଙ୍କ ନୟନରୁ ଲୁହ ବହୁଅଛି ।୨୦।

Digitized by srujanika@gmail.com

## ମୂଳରଚନା ସହିତ ଅନୁଦିତ ସଂସ୍କୃତ ଶ୍ଳୋକ ପାଠକଙ୍କ କୌତୂହଳ ନିବାରଣ ତଥା ରସ ଆସ୍ୱାଦନ ପାଇଁ ଏଠାରେ ପ୍ରଦତ୍ତ ହେଲା ।

## ଶ୍ରୀଜଗନ୍ନାଥାୟ ନମଃ

ନୋପାଗତାୟାଂ ଚିର ପ୍ରୋଷିତାୟାଂ
ଦୂତ୍ୟାଂ ମୁକୁନ୍ଦୋଽତ୍ୟବସନ୍ନ ଗାତ୍ରଃ
ଦୂ-ପୂର୍ବ ଶବ୍ଦ ଶ୍ରବଣେଽନୁରାଗୀ
ତସ୍ଥାବନନ୍ୟାଶ୍ରୟ ଚିତ୍ତବୃତ୍ତିଃ ।୧ ।

କାଲେ ଚ ତସ୍ମିନ୍ ସମୁପାଗତାଽଭୂତ୍
ଦୂତୀପ୍ରସନ୍ନା ସ୍ମିତ ଶୋଭିତାସ୍ୟା
ସଂରକ୍ଷ୍ୟ ତସ୍ୟାଃ ପ୍ରବିବକ୍ଷୁଭାବଂ
ଚିତ୍ତେ ହରେଃ ସ୍ଫୂର୍ଜତି ମୋଦଚନ୍ଦ୍ରଃ ।୨ ।

ଦୂତୀ ବଭାଷେ ସରସଂ ଶୁଭଂ ତେ
ଦିଷ୍ଟ୍ୟା ସ୍ୱରସ୍ତ୍ରାସୟତେ କିଶୋରୀଂ
ଅଙ୍ଗେଷୁ ତସ୍ୟାଃ ସ୍ଫୁଟତାଂ ପ୍ରୟାନ୍ତି
ସ୍ମାର୍ଯ୍ୟୋ ଦଶାସ୍ତା ଦଶସଂଖ୍ୟକା ଯାଃ ।୩ ।

ହାସେ ନ ବେଶେ ନ ଚ ବାସସାତ୍ୱର୍ଥଂ
ଗ୍ରାସେ ଚ ନେଚ୍ଛା ବଳତେ ତଦୀୟା
ହାଲାହଳଂ ସା ମନୁତେ ହି ସର୍ବଂ
ଜାତଂ ନ କିଞ୍ଚିତ ସ୍ୱସୁଖାୟ ଯସ୍ମାତ୍ ।୪ ।

ନିଃସାରସା ସମ୍ପ୍ରତି ତାଃ ସରସ୍ୟ
ସ୍ତାପୋପଶ୍ମରାୟ ଗୃହୀତ ପୁଷ୍ପାଃ
ତଲ୍ପାୟ ପତ୍ରାଣ୍ୟଧିମାର୍ଗିତାନି
ହାରାୟ ଖଣ୍ଡାନି ମୃଣାଳିକାୟାଃ ।୫ ।

ହାହେତି ଶବ୍ଦଂ ନିଗିରତ୍ୟଜସ୍ରଂ
ମୂର୍ଦ୍ଧନି ସ୍ଥିତା ହା ନବ ଜାଗରୀଣାଂ
ସା ସାରସସ୍ୟା ଘନସାରସାର୍ଦ୍ରୈ
ରଙ୍ଗେ ବିଲେପଂ ପ୍ରଦଦାତି ଭୂୟଃ ।୬ ।

ରାତ୍ରନ୍ଦିବଂ ହା ରଜନୀଶ ମୁଖ୍ୟା
ସଂଲୁଠ୍ୟଂତେ ଭୂମିତଳେ ରଜଃ ସ୍ମ
ମଜ୍ଜତ୍ୟହୋ ଯାବତଳ ଶୋକସିନ୍ଧୌ
ଦଂଦହ୍ୟତେ କାମଜ ବହ୍ନିତାପୈଃ ।୭ ।

ମନ୍ୟେ ହିତାୟୈବ ମମ ସ୍ଥିତାଽସୌ
ବାସୋ ରଦାନାଂ ରଦନୈର୍ଦ୍ଧଶନ୍ତୀ
ଭୀତ୍ୟା ସମାକ୍ରାନ୍ତମନା ମହତ୍ୟା
ବୈକଲ୍ୟପଙ୍କେ ପତିତା କ୍ଷିଣୋତି ।୮ ।

ସଂସୂଚିତାସ୍ୟା ହୃଦୟାନୁଭାବୈ—
ହୃଦ୍ୟବରଂ ସେଙ୍କତ କଂ ପୁଂମାସମ୍
ଲଜ୍ଜା ବିବେକସ୍ଥିତି କୌଲ୍ୟଶୀଳ—
ପକ୍ଷିବ୍ରଜସ୍ତ୍ରୋଚିର ମୋଚି ତନ୍ୱା ।୯ ।

ଉତ୍ତାପିତ ସ୍ୱର୍ଣ୍ଣରୁଚିସ୍ତୁ ତସ୍ୟା
ଦିନେ ଦିନେ ଧୂସରତାଂ ପ୍ରୟାତି
ଭୂନ୍ୟସ୍ତନେତ୍ରା ମୁକୁରେ ବିଭାଗାତ୍
ଭୂବଂ କିମୁ ଦର୍ପଣ ଇତ୍ୟବୈତି ।୧୦ ।

ନାମାନି ନିତ୍ୟଂ ଜପତି ସ୍ମରାରେଃ
ଶିବେତି ଶମ୍ଭୋ ହର ଶଙ୍କରେତି
ଗେହଂ ଦରୀ ବନ୍ମନୁତେ ହି ଶୂନ୍ୟଂ
ଲିଖତ୍ୟଳଂ ଭୂମିତଳଂ ନଖାଗ୍ରୈଃ ।୧୧ ।

ବେଶାଦିକଂ ନାଦ୍ରିୟତେ ସଖୀଭିଃ
କୃତଂ ପୁରେବ ସ୍ମକରେଣ ଯତ୍ନାତ୍ ।
ଗୋପେ ସମନ୍ତାତ୍ ପ୍ରସରତ୍ୟବାଧଂ
ଦଶା କିଶୋର୍ଯ୍ୟା ଶ୍ରୁତି ଦାରୁଣେୟମ୍ ।୧୨ ।

Digitized by srujanika@gmail.com

ଉଦ୍ୟାନ ମେକାନ୍ତତୟାଽତି ରମ୍ୟ
ମୁଦ୍ଦୀପୟେ ଚ୍ଛିତ୍ତବିକାରମସ୍ୟାଃ
ଇତ୍ଥଂ ବିଗ୍ୱର୍ଯ୍ୟାଚ୍ଛିନ୍ନଦେବ ସଦ୍ୟୋ
ମାଳାକୁଦୁଦ୍ୟାନକପାଳକୋଽପି ।୧୩।

ପୀଡ଼ା କିମୀଦୃକ୍ ହୃଦୟେ ତବାଦ୍ୟ
ପୃଷ୍ଟା ନନାନ୍ଦ୍ରା କଳହୈକମତ୍ୟା
ପ୍ରତ୍ୟୁତ୍ତରଂ ସା ପ୍ରଦଦାତି ତସ୍ୟୈ
ରୋଗୋଽତ୍ର ହେତୁ ର୍ନହିନିର୍ଣ୍ଣୀତୋ ଯଃ ।୧୪

କଞ୍ଜଂ ତଥା ଖଞ୍ଜନ ପକ୍ଷିଣଂ ଯେ
ଶୋଭାବିଧୌ ପ୍ରାକ୍ ହସତଃ ସୁନେତ୍ରେ
ତେ ମଜ୍ଜତଃ ସମ୍ପ୍ରତି ଲୋତକୌ ଘେ
ପାଣୌ ସ୍ଥିତଂ ପ୍ଲାଦୟତଶ୍ଚ ଗଣ୍ଡମ୍ ।୧୫।

ସର୍ବାରଜନ୍ୟଃ ଶିବରାତ୍ରିତୁଲ୍ୟା
ନୀତା ଯତୋ ଜାଗରଣୋପବାସୈଃ
ସମ୍ମୋହିନୀ ଚମ୍ପକଦାମଗୌରୀ
ସାଽତ୍ମାନମୀଶୋର୍ପୟତୀତି ମନ୍ୟେ ।୧୬।

କିଂ ଭାବୟନ୍ତୀ କଳକଣ୍ଠକଣ୍ଠୀ
ଚେଳାଞ୍ଚଳେ ଗ୍ରନ୍ଥିମିୟଂ ଦଦାତି
ଦୁର୍ବାକ୍ୟବାଣାନ୍ ସହତେ ଖଳାନାଂ
ନମ୍ରେଣ ମୂର୍ଦ୍ଧ୍ନା ହରିଣାୟତାକ୍ଷୀ ।୧୭।

ଜାଗର୍ତ୍ତିତାପୋ ହୃଦି କାମତୋଽସ୍ୟାଃ
ସନ୍ତାପନୋଚ୍ଛୋଷଣ କୃତ ତେନ
ପ୍ରୀତିବ୍ରତତ୍ୟା ହୃଦୟୋଦ୍‌ଗତାୟାଃ
ପତ୍ରାଣି ଶୀର୍ଣ୍ଣାନି ଗଳନ୍ତି ମନ୍ୟେ ।୧୮।

ଆସ୍ୟେନ୍ଦୁରସ୍ୟାଃ କ୍ରମଶୋ ବିନମ୍ୟ
ବିଶ୍ରାମ୍ୟତି ପ୍ରୋଚ୍ଚଘନସ୍ତନାଦ୍ରୌ
ସୁତ୍ରାଽଶ୍ରୁପୂରଃ କମଳେକ୍ଷଣାଭ୍ୟାଂ
ପତ୍ରାବଳିଂ ପ୍ରୋଞ୍ଛତି ତାମୁରସ୍ତଃ ।୧୯।

ଧୃତ୍ୱା ବୟସ୍ୟା ବସନାଞ୍ଚଳଂ ସା
କ୍ରାମତ୍ୟାଗରେ କ୍ରମଶେ ସ୍ଖହାଚେତ୍
ବକ୍ତୁ ସ୍ମ ସଖ୍ୟଃ 'ମମ ଜୀବିତାଶାଂ
ମୁଞ୍ଚନ୍ତୁ ଜୀବେଶପୁରଂ ବ୍ରଜେୟମ୍ ।୨୦।

ତୋଷାୟ କାଲ୍ୟାଃ ସମୁପାହୃତାସ୍ତେ
ନିଃଶେଷିତା ଶ୍ରାଗଗଣାଃ ସମେଷାଃ
ନୋ ଦେବତେ ଦୃଙ୍ ନ ଚ ପୂଜିତା ଯା
ନୈଷାର୍ଜନା ଯା ନ କୃତା ଯଥାର୍ହମ୍ ।୨୧ ।

ନ ପ୍ରତ୍ୟୟୋ ଦେବକୁଳାନୁକୂଲ୍ୟେ
ନାଶାସ୍ତି କାଚିଦ୍ ଫଳଲାଭମୂଳା
ଦୁଃଖୀୟତି ନ୍ୟସ୍ତକରା ସ୍ୱମର୍ଦ୍ଧ୍ନି
ତୂଷ୍ଣୀଂ ସ୍ଥିତା ସର୍ବମପାସ୍ୟ ଦୂରେ ।୨୨।

ଜାନାମ୍ୟତଃ ପଞ୍ଚଶରଃ କରେଣ
ଧୃତ୍ୱା ଧନୁଃ ସ୍ୱଂ ସଶରଂ ଚ ତୂଣଂ
କର୍ମାଣି ମର୍ମାଣି ଚ ଧର୍ମବର୍ଗାନ୍
ଦଗ୍‌ଧୁଂ ସମର୍ଥାନ୍ ପ୍ରହିଣୋତି ବାଣାନ୍ ।୨୩।

ଯସ୍ମିନ୍ ସମାସକ୍ତ ମନା ନିତାନ୍ତଂ
ଚିତ୍ତଂ ନିଧାୟୋରସି ତସ୍ୟ ଶେତେ
ରୋମାଞ୍ଚିତୈଃ ଜଣ୍ଟକିତାଙ୍ଗଯଷ୍ଟିଃ
ଶେଷାଃ କଳେନ୍ଦୋରିବ କ୍ଷୀଣ ଦେହା ।୨୪।

ସନ୍ଧର୍ମ ପ୍ରେମ୍‌ଣୋଃ କତରୋ ଗରୀୟାନ୍
କିଂ ଧ୍ୟାନମଗ୍ନା ତୁଳନାଂ କରୋତି
ଚିତ୍ତଂ କୃତଂ ସଦ୍ ଦଳିତାଞ୍ଜନେନ
ଲୁମ୍ପତ୍ୟହୋ ତଚ୍ଚ ପୁନଃ କରୋତି ।୨୫।

ସାନ୍ଦ୍ରାନ୍ଧକାରଂ ସୁତମାଳଶାଳଂ
କାଦମ୍ବିନୀଂ ବାପି ଦିଦୃକ୍ଷତୋଽସୌ
ନୀଳଂ ହି ବାସୋ ପରିଧାତୁକାମା
ନୀଳାମ୍ବୁଜେ ସାଶ୍ରୁ ଦଧାତି ଦୃଷ୍ଟିମ୍ ।୨୬।

Digitized by srujanika@gmail.com

ଉଦ୍ଦୀପନାନ୍ୟାର୍ତ୍ତବ ସଂଭୃତାନି
ବ୍ୟସ୍ୟନ୍ତି ଭାବାନ୍ ମନସୋଽଖିଳାଂସ୍ତାନ୍
ପୁଷ୍ପେଷୁ କାଣ୍ଡୈଃ ପ୍ରତିଦଣ୍ଡମେଷା
ସଂଦଣ୍ଡ୍ୟତେ କିଂ ନୁ ସୁଖାୟ ତସ୍ୟାଃ ।୨୭।

କସ୍ତୁରିକାପଙ୍କମୟଂ ବିଲୋକ୍ୟ
ଭାଲସ୍ଥ ବିନ୍ଦୁଂ କରଦର୍ପଣେନ
କାନ୍ କାନ୍ ବିକାରା ନନୁଭୂୟତସ୍ମା-
ଦହ୍ନୋ ନିରସ୍ତା ତିଳକ କ୍ରିୟାଭ୍ୟଃ ।୨୮।

ନୋଚ୍ଚୈଃ ସର୍ବୈଃ ପ୍ରସ୍ଫୁରିତା ଧରା ସା
ମନ୍ତ୍ରଂ ନୁ କଂ କଂଜପତୀତି ମନ୍ୟେ
ତ୍ୱନ୍ନାମ ଯତ୍ ପାଠୟତେଽବକାଶେ
ସ୍ୱାଂ ସାରିକାଂ ତ୍ୱ ତ୍ୱୟି ଭାବଲୀନା ।୨୯।

ଚନ୍ଦ୍ରୋ ନ ଦୃଶ୍ୟୋ ହରିତାଳିକାୟା
ଇତ୍ୟସ୍ତି ଶାସ୍ତ୍ରେଷୁ ବିଧିଃ ପ୍ରସିଦ୍ଧଃ
ରାତ୍ରୌ ଚ କସ୍ୟାଂଚନ ସନ୍ନତାସ୍ୟା
ଚନ୍ଦ୍ରଂ ନ ବା ନାସ୍ୱରମୀକ୍ଷତେଽସୌ ।୩୦।

ଦୋଷାସୁ ଘୋଷା କୁରୁତେଽରିବୁଦ୍ଧିଂ
ପିକସ୍ୱନେ ବଜ୍ରମତିଂ କରୋତି
କାକାନ୍ ବିନିନ୍ଦତ୍ୟତି ଶୈଶବେ ଯେ
ଶିଶୂନ୍ ପିକାନାଂ ପରିପୋଷୟନ୍ତି ।୩୧।

ହ୍ରୀଧୈର୍ଯ୍ୟଗାମ୍ଭୀର୍ଯ୍ୟଗୁଣାଃ ପରାସ୍ତା
ବ୍ୟାକେନ ସାକଂ ସ୍ୱବଳାଶ୍ରୟେଣ
ତେନାନୁମନ୍ୟେ ପରିକୀଳିତଂ ନୁ
ଅନ୍ତର୍ବହିର୍ହ୍ରୀତକ ବନ୍ଧନେନ ।୩୨।

ଆକର୍ଣ୍ଣ୍ୟତେ ନୈବ ମମୋପଦେଶ—
ବଚସ୍ତୟା ତଥ୍ୟମୟଂ ସୁପଥ୍ୟମ୍
କାତର୍ଯ୍ୟଧୈର୍ଯ୍ୟେ ନିରତେ ନିଯୁଦ୍ଧେ
ତୟୋର୍ନଜାନେ କତରଂ ବ୍ୟଜୈଷୀତ୍ ।୩୩।

ଇତି ନିଗଦିତବତ୍ୟାଂ ଦୂତିକାୟାଂ ମୁରାରି—
ରଧିଗତଗୁରୁଖେଦୋ
ହାହତୋଽସ୍ମୀତ୍ୟବାଦୀତ
ସକରୁଣଚଳକଣ୍ଠଂ ଦୂତିକାଂ ପୃଚ୍ଛତି ସ୍ମ
ଅୟି ବଦବଦ ସତ୍ୟଂ ମଦ୍କୃତେ
ସେଦୃଶୀ କିମ୍ ।୩୪।

ଅପି ବଦ ତରଳାକ୍ଷୀ ମାରତଃ କିଂ ବିଭେତି
"ତନୁତରତନୁ ରସ୍ୟାଃ କମ୍ପତେ" ଦୂତ୍ୟବୋଚତ୍
ମଦନକଦନମସ୍ୟା ମନ୍ଧିତାୟେତି ମତ୍ୱା
ବିଚଳିତମତି ରାଧାପ୍ରାପ୍ତୟେ
ସତ୍ୱରୋଽଭୂତ୍ ।୩୫।

ଦହନ୍ତି କୃଷ୍ଣ ହୃଦୟଂ
ରାଧାଭାବ୍ୟ ଇତି ସ୍ମରନ୍
ମୁଞ୍ଚତ୍ୟଶ୍ରୁଣି ନେତ୍ରାଭ୍ୟା-
ମଭିମନ୍ୟୁଃ କବିଃ ସ୍ୱତଃ ।୩୬।

— ୦ —

Digitized by srujanika@gmail.com

# ପୁଷ୍ପଗିରି ମହାବିହାର

ପ୍ରାଚୀନ ଭାରତରେ ତକ୍ଷଶିଳା, ପୁରୁଷପୁର, ଶ୍ରାବସ୍ତି, କୁଶନଗର, ବୈଶାଳୀ, ରାଜଗୃହ, ଚମ୍ପା, କପିଶା, ଗାନ୍ଧାର, ପୁଷ୍କରାବତୀ ଉଦ୍ୟାନ, ଅହିଛତ୍ର, କାନ୍ୟକୁବ୍ଜ, ଅଯୋଧ୍ୟା, ପ୍ରୟାଗ, ଜେତବନ ବିହାର, କପିଳବାସ୍ତୁ, ରାମଗ୍ରାମ, ବାରାଣସୀ, ସାରନାଥ, ମହାବୋଧି ବିହାର, ନାଳନ୍ଦା, ଦନ୍ତପୁରୀ, ତାମ୍ରଲିପ୍ତ ଓ ପୁଷ୍ପଗିରି ଆଦି ବିହାରଗୁଡ଼ିକ ଭାରତ ଓ ଭାରତ ବାହାରେ ଖ୍ୟାତିଲାଭ କରିଥିଲେ ।

ଚୀନା ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ, ସପ୍ତମ ଶତାବ୍ଦୀରେ ଓଡ଼ିଶାରେ ପ୍ରଖ୍ୟାତ ପୁଷ୍ପଗିରି ବିହାର ବିଦ୍ୟମାନ ଥିଲା । ସେଠାରେ ଦଶସସ୍ର ସନ୍ନ୍ୟାସୀ ରହି ମହାଯାନତତ୍ତ୍ୱ ଅଧ୍ୟୟନ କରୁଥିଲେ । କେତେକ ବିଭିନ୍ନ ସଂପ୍ରଦାୟର ଧର୍ମବିରୋଧୀ ବ୍ୟକ୍ତି ମଧ୍ୟ ସମବେତ ହୋଇ ଦୈବୀଶକ୍ତି ଉପାସନା କରୁଥିଲେ । ଉଡ୍ରଦେଶରେ ଅଶୋକଙ୍କ ନିର୍ମିତ ଦୈବୀଶକ୍ତିସମ୍ପନ୍ନ ଦଶଗୋଟି ସ୍ତୁପ ଥିଲା । ହୁଏନ୍‌ସାଂଙ୍କ ଜୀବନୀରୁ ଜଣାଯାଏ ଯେ ଓଡ଼ିଶାର ବୌଦ୍ଧାଚାର୍ଯ୍ୟଗଣ ହୀନଯାନ ତତ୍ତ୍ୱ ଅଧ୍ୟୟନ କରୁଥିଲେ । ମହାଯାନ ପ୍ରତି ସେମାନଙ୍କର ବିଶ୍ୱାସ ନଥିବାରୁ ସେମାନେ ଭାବୁଥିଲେ ଏହା ଧର୍ମବିରୋଧୀମାନଙ୍କ ମତ ସିନା, ମାତ୍ର ବୁଦ୍ଧଙ୍କ ପ୍ରଦତ୍ତ ନୁହେଁ । ଏଣୁ ହୁଏନ୍‌ସାଂଙ୍କ ପ୍ରଦତ୍ତ ବିବରଣୀ ଓ ଅନ୍ୟମାନଙ୍କ ଦ୍ୱାରା ଲିଖିତ ତାହାଙ୍କ ଜୀବନୀରେ ଏହିପରି ପରସ୍ପର ବିରୋଧ ମତ ଦେଖାଯାଏ । ବାସ୍ତବପକ୍ଷେ ସେ ସମୟରେ ଏକସହସ୍ର ସଂଘାରାମ ଥିବାରୁ ଓ ଦଶସହସ୍ର ବୌଦ୍ଧଭିକ୍ଷୁ ଥିବାରୁ କେତେକ ସଂଘାରାମରେ ହୀନଯାନ ପନ୍ଥୀ ଓ କେତେକ ସ୍ଥାନରେ ମହାଯାନପନ୍ଥୀ ବୌଦ୍ଧାଚାର୍ଯ୍ୟ ଭିକ୍ଷୁ ଓ ଉପାସକ ଥିଲେ ।

କଥିତ ଅଛି, ଉତ୍ତର ଭାରତର ସମ୍ରାଟ୍ ହର୍ଷବର୍ଦ୍ଧନ କଙ୍ଗୋଦ (ଗଞ୍ଜାମ) ଜୟକରି ଫେରିବା ବାଟରେ ଓଡ଼ିଶାର ହୀନଯାନ ପନ୍ଥୀ ବୌଦ୍ଧାଚାର୍ଯ୍ୟମାନେ କହିଲେ, ''ଆପଣ ନାଳନ୍ଦା ମଠ ନିକଟରେ ଏକ ପ୍ରକାଣ୍ଡ ମଠ ନିର୍ମାଣ କରିଛନ୍ତି; କିନ୍ତୁ କାପାଳିକ ବା କାଳୁଚି ମଠ ନିର୍ମାଣ କରାଇ ନାହାନ୍ତି କାହିଁକି ?'' ସମ୍ରାଟ ସେମାନଙ୍କୁ ଏପରି ପ୍ରଶ୍ନ ପଚାରିବାର କାରଣ ପଚାରନ୍ତେ ସେମାନେ ଉତ୍ତରଦେଲେ— ନାଳନ୍ଦା ମଠରେ ପ୍ରତିଷ୍ଠାପିତ ଆକାଶକୁସୁମ ତତ୍ତ୍ୱ ଏବଂ ଆମ୍ଭମାନଙ୍କ କାପାଳିକ ତତ୍ତ୍ୱ ଏକା ଅଟେ । ଦାକ୍ଷିଣାତ୍ୟର ବ୍ରାହ୍ମଣ ଆଚାର୍ଯ୍ୟ ପ୍ରାଜ୍ଞଗୁପ୍ତ

Digitized by srujanika@gmail.com

ସକଳ ଶାସ୍ତ୍ର ଆୟତ୍ତ କରି ସାତଶ ଶ୍ଳୋକ ବିଶିଷ୍ଟ ମହାଯାନତତ୍ତ୍ୱ ବିରୋଧୀ ଗ୍ରନ୍ଥ ପ୍ରଣୟନ କରିଥିଲେ । ଓଡ଼ିଶାର ହୀନଯାନ ମତାବଲମ୍ବୀ ଆଚାର୍ଯ୍ୟଗଣ ସେହି ଗ୍ରନ୍ଥର ମତକୁ ଆଦର କରି କହିଲେ, "କୌଣସି ମହାଯାନପନ୍ଥୀ ପଣ୍ଡିତ ଏହାର ଗୋଟିଏ ସୁଦ୍ଧା ମତ ଖଣ୍ଡନ କରିପାରିବ ନାହିଁ ।" ମହାଯାନ ପନ୍ଥୀ ସ୍ୱୟଂ ରାଜା ଏପରି କଥା ମାନି ନ ଥିଲେ । ସେ କହିଲେ, "ମୂଷିକମାନଙ୍କୁ ସୈନ୍ୟ କରି ଶୃଗାଳଟିଏ ସିଂହ ସହ ଯୁଦ୍ଧ କରିବାକୁ ସମ୍ମୁଖୀନ ହେବା ଯାହା, ହୀନଯାନପନ୍ଥୀ ଶୃଗାଳଙ୍କର ମହାଯାନପନ୍ଥୀ ସିଂହଙ୍କ ପାଖରେ ସେଇ ଅବସ୍ଥା ହେବ । କିନ୍ତୁ ପୁଷ୍ପଗିରିର ପଣ୍ଡିତମାନେ ନାଳନ୍ଦାର ପଣ୍ଡିତମାନଙ୍କ ସହ ତର୍କପାଇଁ ଆହ୍ୱାନ ଦେଇଥିଲେ । ରାଜା ଏଥିରେ ସମ୍ମତ ହୋଇ ନାଳନ୍ଦାକୁ ଖବର ଦେଲେ । ନାଳନ୍ଦାର କୁଳପତି ତିନିଜଣ ଶାସ୍ତ୍ରଜ୍ଞ ପଣ୍ଡିତ ଓ ହୁଏନ୍‌ସାଂକୁ ତର୍କ ପାଇଁ ପୁଷ୍ପଗିରି ପଠାଇବା ସ୍ଥିର ହୋଇଥିଲା; ମାତ୍ର ଏହି ତର୍କସଭା କାର୍ଯ୍ୟକ୍ରମ ସ୍ଥଗିତ ରହିଲା । ଏହାର କାରଣ ଅନୁମିତ ହୁଏ ଯେ ନାଳନ୍ଦା ପଣ୍ଡିତମାନେ ଯଦି ପୁଷ୍ପଗିରିର ପଣ୍ଡିତମାନଙ୍କ ଦ୍ୱାରା ପରାସ୍ତ ହୋଇଥାଆନ୍ତେ, ତେବେ ବିଶ୍ୱବିଖ୍ୟାତ ନାଳନ୍ଦା ମୁଖରେ କାଳି ଲାଗିଯିବା ଭୟରୁ । ଚୀନରୁ ପରିବ୍ରାଜକ ଫାହିୟାନ୍, ହୁଏନ୍‌ସାଂ ଓ ଇତ୍ ସିଂ ଆଦି ବିଭିନ୍ନ ସମୟରେ ନାଳନ୍ଦାର ସୁଖ୍ୟାତି ଯୋଗୁଁ ଅଧ୍ୟୟନ ପାଇଁ ଆସିଥିଲେ । ନାଳନ୍ଦାର ପଣ୍ଡିତମାନେ ସିଂହଳ, ଯାଭା, ସୁମାତ୍ରା, ଚୀନ, ତିବ୍ବତ୍ ଆଦି ସ୍ଥାନରେ ବୌଦ୍ଧଧର୍ମ ବିସ୍ତାର କରିଥିଲେ । ଜଣେ ଚୀନ ସମ୍ରାଟ୍ ଉତ୍କଳ ସମ୍ରାଟ ଶୁଭାକର କେଶରୀଙ୍କୁ କେତେ ଜଣ ଶାସ୍ତ୍ରଜ୍ଞ ବୌଦ୍ଧାଚାର୍ଯ୍ୟ କେତେକ ଗ୍ରନ୍ଥ ପଠାଇବାକୁ ଅନୁରୋଧ କରିଥିଲେ । ଏହାର ଉତ୍ତରରେ ସମ୍ରାଟ୍ ଶୁଭାକର ପୁଷ୍ପଗିରିର ଆଚାର୍ଯ୍ୟ ପ୍ରଜ୍ଞାଙ୍କ ହସ୍ତରେ ପ୍ରଜ୍ଞା ପାରମିତା ଓ ଗଣ୍ଡବ୍ୟୂହ ଆଦି ଗ୍ରନ୍ଥମାନଙ୍କର ପାଣ୍ଡୁଲିପି ପଠାଇଥିଲେ । ଏଣୁ ପୁଷ୍ପଗିରି ବିଶ୍ୱବିଦ୍ୟାଳୟର ସୁଖ୍ୟାତି ଭାରତ ଓ ଭାରତ ବାହାରେ ବ୍ୟାପିଥିବାରୁ ଏହାର ଭୂମିକା କିପରି ଗୁରୁତ୍ୱପୂର୍ଣ୍ଣ ଥିଲା, ତାହା ଅନୁମେୟ । ତେବେ ଏପରି ଏକ ବିଶ୍ୱବିଖ୍ୟାତ ଅନୁଷ୍ଠାନ ଓଡ଼ିଶାର କେଉଁ ସ୍ଥାନରେ ଅବସ୍ଥିତ ଥିଲା, ତାହା ଅଦ୍ୟାବଧି ନିର୍ଣ୍ଣୀତ ହୋଇନାହିଁ । ଓଡ଼ିଶା ଓ ଓଡ଼ିଶା ବାହାରର ବିଦ୍ୱାନ୍‌ମାନେ ଏଥିପାଇଁ ଅନୁସନ୍ଧାନ, ଭୂଖୋଦନ ଓ ଅନ୍ୟାନ୍ୟ ସୂତ୍ରରୁ ପ୍ରମାଣ ସଂଗ୍ରହ କରି ଏକ ସିଦ୍ଧାନ୍ତରେ ପହଞ୍ଚିବାକୁ ଚେଷ୍ଟିତ ।

ଐତିହାସିକ କନିଂହାମ୍ ଖଣ୍ଡଗିରି ଓ ଉଦୟଗିରିକୁ ପୁଷ୍ପଗିରି ବୋଲି ଭାବିଥିଲେ, ମାତ୍ର ପ୍ରାଚୀନ ଶାସ୍ତ୍ରମାନଙ୍କରେ ଏ ଦୁଇ ପର୍ବତ କୁମାର ଓ କୁମାରୀ ପର୍ବତ ଥିବାରୁ ଏହା ଗ୍ରହଣଯୋଗ୍ୟ ନୁହେଁ । ପୁଣି ସେ ଦୁଇପର୍ବତ ଜୈନ ଧର୍ମାବଲମ୍ବୀମାନଙ୍କର ପୀଠ ଓ ଉଦୟଗିରିର ହାତୀଗୁମ୍ଫା ଜୈନସମ୍ରାଟ ଖାରବେଳଙ୍କ ପ୍ରଦତ୍ତ ଶିଳାଲେଖ ହୃଦରେ ଧାରଣକରି ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ସ୍ଥାନ ରୂପେ ବିବେଚିତ ହୋଇଛି ।

Digitized by srujanika@gmail.com




(କ) ବିଦ୍ୟାଭୂଷଣ ପଣ୍ଡିତ ଆଗ୍ଚର୍ଯ୍ୟ କେନ୍ଦୁଝରର ଡାଙ୍ଗୁଆପଶି ଗ୍ରାମ ପ୍ରାନ୍ତରେ ଥିବା ଠାକୁରାଣୀଶାଳ ସଳଖରେ ସୀତାନଦୀ ପାର ହୋଇ ଦକ୍ଷିଣପୂର୍ବ ଦିଗରେ ଥିବା ଏକ ଉଚ୍ଚସ୍ଥାନ ଓ ତତ୍ରତ୍ୟ ପ୍ରାଚୀର ଓ ବିସ୍ତୃତ ଧ୍ୱଂସାବଶେଷକୁ ପୁଷ୍ପଗିରି ବିହାର ବୋଲି ନିରୂପଣ କରିଛନ୍ତି ।

(ଖ) ରାବଣଛାୟା ଛାତ-ଚିତ୍ର (Fresco- Painting) ଓ ମୁନିଗୁମ୍ଫା । ପ୍ରଭୃତି ଏକ ସ୍ତୂପର ଧ୍ୱଂସାବଶେଷ ବୋଲି ସେ ମନେକରନ୍ତି ।

(ଗ) ଠାକୁରାଣୀଶାଳ ପ୍ରସ୍ତରସ୍ତୂପ

(ଘ) ସୀତାଭଞ୍ଜ (ସୀତାବିଞ୍ଜି) ଗ୍ରାମ

(ଙ) ବିହାର (ସଂଘାରାମ)ର ଧ୍ୱଂସାବଶେଷ

(ଚ) ଫୁଲଗ୍ଙ୍ଗୁଡ଼ି ବା ଫୁଲପାହାଡ଼ି (୧୯୩୫ ଫୁଟ ଉଚ୍ଚ) ସ୍ଥାନଗୁଡ଼ିକୁ ପର୍ଯ୍ୟବେକ୍ଷଣ କରି ଏହା ପୁଷ୍ପଗିରି ବିହାର ହେବା ସମ୍ଭବ ମନେକରି ୧୯୪୬ ନଭେମ୍ବର ନବଭାରତରେ ଏକ ପ୍ରବନ୍ଧ ଲେଖିଥିଲେ । ଏ ସ୍ଥାନର ବର୍ଣ୍ଣନା କରି ଲେଖିଛନ୍ତି, "ଡାଙ୍ଗୁଆପଶି ଗ୍ରାମର ପ୍ରାନ୍ତଭାଗରେ ଥିବା ଠାକୁରାଣୀଶାଳର ସଳଖରେ ସୀତାନଦୀକୁ ପାରହେଲେ ଗୋଟିଏ ଉଚ୍ଚଭୂମି ପଡ଼େ । ଏହାର ଚତୁର୍ଦ୍ଦିଗ ଇତସ୍ତତଃ ବିକ୍ଷିପ୍ତ ଇଷ୍ଟକ ଖଣ୍ଡରେ ପୂର୍ଣ୍ଣ । ଏହି ଉଚ୍ଚଭୂମି ଉପରେ ଈଷତ୍ ଦକ୍ଷିଣପୂର୍ବ ଅଭିମୁଖରେ ଗମନକଲେ ପରିଖାପରି ପ୍ରତୀୟମାନ ହେଉଥିବା ଗୋଟିଏ ନାଳ ପଡ଼େ । ଏଇ ନାଳକୁ ଅବତରଣ କରିବା ସ୍ଥାନରେ ଗୋଟିଏ ଭଗ୍ନପ୍ରାଚୀରର ବିସ୍ତୃତ ଧ୍ୱଂସାବଶେଷ ରହିଛି । ପୂର୍ବପରି ଈଷତ୍ ଦକ୍ଷିଣ ପୂର୍ବାଭିମୁଖୀ ହୋଇ ଏହି ନାଳକୁ ଅତିକ୍ରମ କଲେ ଆଉ ଗୋଟିଏ ଉଚ୍ଚର ଦକ୍ଷିଣଭାବେ

Digitized by srujanika@gmail.com

ବିସ୍ତୃତ ଆୟତାକାର ଉଚ୍ଚ ଭୂମି ପଡ଼େ । ଏହାର କେତେକାଂଶ କ୍ଷୁଦ୍ର ଜଙ୍ଗଲରେ ଆବୃତ ଓ ଅନ୍ୟ ଅଂଶ କୃଷ ଜମିରେ ପରିଣତ ହୋଇଛି । ଏହି ଭୂମିଟି ପୂର୍ବପଶ୍ଚିମଗାମୀ ତିନିଗୋଟି ପ୍ରାଚୀର ଦ୍ୱାରା ଚାରିଭାଗରେ ବିଭକ୍ତ । ଏଥିମଧ୍ୟରୁ ଦକ୍ଷିଣ ଦିଗରେ ଥିବା ଭାଗଟି ଦକ୍ଷିଣପୂର୍ବ ଆଡ଼କୁ କ୍ରମଶଃ ସୂକ୍ଷ୍ମ ହୋଇ ଆସିଛି । ଏହି ଦିଗରେ ଫୁଲଗୁଙ୍ଗୁଡ଼ି ନାମକ ପର୍ବତ ବିଦ୍ୟମାନ । ଲୋକପ୍ରଚଳିତ ନାମ ଫୁଲପାହାଡ଼ି । ଏହାର ଉଚ୍ଚତା ୧୯୩୫ ଫୁଟ । ଏତତ୍ସନ୍ନିହିତ ଭାଗଟିର ଚତୁର୍ଦ୍ଦିଗରେ ମାତ୍ର ୩ ଫୁଟ ବ୍ୟବଧାନରେ ସମାନ୍ତରାଳ ଭାବେ ଅବସ୍ଥିତ ଦୁଇଗୋଟି ପ୍ରାଚୀରର ଚିହ୍ନ ବିଦ୍ୟମାନ । ତାହାର ଉତ୍ତରରେ ସ୍ଥିତ ଅନ୍ୟଭାଗଟି ମଧ୍ୟ ସେହିପରି ଯାମଳ ପ୍ରାଚୀର ଦ୍ୱାରା ପରିବେଷ୍ଟିତ । ଏହି ଉତ୍ତର ସୀମାରେ ଗୋଟିଏ କ୍ଷୁଦ୍ର ନାଳ ପ୍ରବାହିତ ହୋଇ ଶେଷଭାଗଟିକୁ ଏଥିରୁ ବିଚ୍ଛିନ୍ନ କରି ରଖିଛି । ଶେଷ ଭାଗଟିର ଦକ୍ଷିଣ-ପୂର୍ବ କୋଣରେ ପ୍ରାୟ ୬୦ ଫୁଟ ପର୍ଯ୍ୟନ୍ତ ପ୍ରାଚୀରର ଚିହ୍ନ ଦେଖାଯାଏ । ଏହି କୋଣରେ ୩୦' X ୩୦' ପ୍ରମାଣ ଗୋଟିଏ ଅଚ୍ଚୋଚ୍ଚ ସ୍ତୂପ ଅଛି । ଅନ୍ୟ ଅଂଶରେ ପ୍ରାଚୀରର ଚିହ୍ନ ନାହିଁ; କିନ୍ତୁ ଭଙ୍ଗା ଇଟାଖଣ୍ଡ ଓ ଖପରା ପ୍ରଚୁର ପରିମାଣରେ ପଡ଼ିରହିଛି ।

ଉଲ୍ଲେଖଯୋଗ୍ୟ ଯେ ଦକ୍ଷିଣଆଡ଼ୁ ଗଣନା କଲେ ତୃତୀୟ ଭାଗର ଦକ୍ଷିଣ-ପଶ୍ଚିମ କୋଣରେ ମଧ୍ୟ ଗୋଟିଏ ଅନୁଚ୍ଚ ସ୍ତୂପ ଅଛି । (ଏହା ବୋଧିଶ୍ରୀଙ୍କ ଦ୍ୱାରା ନିର୍ମିତ ବିହାରର ଧ୍ୱଂସାବଶେଷ ବୋଲି ପଣ୍ଡିତଜୀଙ୍କ ମତ । କୃଷ୍ଣାନଦୀ ତୀରସ୍ଥ ନାଗାର୍ଜୁନକୋଣ୍ଡା ଶିଳାଲେଖରୁ ଜଣାଯାଏ ଯେ ବୋଧିଶ୍ରୀ ପୁଷ୍ପଗିରିରେ ବିହାରଟିଏ ନିର୍ମାଣ କରିସାରି ନାଗାର୍ଜୁନ କୋଣ୍ଡାରେ ଅନ୍ୟଗୋଟିଏ ବିହାର ନିର୍ମାଣ କରିଥିଲେ ।)

ଉଲ୍ଲିଖିତ ବର୍ଣ୍ଣନାରୁ ପ୍ରତୀତ ହେଉଛି ଯେ ଫୁଲଗୁଙ୍ଗୁଡ଼ି ବା ଫୁଲ ପାହାଡ଼ି ନାମରେ ପ୍ରସିଦ୍ଧ ପର୍ବତର ଉତ୍ତର-ପଶ୍ଚିମରେ ତାଙ୍ଗୁଆପଶିର ନିକଟବର୍ତ୍ତୀ ଚିତ୍ର ଓ (Fresco-Painting) ଅନ୍ୟ ପ୍ରସ୍ତର ଲେଖାମାନ ବିଦ୍ୟମାନ । ଏହାକୁ ପଣ୍ଡିତ ବିନାୟକ ମିଶ୍ର କୌଣସି ବୌଦ୍ଧ ସ୍ତୂପର ଅବଶେଷ ବୋଲି ସ୍ଥିର କରିଛନ୍ତି । ତେଣୁ ଫୁଲଗୁଙ୍ଗୁଡ଼ି ବା ଫୁଲପାହାଡ଼ିକୁ ହୁଏନ୍‌ସାଂ-ବର୍ଣ୍ଣିତ ପୁଷ୍ପଗିରି ବୋଲି ପଣ୍ଡିତ ଆଗ୍ରର୍ଯ୍ୟ ମତବ୍ୟକ୍ତ କରିଛନ୍ତି । ଏଥିପାଇଁ ସେ ହୁଏନ୍‌ସାଂଙ୍କ ପ୍ରଦତ୍ତ ବିବରଣୀର ସମୀକ୍ଷା କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ହୁଏନ୍‌ସାଂଙ୍କ ଅନୁସାରେ—

(୧) ଓଡ୍ର ଦେଶର ଦକ୍ଷିଣ ପଶ୍ଚିମ ଦିଗରେ ପୁଷ୍ପଗିରି ନାମରେ ପର୍ବତଟିଏ ଥିଲା ।

(୨) ସେଠାରେ ଗୋଟିଏ ପ୍ରସ୍ତରର ସଂଘାରାମ ଥିଲା ଏବଂ ତାହା ଦେବତା ବା ଦାନବ ନିର୍ମିତ; ମନୁଷ୍ୟର କୃତି ନୁହେଁ ।

(୩) ପୁଷ୍ପଗିରି ସଂଘାରାମର ଗମ୍ବୁଜ ଉପରିଭାଗରେ ଗୋଟିଏ ପାତ୍ର (Vessel) ଅର୍ଥାତ୍ ଶିଶିର ସଂପ୍ରଦାର୍ଥ ସ୍ଥାପିତ ଆଧାରବିଶେଷ (dew vessel) ଅବସ୍ଥିତ ଥିଲା ।

Digitized by srujanika@gmail.com

ଏହି ବିବରଣୀ ସଙ୍ଗେ ପୁଲଗ୍ରୁଙ୍ଗୁଡ଼ି ବା ଫୁଲପାହାଡ଼ି ନାମରେ ପରିଚିତ ପର୍ବତର ଅବସ୍ଥିତି,, ଆକୃତି ଓ ପ୍ରକୃତିର କି ପ୍ରକାର ସୌସାଦୃଶ୍ୟ ଅଛି, ଅଧୁନା ତାହା ବିଗ୍ରରଣୀୟ ।

ଫୁଲଗ୍ରୁଙ୍ଗୁଡ଼ି ବା ଫୁଲପାହାଡ଼ି ଏହି ନାମ ସଂସ୍କୃତ ପୁଷ୍ପଗିରିର ଓଡ଼ିଆ ନାମ । ଫୁଲଗ୍ରୁଙ୍ଗୁଡ଼ି ବୋଲି ଯେଉଁ ନାମାନ୍ତର ଏହି ପାହାଡ଼ର ଅଛି, ତାହାର ମଧ୍ୟ ପୁଷ୍ପଗିରି ଶବ୍ଦ ସହିତ ଧ୍ୱନିଗତ ଓ ଅର୍ଥଗତ ସାଦୃଶ୍ୟ ସ୍ପଷ୍ଟ । ପୁଣି ହୁଏନ୍‌ସାଂଙ୍କ ପୁଷ୍ପଗିରିର ବର୍ଣ୍ଣନା ସଙ୍ଗେ Vase ବା ଗ୍ରୁଙ୍ଗୁଡ଼ିର ସଂପର୍କ ଆଇପାରେ ।

ହୁଏନ୍‌ସାଂଙ୍କ ବର୍ଣ୍ଣନାନୁସାରେ ଗମ୍ବୁଜର ଉପରିଭାଗରେ ଗୋଟିଏ ପାତ୍ର (ପାତ୍ରାକାର ପ୍ରସ୍ତର) ଥିଲା । ଫୁଲଗ୍ରୁଙ୍ଗୁଡ଼ି ପାହାଡ଼ରେ ଗୋଟିଏ ଗ୍ରୁଙ୍ଗୁଡ଼ି (ପୁଷ୍ପାଧାର) ସଦୃଶ ବିଶାଳ ପଥର ସର୍ବାପେକ୍ଷା ଉଚ୍ଚ ଓ କ୍ରମସୂକ୍ଷ୍ମାୟମାଣ ଅଂଶରେ ଅବସ୍ଥିତ ରହିଛି । ଏହାକୁ ଏଠାଲୋକେ ଗ୍ରୁଙ୍ଗୁଡ଼ି ପଥର ବୋଲି କହିଥାଆନ୍ତି । ଅତଏବ Watterଙ୍କ ଅନୁବାଦରେ ଯେଉଁ Vase ବା dew vessel ଶବ୍ଦ ବ୍ୟବହୃତ ହୋଇଛି, ତାହାର ଏହି ଗ୍ରୁଙ୍ଗୁଡ଼ି ଶବ୍ଦ ସଙ୍ଗେ ତୁଲ୍ୟାର୍ଥକତା ଅଛି । ଏହି ପଥର ତଳେ ଗ୍ରରିଗୋଟି ଦ୍ୱାର-ବିଶିଷ୍ଟ ଗୋଟିଏ ଗୁମ୍ଫା ଅଛି । ପାହାଡ଼ଟିର ଅଧିକାଂଶ ଭାଗ ମୃତ୍ତିକାମୟ । ତେଣୁ ଅଧୁନା ଏହି ଗୁମ୍ଫା, ଗୋଟିଏ ପ୍ରାକୃତିକ ଗହ୍ୱରପରି ପ୍ରତୀତ ହେଉଛି ।

ହୁଏନ୍‌ସାଂ କହିଛନ୍ତି ଯେ ପୁଷ୍ପଗିରି 'ଓଡ୍ର' ଦେଶର ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ । 'ନବଭାରତ'ର ସଂପାଦକ ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି, ହୁଏନ୍‌ସାଂ ଏ ଦେଶର ନାମ ଯାହା ଲେଖିଛନ୍ତି, ତାକୁ ଅନୁବାଦକ କହନ୍ତି 'ଉ ଚ' । ଏହା 'ଉହଳ' ବା 'ଉତ୍କଳ' ହେବା ସଂଭବ । ଏହାର ପରେ ପରେ ଯାଜପୁର ଗୁହେଶ୍ୱରପାଟକର ଭୌମମାନେ ''ଉହଳେଶ୍ୱର'' ଥିଲେ ।

ଓଡ୍ର ଦେଶର ସୀମା ହୁଏନ୍‌ସାଂଙ୍କ ଆଗମନ ବେଳେ (୭ମ ଶତାବ୍ଦୀରେ) କି ପ୍ରକାର ଥିଲା, ତାହା ସ୍ଥିର ସିଦ୍ଧାନ୍ତ ହୋଇନାହିଁ । ତେବେ B.C.Mazumdarଙ୍କ "Orissa in the making" ପୁସ୍ତକରେ କେନ୍ଦୁଝର, ମୟୂରଭଞ୍ଜ ପ୍ରଭୃତି ଗଡ଼ଜାତର ପାର୍ବତୀୟ ଅଞ୍ଚଳ, ଓଡ୍ରଦେଶ ନାମରେ ଅଭିହିତ ହେଉଥିବା ଲେଖାଅଛି । କେନ୍ଦୁଝରର ଆନନ୍ଦପୁର ସବ୍‌ଡିଭିଜନ ଷୋଡ଼ଶ ଶତାବ୍ଦୀରେ କେନ୍ଦୁଝର ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ପ୍ରବାଦ ଅଛି ଯେ, କେନ୍ଦୁଝରର ତତ୍‌କାଳୀନ ରାଜା ଭକ୍ତକବି ଗୋବିନ୍ଦ ଭଞ୍ଜ ପୁରୁଷୋତ୍ତମ ଦେବଙ୍କୁ କାଞ୍ଚି ଯୁଦ୍ଧରେ ସହାୟତା କରିଥିବାରୁ ପ୍ରୋକ୍ତ ରାଜ୍ୟାଂଶ ଲାଭ କରିଥିଲେ । ଅତଏବ ଷୋଡ଼ଶ ଶତାବ୍ଦୀ ପୂର୍ବରୁ କେନ୍ଦୁଝରର ପାର୍ବତ୍ୟ ଅଞ୍ଚଳ ଅର୍ଥାତ୍ ସଦର ଓ ଚମ୍ପୁଆ ସବ୍‌ଡିଭିଜନ ଗୋଟିଏ ପ୍ରଦେଶର ଓ ସମତଳ ଅଞ୍ଚଳ ଅନ୍ୟ ଏକ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା ବୋଲି ଜଣାଯାଇଛି ।

[ ଆନନ୍ଦପୁର ସହରରୁ ଅଳ୍ପଦୂରରେ ଗୋଟିଏ ପରିଖା ବେଷ୍ଟିତ ଉଚ୍ଚଭୂମି ଅଛି । ଏହା ପୂର୍ବେ ବୌଦ୍ଧପୀଠ ଥିଲା । ଏଠାରୁ ଅନେକ ବୌଦ୍ଧମୂର୍ତ୍ତି ସ୍ଥାନାନ୍ତରିତ ହୋଇଛନ୍ତି ।

Digitized by srujanika@gmail.com

ଏହାକୁ ଲୋକେ ଲଲାଟକେଶରୀ ଗଡ଼ ବୋଲି କହନ୍ତି । ଲଲାଟକେଶରୀ ବା ଲଲିତେନ୍ଦ୍ର କେଶରୀ ସପ୍ତମ ଶତାବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରୁଥିଲେ । ଆନନ୍ଦପୁର ସେତେବେଳେ ତାଙ୍କ ରାଜ୍ୟ ଆନ୍ତର୍ଭୁକ୍ତ ଥିଲା । କେହି କେହି ୧୦ମ ଶତାବ୍ଦୀରେ ଲଲାଟେନ୍ଦୁଙ୍କ ରାଜତ୍ୱକାଳ ବୋଲି କହିଛନ୍ତି ।]

କରବଂଶୀୟ ପ୍ରଥମ ଶୁଭାକର ଦେବଙ୍କ ତାମ୍ରଶାସନରୁ ଜଣାଯାଏ— ବାଲେଶ୍ୱରର କୁପାରି ଗ୍ରାମ କୋମ୍ପାରକ ନାମରେ ପରିଚିତ ଥାଇ ଉତ୍ତର ତୋଷଳ ଅନ୍ତର୍ଭୁକ୍ତ ଥିଲା । ଏଠାରେ ଅନେକ ବୌଦ୍ଧ କୀର୍ତ୍ତି ରହିଛି । ଏହା ଆନନ୍ଦପୁର ସବ୍‌ଡିଭିଜନ୍‌ର ନିକଟବର୍ତ୍ତୀ । ଅତଏବ ହୁଏନ୍‌ସାଂଙ୍କ ଆଗମନବେଳେ କେନ୍ଦୁଝରର ସଦର ସବ୍‌ଡ଼ିଭିଜନ୍ ଓଡ୍ର ଦେଶର ଦକ୍ଷିଣସୀମା ରୂପେ ଅବସ୍ଥିତ ଥିଲା । ପ୍ରାଚୀନ କେନ୍ଦୁଝର (ସଦର ଓ ଚମ୍ପୁଆ ସବ୍‌ଡିଭିଜନ) ଯେ ଓଡ୍ର ଦେଶର ଅନ୍ତର୍ଭୁକ୍ତ ଥିଲା, ଏହା ଯଯାତିଙ୍କ ତୋଷଳରୁ ପ୍ରଦତ୍ତ ଦାନପାତ୍ରରୁ ଜଣାଯାଏ । ତହିଁରେ ସେ ମଧ୍ୟ ଦେଶରୁ ଆସି ଓଡ୍ରଦେଶସ୍ଥ ଶିଳାଭଞ୍ଜପାଟି ନିବାସୀ ଶଙ୍ଖପାଣି ନାମକ ବ୍ରାହ୍ମଣକୁ ଦାନ କରିଥିବା ଉଲ୍ଲିଖିତ । ଭଞ୍ଜବଂଶୀୟ ତାମ୍ରଶାସନମାନଙ୍କରେ ଶିଳାଭଞ୍ଜ ନାମକ ଜଣେ ରାଜାଙ୍କର ନାମ ଦେଖାଯାଏ । କେନ୍ଦୁଝରରେ ସନ୍ତେଇ ଭଞ୍ଜ ନାମରେ ଦୁଇଟି ସ୍ଥାନ ଅଛି । ଫୁଲଗ୍ୱଙ୍ଗୁଡ଼ି ପାହାଡ଼ ଥିବା ସ୍ଥାନର ନାମ ସୀତାଭଞ୍ଜ । ଏହି ନାମ ଶିଳା-ଭଞ୍ଜ ସହିତ ସୌସାଦୃଶ ଥିବାରୁ ଏହି ସ୍ଥାନ ପୂର୍ବେ ଶିଳାଭଞ୍ଜପାଟୀ ନାମରେ ଅଭିହିତ ହେଉଥିବା ଅନୁମିତ ହୁଏ । କେନ୍ଦୁଝରରେ ଶିଳାଭଞ୍ଜପାଟୀ ଥିଲା ଓ କେନ୍ଦୁଝର ଓଡ୍ରଦେଶର ଅନ୍ତର୍ଭୁକ୍ତ ଥିଲା । ତେଣୁ ଫୁଲ-ପାହାଡ଼ି ଓଡ୍ରଦେଶରେ ଥିଲା । ହୁଏନ୍‌ସାଂ ବର୍ଣ୍ଣିତ ପୁଷ୍ପଗିରି ମଧ୍ୟ ଓଡ୍ରଦେଶରେ ଥିଲା । ପୁଷ୍ପଗିରି ନାମିତ କୌଣସି ପର୍ବତ ଅନ୍ୟତ୍ର ନ ଥିବାରୁ ଗୁମ୍ଫାମଣ୍ଡିତ ଏହି ଫୁଲଗ୍ୱଙ୍ଗୁଡ଼ିକୁ ପୁଷ୍ପଗିରି କହିବାରେ ବାଧା ନାହିଁ ।

ହୁଏନ୍‌ସାଂ କହିଛନ୍ତି, ପୁଷ୍ପଗିରିରେ ଦେବ ବା ଦାନବ ନିର୍ମିତ ପ୍ରସ୍ତରର ସଂଘାରାମ ଥିଲା । ସପ୍ତମ ଶତାବ୍ଦୀରେ ଦେବ ବା ଦାନବଙ୍କ ଦ୍ୱାରା ନିର୍ମିତ ବୋଲି ଯାହାକୁ କୁହାଯାଉଥିଲା, ତାହା ସେ କାଳରେ ଅତି ପୁରାତନ ବୋଲି ଗୃହୀତ ହୋଇଥିବା ନିଶ୍ଚିତ । କାରଣ ଏପରି କାର୍ଯ୍ୟ ମନୁଷ୍ୟର ସାମର୍ଥ୍ୟ ବାହାରେ । ଫୁଲପାହାଡ଼ି ଅଞ୍ଚଳରେ ସୁବିଶାଳ ଗଣ୍ଡଶୈଳମାନଙ୍କ ଉପରେ ତାଦୃଶ ଗଣ୍ଡଶୈଳମାନ ଯେପରି ସଜ୍ଜିତ, ଦେଖିଲେ ମନେହୁଏ ସତେ ଯେପରି ଏଗୁଡ଼ିକ କେହି ସଜାଡ଼ି ଗୃହ ରଚନା କରିଛି । ସେହି ପଥରତଳେ ଶତ ଶତ ଲୋକ ସ୍ୱଚ୍ଛନ୍ଦରେ ବସି ଉଠିପାରିବେ, ଏହିପରି ବିଶାଳ ଗଣ୍ଡଶୈଳମାନଙ୍କରେ ସୃଷ୍ଟ ଗୁମ୍ଫା ତଳେ ନାଗାର୍ଜୁନ ଆଦି ଯୋଗୀମାନେ ଯୋଗସାଧନା କରୁଥିଲେ । ଛଅ ସାତଶ' ବର୍ଷ ପରେ ସେ ସବୁକୁ ଦାନବ ନିର୍ମିତ କହିବାରେ ବିଚିତ୍ରତା କିଛି ନାହିଁ । ଏହି କାରଣରୁ ଦାନବ ରାବଣ ନାମରେ ନାମିତ 'ରାବଣ ଛାୟା' ଏହାର ସୁସ୍ପଷ୍ଟ ପ୍ରମାଣ ।

Digitized by srujanika@gmail.com

ପଣ୍ଡିତ କୁମୁଦାକର ମତି ପ୍ରଣୀତ ତ୍ରିସମୟରାଜ ସାଧନ ବୌଦ୍ଧ ତନ୍ତ୍ର ଗ୍ରନ୍ଥରେ ପର୍ବତ, ଅରଣ୍ୟ, ଗୁହା (ପ୍ରାକୃତିକ ଗହ୍ୱର) ଗୃହ, ଆରାମ, ପ୍ରଭୃତିକୁ ଯୋଗସାଧନ ପକ୍ଷେ ପ୍ରଶସ୍ତ ଲେଖାଯାଇଛି । ବୋଧହୁଏ, ହୁଏନ୍‌ସାଂଙ୍କ ଆଗମନ ପୂର୍ବରୁ ବୌଦ୍ଧଯୋଗୀମାନେ ଏହି ଗୁହାମାନଙ୍କରେ ଯୋଗସାଧନ ଅନୁକୂଳ ଜାଣି ବାସକରୁଥିଲେ । ତେଣୁ ପ୍ରସ୍ତରସ୍ତୂପ ଅର୍ଥରେ କାରୁକାର୍ଯ୍ୟମଣ୍ଡିତ ବୁଝିବା ଅସମୀଚୀନ ।



ରାବଣଛାୟା ଗଣ୍ଡଶୈଳ ଓ ତହିଁରେ ଥିବା ବ୍ରାହ୍ମୀଲିପି

ଫୁଲପାହାଡ଼ିର ଉତ୍ତରରେ ତାଙ୍କୁଆପଣି ଗ୍ରାମଠାରୁ ଅଳ୍ପ ପୂର୍ବରେ ରହିଛି ଏକ ବିଶାଳ ଗଣ୍ଡଶୈଳ ରାବଣଛାୟା । ପ୍ରାୟ ୧୫ଫୁଟ ଉଚ୍ଚ ଏକ ପଥର ଉପରେ ଏକ ବିଶାଳ ପଥର ରକ୍ଷିତ । ସେହି ପଥରଟି ଆଧାରରୂପେ ଅବସ୍ଥିତ ପଥରର ଉର୍ଦ୍ଧ୍ୱତନ ସମତଳ ଅଂଶକୁ ନିଜର ଅର୍ଦ୍ଧାଂଶଦ୍ୱାରା ସଂପୂର୍ଣ୍ଣରୂପେ ଆବୃତ କରିଅଛି । ଏହାର ଅପର ଅର୍ଦ୍ଧାଂଶ ପଦାକୁ ବାହାରିପଡ଼ିଛି । ବହିର୍ଗତ ଅଂଶର ତଳଭାଗ ସମତଳ ଓ ମସୃଣ । ଏହା ଲମ୍ବରେ ପ୍ରାୟ ୧୨ଫୁଟ ଓ ଚଉଡ଼ାରେ ଛଅ ବା ସାତ ଫୁଟ ହେବ । ଏହି ଅଂଶରେ ଗୋଟିଏ କ୍ଷୁଦ୍ରଯାତ୍ରାର ଚିତ୍ର ଅଙ୍କିତ ଓ ତା'ତଳେ ଧାଡ଼ିଏ ବ୍ରାହ୍ମୀ ଲିପିରେ ଲେଖା । ଏହା ନିକଟରେ ଇଟା ସ୍ତୂପଦ୍ୱାରା ପରିବେଷ୍ଟିତ ମୁନି ଗୁମ୍ଫା ନାମକ ଆଉ ଗୋଟିଏ ଗୁମ୍ଫାଯୁକ୍ତ ପର୍ବତ ଅଛି । ଏହାଠାରୁ ପଶ୍ଚିମ ଦିଗରେ ଠାକୁରାଣୀଶାଳ ନାମରେ ଗଣ୍ଡଶୈଳ ସମଷ୍ଟିରେ ରଚିତ ଗୋଟିଏ ଦେବାୟତନ ରହିଛି । ଏହା ହୁଏନ୍‌ସାଂଙ୍କ ବର୍ଣ୍ଣିତ ଦ୍ୱିତୀୟ ସ୍ତୂପ । ଏଠାରେ ଆଶ୍ଚର୍ଯ୍ୟଜନକ କୁହୁକମୟ ଘଟନା ସଂଘଟିତ ହେଉଥିଲା ବୋଲି ସେ ଲେଖିଛନ୍ତି ।

ଏହି ମୁନିଗୁମ୍ଫା ନିକଟରେ ଏକ ଚତୁର୍ମୁଖ ଶିବଲିଙ୍ଗ (ସ୍ଥାନୀୟ ଭାଷାରେ ସ୍ତୂପଲେଙ୍ଗୀ) ଥିଲେ ବି ଏହି ସ୍ଥାନ ଯେ ଏକ ବୌଦ୍ଧପୀଠ, ତାହା ପ୍ରମାଣର ଅନ୍ତରାୟ ନୁହେଁ । କାରଣ ଏ ଦେଶରେ ବିଭିନ୍ନ ଧର୍ମାବଲମ୍ବୀମାନେ ପରସ୍ପର ବନ୍ଧୁ ଭାବରେ ବାସ କରୁଥିବା କଥା ହୁଏନ୍‌ସାଂ ମଧ୍ୟ କହିଛନ୍ତି । ବଙ୍ଗର ରାଜା ଧର୍ମପାଳ (୮୦୦ ଖ୍ରୀ:ଅ)ଙ୍କ ପାହାଡ଼ିପୁରରୁ ପ୍ରାପ୍ତ ଶିଳାଲେଖରୁ ଜଣାଯାଏ, ଧର୍ମରାଜ (ବୁଦ୍ଧଦେବ)ଙ୍କ ଆୟତନର ଏକ ଚତୁର୍ମୁଖ ଲିଙ୍ଗ ସ୍ଥାପିତ ହୋଇଥିଲା । ଏହି ଲେଖରେ ସୂର୍ଯ୍ୟ, ଶିବ ଓ ବିଷ୍ଣୁ ମୂର୍ତ୍ତି ମଧ୍ୟ ଅଙ୍କିତ ।

Digitized by srujanika@gmail.com



ଫୁଲପାହାଡ଼ି ଅଞ୍ଚଳରୁ ମିଳିଥିବା ପ୍ରାଚୀନ ମୁଦ୍ରା     ଫୁଲପାହାଡ଼ି ଅଞ୍ଚଳରୁ ମିଳିଥିବା ଅନ୍ୟାନ୍ୟ ପ୍ରାଚୀନ ଜିନିଷ

ଏହି ସ୍ଥାନର ପ୍ରାଚୀନତା ୧୯୩୮ ମସିହାରେ ଏଠାରୁ ପ୍ରାପ୍ତ ୩୬ଟି କୁଶାଣ ତାମ୍ର ମୁଦ୍ରା ଆବିଷ୍କାରରୁ ପ୍ରମାଣିତ ହୁଏ । ନାନା ଆକୃତି ଓ ବର୍ଣ୍ଣର ଅସଂଖ୍ୟ ପଥରମାଳି ସ୍ଥାନୀୟ ଲୋକେ ଏଠାରୁ ସଂଗ୍ରହ କରି ବ୍ୟବହାର କରୁଛନ୍ତି । ପଣ୍ଡିତ ଆଗ୍ଭର୍ଯ୍ୟ ସ୍ୱୟଂ ଏକ ବୃହଦାକାର ତାମ୍ର ମୁଦ୍ରା (ହୁବିଷ୍କଙ୍କର ହୋଇପାରେ) ୧୯୪୬ ମେ ମାସରେ ଏଠାରୁ ସଂଗ୍ରହ କରିଥିଲେ । କୁଶାଣବଂଶୀୟ ପ୍ରଧାନ ବୌଦ୍ଧସମ୍ରାଟମାନଙ୍କ ମୁଦ୍ରା ମିଳୁଥିବାରୁ ଏହା ଯେ ଏକ ବୌଦ୍ଧପୀଠ ଥିଲା, ଏ ଧାରଣା ବଳବତ୍ତର ହେଉଛି । ଏଠାରେ ଗୋଟିଏ ପଥର ନିର୍ମିତ ଭଙ୍ଗା ସିଂହ ମୂର୍ତ୍ତି ସୀତା ନଦୀର ଦକ୍ଷିଣ ତୀରରେ ଗ୍ରାମଦେବତା ରୂପେ ପୂଜା ପାଉଛି । ଏହା ଠିଆ ଭାବରେ ଦୁଇଫାଳ ହୋଇଛି । ଏହାର ଗଠନ ସାରନାଥର ତୋରଣସ୍ଥିତ ସିଂହର ଗଠନ ପରି ।

ସ୍ଥାନ ଓ ଲିପିର ପ୍ରାଚୀନତା, ନାମର ସାମ୍ୟ, ପ୍ରାଚୀନ ମୁଦ୍ରା, ଚତୁର୍ଦ୍ଦିଗରେ ଅସଂଖ୍ୟ ଇଷ୍ଟକ ଓ ପ୍ରସ୍ତର ନିର୍ମିତ ସ୍ତୂପର ଧ୍ୱଂସାବଶେଷ ପ୍ରଭୃତିରୁ ଏହା ଯେ ଦିନେ ପ୍ରାଚୀନ ଭାରତରେ ବୌଦ୍ଧ ଯୁଗରେ ଏକ ପ୍ରସିଦ୍ଧ ସ୍ଥାନ ଥିଲା, ଏହା ସ୍ପଷ୍ଟ ପ୍ରମାଣିତ ହୁଏ ।

ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ପଞ୍ଚମ-ଷଷ୍ଠ ଶତାବ୍ଦୀ ବେଳକୁ ସଂଘାରାମ ଓ ବିହାରମାନ ପ୍ରତିଷ୍ଠିତ ହୋଇଥିବା ଆବିଷ୍କୃତ ଶିଳାଲେଖମାନଙ୍କରୁ ଜଣାଯାଏ । କଟକ ଜିଲ୍ଲାର ଲଳିତଗିରିଠାରେ ଚନ୍ଦ୍ରାଦିତ୍ୟ ବିହାର, (୧ମ ବା ୨ୟ ଶତାବ୍ଦୀ ହୋଇପାରେ)

Digitized by srujanika@gmail.com

ଯାଜପୁର ଜିଲ୍ଲା ଉଦୟଗିରିଠାରେ ମାଧବ ବିହାର ଓ ରତ୍ନଗିରି ବିହାର ଆବିଷ୍କୃତ ହେଲେହେଁ ପୁଷ୍ପଗିରି ବିହାରର ନାମୋଲ୍ଲେଖ ନାହିଁ । ପୁଷ୍ପଗିରି ବିହାରର ସ୍ଥିତି ଘେନି ବହୁ ଅନୁସନ୍ଧାନ ଚାଲିଥିଲେ ହେଁ ମଗଧ (ବିହାର)ରୁ ଓଡ଼ିଶାକୁ ଆସିବା ପଥ କେନ୍ଦୁଝରରେ ଥିବା ଫୁଲଚାଙ୍ଗୁଡ଼ି ବା ଫୁଲପାହାଡ଼ି (ଶୁଦ୍ଧ ଭାଷାରେ ପୁଷ୍ପଗିରି) ନାମକୁ ଆଧୁନିକ କାଳର ଐତିହାସିକମାନେ ବିଚାର ପରିସରକୁ ଆଣୁ ନଥିବା ଘୋର ପରିତାପର ବିଷୟ ।

. ଭଙ୍ଗାପ୍ରସ୍ତରର ସ୍ତୂପ ମଧ୍ୟରେ କେତେକ ବ୍ରାହ୍ମୀ ଶିଳାଲେଖର ଖଣ୍ଡିତାଂଶ ୧୯୮୯ ମସିହାରେ ଏହି ଲେଖକ ଦେଖିଥିଲା । ଅଭିଲେଖବିତ୍‌ମାନେ ସେଠାରେ ଅବସ୍ଥାନପୂର୍ବକ ସେହି ଖଣ୍ଡିତାଂଶମାନ ଏକତ୍ର କରି ପାଠ କରି ପାରିଲେ ଏହି ସ୍ଥାନର ମାହାତ୍ମ୍ୟ ଓ ବୈଶିଷ୍ଟ୍ୟ ଜ୍ଞାତ ହେବ ।

ଆଉ ଗୋଟିଏ କଥା ଏଠାରେ ଆଲୋଚ୍ୟ । କେନ୍ଦୁଝରରେ ରାଜା ଥିଲେ ସନ୍ତେଇ ଭଞ୍ଜ ଓ ତାହାଙ୍କ ନାମରେ ଦୁଇଗୋଟି ସ୍ଥାନ ରହିଛି । ସମ୍ବଲର ରାଜା ଇନ୍ଦ୍ରଭୁତିଙ୍କ ପୁତ୍ର ପଦ୍ମସମ୍ଭବ ସନ୍ତେଇ ଭଞ୍ଜଙ୍କ କନ୍ୟାକୁ ବିବାହ କରିଥିଲେ । ସନ୍ତେଇ ଭଞ୍ଜ ବୌଦ୍ଧଧର୍ମ ଗ୍ରହଣ କରି ଶାନ୍ତିପାଦ ନାମରେ ଖ୍ୟାତିଲାଭ କରିଥିଲେ ଓ କେତେକ ଦୋହା ରଚନା କରିଥିଲେ । ସେହିପରି ଅନ୍ୟ ଏକ ବୌଦ୍ଧ ସିଦ୍ଧ ଢେଙ୍କିପାଦଙ୍କ ନାମରେ ଢେଙ୍କିକୋଟ ଏହି ସ୍ଥାନ ନିକଟରେ ରହିଛି ।

ବୌଦ୍ଧଧର୍ମରେ ମନୁଷ୍ୟକୁ ଦୁଃଖଶୋକରୁ ରକ୍ଷା କରିବା ଲାଗି ଏବଂ ବୋଧିଚିତ୍ତ ପାଇବାଲାଗି ଧାରଣୀର ଅବତାରଣା କରାଯାଏ । ମହାଯାନ ପନ୍ଥାରେ ଧାରଣୀ ତିନିପ୍ରକାର । ୧-ସୂତ୍ର ଧାରଣୀ ୨– ଉଷ୍ଣୀଶ ଧାରଣୀ ଓ ୩-- ହୃଦୟ ଧାରଣୀ ।

ସହଜଯାନ ହେଲା ପ୍ରକୃତି ଓ ଉପାୟ (ପୁରୁଷ)ର ମିଳନରୁ ଜାତ, ମହାସୁଖ । ମହାସୁଖର ଉତରଣରେ ମିଳେ ବୋଧିଚିତ୍ତି । ବୋଧିଚିତ୍ତିରୁ ଆସେ ବୋଧିସତ୍ତ୍ୱ ଭାବ । ଏହି ବୋଧିସତ୍ତ୍ୱଭାବର ଧାରଣୀ ଏବଂ ମହାଯାନ ପନ୍ଥାର ସୂତ୍ର ଓ ଉଷ୍ଣୀଶ ଧାରଣୀ ଆବିଷ୍କୃତ ହୋଇଛି ରତ୍ନଗିରିରେ ।

କେନ୍ଦୁଝର ଜିଲ୍ଲା ରାମଚନ୍ଦ୍ରପୁର ଥାନାର ଅନ୍ଧାରୁଆ ଗ୍ରାମରେ ନୀଳସରସ୍ୱତୀ ମୂର୍ତ୍ତିଙ୍କ ଆଭା ଉପରେ ଧାରଣୀ ଲିଖିତ ଥିବା ସାଂସଦ ଅନାଦି ସାହୁ ଦେଖିଥିବା ଉଲ୍ଲେଖ କରିଛନ୍ତି । କେନ୍ଦୁଝର ଜିଲ୍ଲା ଘସିପୁରା ଥାନାନ୍ତର୍ଗତ ବୀରଗୋବିନ୍ଦପୁରେ ସ୍ଥାପିତ ପଦ୍ମପାଣି ଅବଲୋକିତେଶ୍ୱର ମୂର୍ତ୍ତିଙ୍କ ମୁଣ୍ଡ ଦୁଇପାଖରେ ମଧ୍ୟ ଧାରଣୀ ଲେଖା ରହିଛି ।

କେନ୍ଦୁଝର ଜିଲ୍ଲାରୁ ପ୍ରାପ୍ତ ଏହି ଧାରଣୀଦ୍ୱୟ ଦଶମ ଶତାବ୍ଦୀରେ ଲିଖିତ ଅନୁଲୋମ ସୂତ୍ରର ବୋଲି ଏହାର ପାଠୋଦ୍ଧାରକାରିଣୀ ରାଜ୍ୟ ସଂଗ୍ରହାଳୟର ଅଭିଲେଖବିତ୍ ଡଃ ସ୍ନିଗ୍ଧା ତ୍ରିପାଠୀ ମତ ବ୍ୟକ୍ତ କରିଛନ୍ତି ।

Digitized by srujanika@gmail.com

ଫୁଲପାହାଡ଼ି ଅଞ୍ଚଳ ସଂପର୍କରେ ବିଶେଷ ଗବେଷଣା ହୋଇନାହିଁ । ଘଷିପୁରା ଓ ରାମଚନ୍ଦ୍ରପୁର ତାଙ୍ଗୁଆପଣି ଗ୍ରାମ ଅତିକ୍ରମ କରିବା ପରେ ପଡ଼େ । ଏହି ସ୍ଥାନଗୁଡ଼ିକ ଦଶମ ଶତାବ୍ଦୀବେଳକୁ ଖ୍ୟାତିଲାଭ କରିଥିବା ଲିପିତତ୍ତ୍ୱରୁ ଜଣାପଡ଼େ । ତାଙ୍ଗୁଆପଣି ଗ୍ରାମର ପ୍ରତ୍ନତାତ୍ତ୍ୱିକ ସଂପଦରୁ ଏହାର ପ୍ରାଚୀନତା ଓ ହୁଏନ୍‌ସାଙ୍ଗଙ୍କ କାଳରେ ଏହାର ବିଦ୍ୟମାନତା ଅଧିକ ଗବେଷଣା ଫଳରେ ପ୍ରମାଣିତ ହୋଇପାରିବ । ତେଣୁ ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବରଙ୍କ ଗବେଷଣାଲବ୍ଧ ଜ୍ଞାନର ଉପଯୋଗ କରାଗଲେ ଏହି ସ୍ଥାନର ମହତ୍ତ୍ୱ ହୃଦୟଙ୍ଗମ କରିହେବ । ଏ ସ୍ଥାନ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ବୋଲି ଐତିହାସିକମାନଙ୍କ ହୃଦ୍‌ବୋଧ ନ ହେଲେ ଅନ୍ୟ କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ବିହାରର ତ ସନ୍ଧାନ ମିଳିବ ! ଏଣୁ ଏ ସଂପର୍କରେ ଉଦାସୀନ ନ ରହି ବିଜ୍ଞ ପ୍ରତ୍ନତତ୍ତ୍ୱବିଦ୍ ତଥା ଐତିହାସିକଗଣ ଏ ଅଞ୍ଚଳରେ ଭୂ ଖୋଦନ କରି ଏ ସଂପର୍କରେ ଅଧିକ ଆଲୋକପାତ କରନ୍ତୁ ।

— ୦ —

Digitized by srujanika@gmail.com

# ଭଞ୍ଜ ମହୋଦୟମ୍

ନୀଳକଣ୍ଠ କବିଙ୍କ କୃତ 'ଭଞ୍ଜ ମହୋଦୟମ୍' ପଣ୍ଡିତ ବାନାମ୍ବରଙ୍କ ଦ୍ୱାରା ୧୯୪୬ରେ ସମ୍ପାଦିତ ହୋଇ ପ୍ରକାଶ ପାଇଥିଲା । ଏହାର ଉପକ୍ରମଣିକାରେ କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପଣ୍ଡିତ ବିନାୟକ ମିଶ୍ର ଉଲ୍ଲେଖ କରିଛନ୍ତି, କେନ୍ଦୁଝର ରାଜବଂଶର ତମ୍ବପଟାରେ ମିଳୁଥିବା ରାଜାମାନଙ୍କର ନାମ ଏ ପୁସ୍ତକରେ ନାହିଁ । କିନ୍ତୁ ଏମାନେ ଯେ ଏକ ମୟୂରଭଞ୍ଜରେ ରାଜତ୍ୱ କରୁଥିବା ମୂଳ ଭଞ୍ଜମାନଙ୍କର ଶାଖା, ସେ ସଂପର୍କରେ ମଧ୍ୟ ଏଥିରେ କିଛି ଉଲ୍ଲେଖ ନାହିଁ । ଏହି ଭଞ୍ଜମାନଙ୍କର ମୌର୍ଯ୍ୟବଂଶ ସହ ମୌଳିକ ସଂପର୍କ ତାଙ୍କୁ ଆପଣି ଭିତ୍ତିଚିତ୍ର ଓ ଅଭିଲେଖ ସମ୍ବନ୍ଧୀୟ ଭଞ୍ଜରାଜାମାନଙ୍କ ସଂପର୍କରେ କିଛି ସମ୍ବାଦ ମିଳୁନାହିଁ ।

କବି ନୀଳକଣ୍ଠଙ୍କ ସମୟ ୧୮ଶ ଶତାବ୍ଦୀର ଶେଷ ଚଉଠ ଓ ୧୯ଶ ଶତାବ୍ଦୀର ପ୍ରଥମ ଚଉଠ । ଭଞ୍ଜବଂଶର ପ୍ରାଚୀନ ଇତିହାସ ବର୍ଣ୍ଣନା ପାଇଁ କବି ଜନଶ୍ରୁତି ଉପରେ ନିର୍ଭର କରିଛନ୍ତି । ଭଞ୍ଜବଂଶର ପ୍ରତିଷ୍ଠାତା ଜୟସିଂହ, ଯେ କି ତାଙ୍କର ଦୁଇପୁତ୍ର ଆଦିଭଞ୍ଜ ଓ ଜ୍ୟୋତିଭଞ୍ଜଙ୍କ ମଧ୍ୟରେ ରାଜ୍ୟଟି ବଣ୍ଟନ କରିଥିଲେ, ସେ ବିଷୟରେ ଏ ଗ୍ରନ୍ଥ ନୀରବ । ତେବେ ଏଥିରେ ଉଲ୍ଲିଖିତ ଅନେକ ଘଟନାର ଐତିହାସିକ ଦୃଷ୍ଟିରୁ ଗୁରୁତ୍ୱ ରହିଛି ।

ଲେଖକଙ୍କ ବର୍ଣ୍ଣନା ବିଶେଷଭାବେ ବଳଭଦ୍ର ଭଞ୍ଜ (୧୭୬୪-୧୭୯୨ ଖ୍ରୀଷ୍ଟାବ୍ଦ) ଏବଂ ତାଙ୍କ ଦାୟାଦ ଜନାର୍ଦ୍ଦନ ଭଞ୍ଜ (୧୭୯୨-୧୮୩୧ ଖ୍ରୀଷ୍ଟାବ୍ଦ)ଙ୍କ ରାଜତ୍ୱ ମଧ୍ୟରେ ପର୍ଯ୍ୟବସିତ । ଏଥିରେ ବିବୃତ ହୋଇଥିବା ଓଡ଼ିଶାର ମରହଟ୍ଟା ସୁବେଦାର ରାଜାରାମ ପଣ୍ଡିତଙ୍କୁ (୧୭୭୮-୮୨) ପରାସ୍ତ କରିବା, ଏବଂ ବାମଣ୍ଡାଧିପତି ପ୍ରତାପରୁଦ୍ରଦେବ (୧୭୪୫-୭୯)ଙ୍କ ସହ ଯୁଦ୍ଧ ଉଲ୍ଲେଖଯୋଗ୍ୟ । ରାଜା ବଳଭଦ୍ର ଭଞ୍ଜଙ୍କର ବାମଣ୍ଡାରାଜାଙ୍କ ସହ ଯୁଦ୍ଧ ପ୍ରସଙ୍ଗରେ କେଉଁଝରର ସେନାବାହିନୀର ବିବରଣୀ ମିଳିଥାଏ ।

ଏହି ଗ୍ରନ୍ଥ ଅନୁସାରେ ସୁଢଳଦେବଙ୍କ ସହ ଯୁଦ୍ଧକାଳରେ ବଳଭଦ୍ର ଯେଉଁ ରାଜାମାନଙ୍କଠାରୁ ସେନା ସାହାଯ୍ୟ ପାଇଥିଲେ, ସେମାନେ ହେଲେ ୧-ସୁକିନ୍ଦା, ୨-ପଶ୍ଚିମକୋଟ, ୩- ଅମରକୋଟ, ୪- ଢେଙ୍କା, ୫-କଣ୍ଟାଝରୀ, ୬-ପାଲଲହଡ଼ା, ୭-ଦାସପୁର ୮-ବାମନଘାଟି । ଷ୍ଟାର୍ଲିଂଙ୍କ ଓଡ଼ିଶା ବିବରଣୀରୁ ଜଣାଯାଏ— ଏହି ତାଲିକାର ପ୍ରଥମ ଛଅଜଣ ୧୫୯୨ ଖ୍ରୀଷ୍ଟାବ୍ଦ ବେଳକୁ କେନ୍ଦୁଝର ରାଜାଙ୍କ ଅଧୀନରେ ଥିଲେ । ପ୍ରାକ୍ ବ୍ରିଟିଶ କାଳରେ ପାଲଲହଡ଼ା କେନ୍ଦୁଝର ଅଧୀନରେ ଥିଲା । ମୟୂରଭଞ୍ଜର ପଶ୍ଚିମ ପାର୍ଶ୍ୱରେ ଥିବା ଦାସପୁର

Digitized by srujanika@gmail.com

ଓ ବାମନଘାଟିର ରାଜାମାନେ ମୟୂରଭଞ୍ଜ ରାଜା ଦାମୋଦର ଭଞ୍ଜଙ୍କୁ ବଳଭଦ୍ରଙ୍କ ଅନୁରୋଧ କ୍ରମେ ସେନା ସାହାଯ୍ୟ କରିଥିଲେ ।

କବି ନୀଳକଣ୍ଠ ଏ ଗ୍ରନ୍ଥରେ କେଉଁଝରର ପାହାଡ଼, ପର୍ବତ, ନଦୀ, ମନ୍ଦିର, ଆଦିବାସୀ ଜୁଆଙ୍ଗଙ୍କ ସଂପର୍କରେ ବର୍ଣ୍ଣନା କରିଛନ୍ତି । ଜୁଆଙ୍ଗଙ୍କ ବିଷୟ ସାହିତ୍ୟରେ ସ୍ଥାନ ପାଇବାରେ ଏହା ପ୍ରଥମ ଗ୍ରନ୍ଥ । ନଦୀ ଦେବୀ ବୈତରଣୀଙ୍କ ଜନ୍ମବୃତ୍ତାନ୍ତ ବିରଜା ମାହାତ୍ମ୍ୟରୁ ଗୃହୀତ ହୋଇଥିବା ବୋଧହୁଏ ।

ମୁଖବନ୍ଧରେ ପଣ୍ଡିତ ବାନାମ୍ବର ଦର୍ଶାଇଛନ୍ତି— ହଣ୍ଟରଙ୍କ ତାଲିକାରେ ଏ ଗ୍ରନ୍ଥ ସ୍ଥାନ ପାଇଥିଲେ ହେଁ କବିଙ୍କ ବିଷୟରେ କୌଣସି ଉଲ୍ଲେଖ ନ ଥିଲା । ସେ ରାଣୀ ପ୍ରଭାସ ମଞ୍ଜରୀ ଦେବୀ ସ୍ମାରକୀ ଗ୍ରନ୍ଥାଗାରରୁ ଖଣ୍ଡିଏ ପୋଥି ପାଇ ବହୁ ଆୟାସ ସ୍ୱୀକାର କରି ଏହାର ସଂପାଦନା କରିବାକୁ କ୍ଷମ ହୋଇଛନ୍ତି ।

କବି ନୀଳକଣ୍ଠ— କେଉଁଝର ଗଡ଼ର ନରସିଂହପୁର ଶାସନ ନିବାସୀ ବତ୍ସସ ଗୋତ୍ରୀୟ ଦିବ୍ୟସିଂହଙ୍କ ପୁତ୍ର ଥିଲେ । ମାତାଙ୍କ ନାମ ସୁବର୍ଣ୍ଣ ଦେବୀ । କବି ଦୁର୍ଗାଙ୍କର ଉପାସକ ଥିଲେ । ଏତିକି ଛଡ଼ା ଆଉ ବିଶେଷ ବିବରଣୀ ମିଳେ ନାହିଁ । ଦ୍ୱିବେଦୀ ସଂଜ୍ଞକ ବତ୍ସସ ଗୋତ୍ରୀୟ ଏକ ପରିବାର ନରସିଂହପୁରରେ ଥିବା ଦେଖି ପଣ୍ଡିତ ମହାଶୟ ଏହି ପରିବାରରେ ନୀଳକଣ୍ଠ ଜନ୍ମ ହୋଇଥିବା ଅନୁମାନ କରନ୍ତି । ରାଜା ଜନାର୍ଦ୍ଦନ ଭଞ୍ଜ (୧୭୯୨-୧୮୩୧)ଙ୍କ ଦରବାରରେ ସେ ସଭା କବି ଥିଲେ । ତାହାଙ୍କ ଜନ୍ମଦିବସ ସଂପର୍କରେ କିଛି ଉଲ୍ଲେଖ ନାହିଁ । ରଚନା ଶୈଳୀ— ଗୌଡ଼ୀୟ ଶୈଳୀରେ ଏହି ଗ୍ରନ୍ଥରେ ପୃଷ୍ଠପୋଷକ ରାଜାଙ୍କ କୃତ ଯୁଦ୍ଧ ବର୍ଣ୍ଣନା କରାଯାଇଛି । ସେ କାଳରେ ରାଜାମାନେ ମାତୃଭୂମିର ସାହିତ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କ ରାଜତ୍ୱର ବିବରଣୀ ଲିପିବଦ୍ଧ କରିବାପାଇଁ କବିମାନଙ୍କୁ ନିଯୁକ୍ତ କରୁଥିଲେ । ଏଣୁ କବିମାନେ ଆପଣା ପୃଷ୍ଠପୋଷକ ରାଜାଙ୍କର ଗୌରବ ଓ ପଡ଼ୋଶୀ ରାଜାମାନଙ୍କୁ ନ୍ୟୂନକରି ଉଲ୍ଲେଖ କରୁଥିଲେ । ବିଭିନ୍ନ ପ୍ରକାର ରସ ପରିବେଷଣରେ ସେ ମାଘ କବିଙ୍କୁ ଅନୁସରଣ କରିଛନ୍ତି । ଭାଷାର ପ୍ରବାହ ଏହାର ଜୀବନ । ଅର୍ଥ ବୁଝି ନ ପାରିଲେ ବି ଶ୍ଳୋକ ଆବୃତ୍ତି ଯୋଗୁଁ ମଧ୍ୟ ପାଠକ ଆତ୍ମହରା ହୁଏ । ଅଳଙ୍କାର ଓ ଅନୁପ୍ରାସ ଏହି କୃତିର ଶୋଭା ବର୍ଦ୍ଧନ କରିଅଛି । ଏପରି ନୈସର୍ଗିକ ଶୋଭା ସୁଷମା ସହିତ ଆଦିବାସୀ ଜୀବନଧାରାର ବର୍ଣ୍ଣନା ଅନ୍ୟ କୌଣସି ସଂସ୍କୃତ କୃତିରେ ଦେଖାଯାଏ ନାହିଁ ।

ନାଟକର ସଂକ୍ଷିପ୍ତ ବିଷୟବସ୍ତୁ— ରମ୍ଭାଦି ଅପ୍ସରାଙ୍କ ସହ ଅସଦାଚରଣ ଯୋଗୁଁ କୁବେରଙ୍କଠାରୁ ଅଭିଶାପ ପାଇ ପ୍ରିୟମ୍ବଦ ଓ ଅନଙ୍ଗକଳେବର ନାମକ ଯକ୍ଷଦ୍ୱୟ ଏକବର୍ଷ ପାଇଁ ଭାରତର ତୀର୍ଥମାନଙ୍କ ଦର୍ଶନରେ ପାପ ପ୍ରକ୍ଷାଳନ ପାଇଁ ଧରାକୁ ଆସିଲେ । ପୂତ ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ ଗୋନାସିକା ଦର୍ଶନରେ ଅନଙ୍ଗକଳେବର ହୃଦୟରେ ଉଲ୍ଲାସ

Digitized by srujanika@gmail.com

ଜାତ ହେବା ଦେଖି ଏହାର କାରଣ ଜାଣିବା ପାଇଁ ଏଠାକୁ ପୂର୍ବରୁ ଅନେକଥର ଆସିଥିବା ପ୍ରିୟମ୍ବଦକୁ ପଚାରିଲା । ପ୍ରିୟମ୍ବଦ କହିଲା, "ଗଙ୍ଗାଦେବୀ ଏ ସ୍ଥଳରେ ବୈତରଣୀ ରୂପରେ ପ୍ରବାହିତା ।" ସେ ବିଷୟକୁ ବିଶଦ ଭାବରେ ବୁଝାଇଦେବାକୁ ଅନୁରୋଧ କରନ୍ତେ ପ୍ରିୟମ୍ବଦ କହିଲା, "ସୃଷ୍ଟିକର୍ତ୍ତା ବ୍ରହ୍ମା ବିରଜାକ୍ଷେତ୍ର ଯାଜପୁରଠାରେ ଯଜ୍ଞ କରିବାକୁ ମନ ବଳାଇ ଗଙ୍ଗାଦେବୀଙ୍କୁ ଏଠାକୁ ଆସିବାକୁ ପ୍ରାର୍ଥନା କଲେ । ଗଙ୍ଗା କେତେବେଳେ ଆସିବେ ପଚାରିବାରୁ ବ୍ରହ୍ମା କହିଲେ— ଯେତେବେଳେ ବାଦ୍ୟ ବଜାଯିବ । ଶବର (ଜୁଆଙ୍ଗ-ମାନେ)ମାନଙ୍କ ନୃତ୍ୟବେଳେ ବାଦ୍ୟ ଶବ୍ଦ ଶୁଣି ଏହା ବ୍ରହ୍ମାଙ୍କ ଆବାହନ ବାଦ୍ୟ ଭାବି ଗୋନାସିକାଠାରେ ଆବିର୍ଭୂତ ହେଲେ, ଗଙ୍ଗା ଦେବୀ ।

ଗଙ୍ଗାଦେବୀଙ୍କ ଧରାବତରଣ ସମ୍ବାଦ ପାଇ ଇନ୍ଦ୍ରାଦି ଦେବଗଣଙ୍କ ସହିତ ଯାଇ ଗୋନାସିକାଠାରେ ବ୍ରହ୍ମା ବ୍ରହ୍ମେଶ୍ୱର ନାମକ ଶିବଲିଙ୍ଗ ସ୍ଥାପନ କଲେ । ଗଙ୍ଗା ସନ୍ତୁଷ୍ଟ ହୋଇ ବ୍ରହ୍ମାଙ୍କ ପଛେ ପଛେ ଯଜ୍ଞସ୍ଥଳକୁ ବହିବାରେ ଲାଗିଲେ । ଗୋନାସିକାଠାରୁ ଯାଜପୁର ପର୍ଯ୍ୟନ୍ତ ପ୍ରତିକ୍ରୋଶରେ (ଦୁଇ ମାଇଲ ବ୍ୟବଧାନରେ) ଗୋଟିଏ ଲେଖାଏଁ ଶିବଲିଙ୍ଗ ପ୍ରତିଷ୍ଠା କଲେ ।"

ଏହା ଶୁଣି ଅନଙ୍ଗ କଳେବର ବୈତରଣୀଙ୍କୁ ପ୍ରଣାମ କଲେ ଓ ଦୁଇବନ୍ଧୁ ଦେବଦେବୀମାନଙ୍କୁ ପୂଜାକରି ଜୁଆଙ୍ଗ ବସ୍ତି ଦେଖିବାକୁ ଗଲେ । ସେମାନେ ଜୁଆଙ୍ଗ ଯୁବକ ଯୁବତୀମାନଙ୍କୁ ନାଚୁଥିବା ଦେଖିଲେ । ସ୍ୱାସ୍ଥ୍ୟବତୀ ଜୁଆଙ୍ଗ ରମଣୀମାନେ ପତ୍ରକୁ ବସ୍ତ୍ରଭାବେ ପିନ୍ଧି ଓ ଗୁଞ୍ଜାମାଳି ବେକରେ ପକାଇ ଖୁସିରେ ବୁଲୁଥା'ନ୍ତି । ଶିକାରୀ ଶବରମାନେ ସାଙ୍ଗରେ କୁକୁର ଧରି ଶିକାର ପଛରେ ଗୋଡ଼ାଇଛନ୍ତି । ଋଷିମାନେ ବଣର ଫଳମୂଳ ଖାଇ ଖୁସିରେ ବଞ୍ଚିଛନ୍ତି । ଏମାନଙ୍କୁ ଦେଖି ଯକ୍ଷଦ୍ୱୟଙ୍କର ମନରେ ଆନନ୍ଦ ଭରିଗଲା । ପ୍ରକୃତିର ସୌନ୍ଦର୍ଯ୍ୟରେ ଉତ୍‌ଫୁଲ୍ଲ ହେଲେ ।

କଥାପ୍ରସଙ୍ଗରେ ଅନଙ୍ଗ କଳେବର ଆମେ ଏବେ କେଉଁ ରାଜ୍ୟରେ ବୋଲି ପଚାରନ୍ତେ ପ୍ରିୟମ୍ବଦ କହିଲା— ଗୋନାସିକା କେଉଁଝରୀ ରାଜ୍ୟରେ । ଏହି ୩୦ ଯୋଜନ ପରିମିତ ଭୂମି ବିଶ୍ୱବିଖ୍ୟାତ ଭଞ୍ଜରାଜାମାନଙ୍କ ଶାସନରେ । କୁଷ୍ଠରୋଗହାରୀ ଭ୍ରମରମାରୀ କେବଳ ଏହିଠାରେ ମିଳେ । ଏହିପରି କଥା ହେଉଁ ହେଉଁ ସେମାନେ ପାହାଡ଼ରୁ ଓହ୍ଲାଇ ରାଜ୍ୟର ରାଜଧାନୀ ଆଡ଼କୁ ଗଲେ । ଶ୍ରୀ ଶ୍ରୀ ବଳଦେବଜୀଉଙ୍କ ବିରାଟ ମନ୍ଦିର ଓ ତା' ପାଖରେ ଗୋଟିଏ ଛୋଟ ମନ୍ଦିରରେ ତ୍ରିମୂର୍ତ୍ତି ଦେଖି ସେମାନେ ଦେବତାଙ୍କୁ ପ୍ରଣାମ କଲେ । ଏହି ମନ୍ଦିରର ନିର୍ମାତା କିଏ ବୋଲି ଅନଙ୍ଗ କଳେବର ପଚାରିଲା । ଏ ସଂକ୍ରାନ୍ତରେ ପ୍ରିୟମ୍ବଦ ଭଞ୍ଜରାଜବଂଶର ଏକ ସୁବିସ୍ତୃତ ତାଲିକା ଦେଲା । ଏ ବଡ଼ ମନ୍ଦିରର ନିର୍ମାତା ଲକ୍ଷ୍ମୀନାରାୟଣ ଭଞ୍ଜ । ବଳଭଦ୍ର ଭଞ୍ଜଙ୍କ ରାଜତ୍ୱରେ ବାମଣ୍ଡା ରାଜାଙ୍କ ସଙ୍ଗେ ହୋଇଥିବା ଯୁଦ୍ଧ ଓ କ୍ଷୁଦ୍ର ମନ୍ଦିର ନିର୍ମାଣର ବିଶଦ ବିବରଣୀ ଦେଲା ।

Digitized by srujanika@gmail.com

ମରହଟ୍ଟା ସୁବେଦାର ରାଜାରାମ ପଣ୍ଡିତ (୧୭୭୮-୮୨) ଓଡ଼ିଶାର ରାଜାମାନଙ୍କଠାରୁ କର ଆଦାୟ କାଳରେ ବାମଣ୍ଡାରାଜା ପ୍ରତାପରୁଦ୍ର ଦେବଙ୍କ ବିରୋଧରେ ଯୁଦ୍ଧ କଲା । ସେ ସମୟରେ ବାମଣ୍ଡା ରାଜା ବ୍ରାହ୍ମଣୀ ନଦୀ କୂଳରେ ବରକୋଟ୍ ଦୁର୍ଗରେ ରହୁଥିଲେ । ପ୍ରତାପରୁଦ୍ରଙ୍କ ପରେ ତାଙ୍କ ପୁତ୍ର ସୁଚ୍ଛଳ ଦେବ କକା ଯଦୁମଣିଙ୍କ କୁପରାମର୍ଶରେ ପଡ଼ି କେନ୍ଦୁଝର ରାଜା ବଳଭଦ୍ର ଭଞ୍ଜଙ୍କ ସଙ୍ଗେ ଯୁଦ୍ଧ କଲେ । ବଳଭଦ୍ରଙ୍କ ସାନଭାଇ ବାମଦେବଙ୍କ ବିବାହ ଉତ୍ସବକୁ କେନ୍ଦ୍ରକରି ଅପମାନିତ କରିଥିବାରୁ ଏ ଯୁଦ୍ଧ ହେଲା । ସ୍ଥାନୀୟ କିମ୍ବଦନ୍ତୀରେ ମଧ୍ୟ ସେହି କଥା ଶୁଣାଯାଏ ।

ବାମଣ୍ଡା ରାଜକନ୍ୟାଙ୍କ ସଙ୍ଗେ ବାମଦେବଙ୍କ ବିବାହ ସ୍ଥିର ହୋଇଥିଲା । ରାଜା ବଳଭଦ୍ର ଭଞ୍ଜ ସୀମାନ୍ତରେ ଯୁଦ୍ଧରେ ବ୍ୟସ୍ତ ଥିବାରୁ ନିର୍ଦ୍ଦିଷ୍ଟ ଦିବସରେ ବିବାହ ହୋଇପାରିଲା ନାହିଁ । ସେ ବର୍ଷ ଆଉ ଶୁଭଦିନ ନ ଥିବାରୁ ବାମଦେବ ଛୋଟିଆ ବରଯାତ୍ରୀଦଳ ସହ ବାମଣ୍ଡାକୁ ବିବାହ ପାଇଁ ଗଲେ । ଏହି ବରଯାତ୍ରୀଦଳକୁ ନାପସନ୍ଦ କରି କେହି ଜଣେ ବାମଦେବଙ୍କୁ ଶୁଣାଇବା ପରି ପଗ୍ଭରିଲା, "ଏ ଟୋକାଟିକୁ କେଉଁଠୁ ଗୋଟେଇ ଆଣିଛ କି ?" ବାମଣ୍ଡା ରାଜାଙ୍କ କକା ଯଦୁମଣି କହିଲେ, "ଏ ନିଆଶ୍ରୀ ଟୋକାକୁ ବାଟରୁ ଗୋଟେଇ ଆଣିଛୁ।" ବାମଦେବଙ୍କ ପରି ଜଣେ ବୀରପୁରୁଷଙ୍କ ପକ୍ଷେ ଏ ଅପମାନ ଅସହ୍ୟ ହେଲା । ସେ ତତ୍‌କ୍ଷଣାତ୍ ନବବଧୂକୁ ସଙ୍ଗରେ ଧରି କେନ୍ଦୁଝର ଫେରିଲେ ଓ ବଡ଼ଭାଇ ବଳଭଦ୍ର ଭଞ୍ଜଙ୍କୁ ସାକ୍ଷାତ କରି ଆମୂଳଚୂଳ ବୃତ୍ତାନ୍ତ ବର୍ଣ୍ଣନା କଲେ । ତାଙ୍କ ମୁଣ୍ଡରୁ ପଗଡ଼ି କାଢ଼ି ବଡ଼ଭାଇଙ୍କ ପାଦତଳେ ରଖି କହିଲେ, "ଏ ଅପମାନର ପ୍ରତଶୋଧ ନ ନେବା ପର୍ଯ୍ୟନ୍ତ ମୁଁ ପଗଡ଼ି ପିନ୍ଧିବି ନାହିଁ ।

ବଳଭଦ୍ର ସବୁକଥା ଶୁଣି ମୁଖ୍ୟ ଉପଦେଷ୍ଟା ବେବର୍ତ୍ତା (ବ୍ୟବହର୍ତ୍ତା) ସିନ୍ଧୁ ସାମନ୍ତରାଏଙ୍କୁ ଆଦେଶ ଦେଲେ କାଳବିଳମ୍ବ ନ କରି ସାମନ୍ତମାନଙ୍କୁ ସସୈନ୍ୟ ଉପସ୍ଥିତ ହେବାକୁ ଖବର ନେବାପାଇଁ । ଆଦେଶପ୍ରାପ୍ତି ମାତ୍ରେ ସୁକିନ୍ଦା, ଅମ୍ବେ ମଙ୍ଗରାଜ, ଢେଙ୍କା, ଦାସପୁର ମହାପାତ୍ର, କଣ୍ଟାଝରି, ପାଲଲହଡ଼ାର ପାଳରାଜା, ବାମନଘାଟି, ପଚ୍ଛିକୋଟ, ଆଦି ସାମନ୍ତମାନେ ଘୋଡ଼ସବାର ଓ ପାଇକସେନା ଘେନି ଉପସ୍ଥିତ ହେଲେ । ଏମାନଙ୍କ ବ୍ୟତୀତ ଗଦାଧରଭଞ୍ଜ, ବନ୍ଧୁ ସିଂହ, ଘନଶ୍ୟାମ ଦେବ, ଚନ୍ଦ୍ରଶେଖର, ରଘୁନାଥ ମହାପାତ୍ର, ବେର୍‌ହାଜାଳ, ଭଗବାନ ପଣ୍ଡିତ ଓ ମୋହନ ଦାସ ଆଦି ବଳଭଦ୍ରଙ୍କ ସେନାନାୟକମାନଙ୍କ ଅଧୀନରେ ଘୋଡ଼ସବାର, ପାଇକ, ଗୋଳନ୍ଦାଜ, ଓ ଧନୁକୀ ଆଦି ସେନାମାନଙ୍କୁ ନେଇ ବାରକୋଟ୍ ଆକ୍ରମଣ କଲେ । ଏ ସମ୍ବାଦ ପାଇ ବାମଣ୍ଡା ରାଜାଙ୍କ ସାନଭାଇ ମିଳାମିଶା ପ୍ରସ୍ତାବ ଆଣିଲେ । ମାତ୍ର ସୁଚ୍ଛଳ ଦେବ କୁପରାମର୍ଶ ପାଇଁ ଓ ଯଦୁମଣି ଯୁଦ୍ଧ ପାଇଁ ଉତ୍ସାହିତ କରିବାଯୋଗୁଁ ଯୁଦ୍ଧ କଲେ ଓ ଶେଷକୁ ପରାସ୍ତ ହେଲେ । ସମସ୍ତ ରକ୍ତପାତର ମୂଳସୂତ୍ର

Digitized by srujanika@gmail.com

କୁଚକ୍ରୀ ଯଦୁମଣି ବନ୍ଦୀ ହେଲେ । ଏହାହିଁ ଏହି ବାମଣ୍ଡା ଅଭିଯାନ ନାଟକର ବିଷୟବସ୍ତୁ । ଦ୍ୱିତୀୟ ଅଙ୍କର ୩୦ତମ ଶ୍ଳୋକଠାରୁ ଆରମ୍ଭ ହୋଇ ସପ୍ତମ ଅଙ୍କ ଶେଷ ପର୍ଯ୍ୟନ୍ତ ବଳଭଦ୍ରଙ୍କ ବୀରତ୍ୱପୂର୍ଣ୍ଣ କାହାଣୀରେ ଭରପୁର । ଶେଷରେ ପ୍ରିୟମ୍ବଦ କହିଲେ— ଏହି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ କ୍ଷୁଦ୍ର ମୂର୍ତ୍ତିଗୁଡ଼ିକ ଆଣି ଏହି କ୍ଷୁଦ୍ର ମନ୍ଦିରରେ ସ୍ଥାପନ କରିଛନ୍ତି ।

ତତ୍ପରେ କବିଙ୍କ ଦ୍ୱାରା ନାଟକୀୟ ଢଙ୍ଗରେ ବଳଭଦ୍ରଙ୍କ ପୁତ୍ର ଓ ଉତ୍ତରାଧିକାରୀ ଜନାର୍ଦ୍ଦନ ଭଞ୍ଜଙ୍କ କୀର୍ତ୍ତି ବର୍ଣ୍ଣିତ । ନାଟକ ଆକାରରେ ଲିଖିତ ହେଲେହେଁ ଏଥିରେ ଚମ୍ପୂପରି କେତେକ ଗଦ୍ୟ ଓ ପଦ୍ୟାତ୍ମକ ରଚନା ସ୍ଥାନ ପାଇଛି । କେତେକ ସ୍ଥଳରେ ଚମ୍ପୂଠାରୁ ମଧ୍ୟ ପାର୍ଥକ୍ୟ ରହିଛି । ଚମ୍ପୂରେ ବର୍ଣ୍ଣନା ଥାଏ; ମାତ୍ର ଏଥିରେ କବି ସେଥିପାଇଁ ଦୁଇଟି ଚରିତ୍ର ବ୍ୟବହାର କରିଛନ୍ତି । ଦଶଟି ଅଙ୍କରେ ଏ ନାଟକର ସମାପ୍ତି ଘଟିଛି । ପବିତ୍ର ବୈତରଣୀ ନଦୀ, ଗୋନାସିକା ପର୍ବତ, ଶାଳ, ଅଶ୍ୱତ୍ଥ, କପିତ୍ଥ, ଚୂତ, ପନସ, ନ୍ୟଗ୍ରୋଧ ଆଦି ବୃକ୍ଷରାଜି ଶୋଭିତ କେନ୍ଦୁଝରର ଶୋଭା ବର୍ଣ୍ଣନା, ଦେବୀ ତାରିଣୀଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରି କବି ନିଜ ପରିଚୟ ଦେଇ କହିଛନ୍ତି—

"ଗ୍ରାମସ୍ଥୋ ନରସିଂହଦେବ ନୃପତେଃ ଶ୍ରୀ ଦିବ୍ୟସିଂହଃ ସୁଧୀଃ
ଶ୍ରୀମଦ୍ ବତ୍ସ୍ୟକୁଲୋଦ୍ଭବଃ ସ ସୁଷୁବେ ଦେବୀ ସୁବର୍ଣ୍ଣା ଚ ଯ
ଦୁର୍ଗୋପାସକ ନୀଳକଣ୍ଠ କବିନା ତେନ ସ୍ୱଶକ୍ତ୍ୟାକୃତଃ
ନୂତ୍ନଂ ନାଟକରତ୍ନମେତଦନିଶଂ ବିଦ୍ୱନ୍ମୁଦେ ଜାୟତଂ ।"

— ୦ —

Digitized by srujanika@gmail.com

# ରାମଗାଥା

କେନ୍ଦୁଝର ରାଜା ୰ ଗୋବିନ୍ଦଚନ୍ଦ୍ର ଭଞ୍ଜଦେଓଙ୍କ ଲିଖିତ ରାମଗାଥା ପଣ୍ଡିତ ଆଗ୍ୟର୍ଯ୍ୟଙ୍କ ଦ୍ୱାରା ସମ୍ପାଦିତ ହୋଇ ୧୯୩୯ରେ 'କେନ୍ଦୁଝର ଗ୍ରନ୍ଥମାଳା'ରେ ପ୍ରକାଶିତ ହେଲା । ଭକ୍ତକବିଙ୍କର 'ଭକ୍ତବିନୋଦ' ଏକ ଉଚ୍ଚକୋଟୀର ରଚନା । ତାହାର ଶେଷାଂଶ ଭାବରେ ଚଉଦ ଅକ୍ଷରୀ ବୃତ୍ତରେ ସରଳ ଭାଷାରେ ରଚିତ ଏହି କୃତି ଗ୍ରହଣୀୟ । ଭକ୍ତବିନୋଦ ଗୋପିକା ମୁଖରେ କୁହାଇବା ପରି ଏହା ମଧ୍ୟ ସେହିପରି ଏକ ଗୋପୀ ମୁଖରେ କଥିତ । ଏଥିରେ ରାମଙ୍କ ପୂର୍ବବର୍ତ୍ତୀ ଅନ୍ୟାନ୍ୟ ଅବତାରମାନଙ୍କ ଚରିତ ଅତି ସଂକ୍ଷେପରେ ବିବୃତ । ଶ୍ରୀରାମଚନ୍ଦ୍ରଙ୍କ ଚରିତ ସୁବିସ୍ତୃତ ଭାବେ ବର୍ଣ୍ଣିତ ଥିବାରୁ ଏହାର ରାମଗାଥା ନାମକରଣ କରାଯାଇଛି । ଏଥିରେ ଶ୍ରୀରାମଙ୍କ ବାଲ୍ୟକାଳକୁ ବାଦଦେଇ ତାହାଙ୍କ ଅଭିଷେକଠାରୁ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ସମସ୍ତ ଘଟନା ବର୍ଣ୍ଣିତ । ଭକ୍ତକବିଙ୍କର ହୃଦୟୋଚ୍ଛ୍ୱାସ ଏଥିରେ ପ୍ରତିବିମ୍ବିତ ।

କାବ୍ୟ ଆରମ୍ଭରେ ଭଗବାନ୍ ବିଷ୍ଣୁଙ୍କର ଦଶାବତାର ଅବତାରଣା କରାଯାଇଛି । ଜଣେ ଗୋପୀ କହିଲା, ''ଶଙ୍ଖାସୁର ଦୈତ୍ୟ ବ୍ରହ୍ମାଙ୍କଠାରୁ ବେଦ ହରଣ କରି ଜଳରେ ପଶିବାରୁ ଶ୍ରୀକୃଷ୍ଣ ମତ୍ସ୍ୟରୂପ ଧରି ତାକୁ ନାଶକରି ବେଦ ଉଦ୍ଧାର କରି ବ୍ରହ୍ମାଙ୍କୁ ଦେଲେ ।

ପୁଣି କୂର୍ମରୂପ ଧରି ପୃଷ୍ଠରେ ମନ୍ଦରଗିରି ବହନ କରିଥିଲେ । ଦେବାସୁରଙ୍କ ଦ୍ୱାରା କ୍ଷୀରସାଗର ମନ୍ଥନ ହେଲା । ତହିଁରୁ ବିବିଧ ମହୌଷଧି ମିଳିଲା । କାଳକୂଟ ବିଷକୁ ତ୍ରିପୁରାରି ପାନ କଲେ । ବରାହ ରୂପ ଧରି ହିରଣ୍ୟାକ୍ଷ ଦୈତ୍ୟ ବିନାଶ କଲେ । ଦନ୍ତମୂଳରେ ଧରଣୀ ଧାରଣ କଲେ ।''

ହିରଣ୍ୟକଶିପୁ କବଳରୁ ପ୍ରହ୍ଲାଦର ରକ୍ଷା ପାଇଁ ନୃସିଂହ ରୂପ ଧାରଣ କଲେ । ''ଚହ ଚହ ଶବଦ ବଦନ ବିକରାଳ । ଲହ ଲହ ଜିହ୍ୱା ଗୋ ଭ୍ରମଇ ଅନ୍ତରାଳ । ଦାନ୍ତ ରଟମଟ ଗୋ ବିକଟ ଝଟଝଟ । ତ୍ରିଭୁବନ କମ୍ପିଲା ଶବଦ ଘଟଘଟ । ଲାଙ୍ଗୁଡ଼ ବିଘାତେ ଗୋ ପର୍ବତ ହୋଏ ଚୂରି । ଶିରେ କର ଦେଇ ଗୋ କମ୍ପଇ ବସୁନ୍ଧରୀ ।'' ତାଙ୍କର କୁଳିଶ କଠିନ ଦନ୍ତପନ୍ତି, ଚନ୍ଦ୍ର ଓ ସୂର୍ଯ୍ୟ ବେନି ଆଖି । ଅସୁରକୁ ଯୁଦ୍ଧ କରି ମାରିଲେ । ପ୍ରହ୍ଲାଦକୁ ବୈକୁଣ୍ଠରେ ବାସ ଦେଲେ ।

Digitized by srujanika@gmail.com

ଦେବତାଙ୍କ ଶତ୍ରୁ ବଳି ରାଜା ଯଜ୍ଞ କଲା କାଳରେ ବାମନ ରୂପରେ ହରି ଆସି ସତ୍ୟ କରାଇ ତିନିପାଦ ଭୂମି ଦାନ ମାଗି ତାକୁ ପାତାଳକୁ ଚ଼ପିଲେ । ପର୍ଶୁରାମ ଅବତାରରେ ମାତାଙ୍କୁ ମାରି ଏକୋଇଶ ବାର ପୃଥ୍ୱୀ ନିକ୍ଷତ୍ରୀୟ କଲେ ।

ରାମ ଅବତାରରେ ଦଶରଥ ସୁତ ଭାବେ ଜନ୍ମି ତାଡ଼କୀ ମାରି ମୁନିଙ୍କ ଯଜ୍ଞ ରକ୍ଷାକଲେ । ପାଷାଣୀ ଅହଲ୍ୟାର ଉଦ୍ଧାର, ଶିବଧନୁ ଭାଙ୍ଗି ସୀତାବିବାହ, ପର୍ଶୁରାମଙ୍କ ଦର୍ପ ଭଙ୍ଗ କରି ଅଯୋଧ୍ୟାରେ ଅଭିଷିକ୍ତ ହେବାକୁ ଗଲେ । ମନ୍ଥରାର ଷଡ଼ଯନ୍ତ୍ରରେ ବନବାସୀ ହେଲେ । ଏ ପର୍ଯ୍ୟନ୍ତ ସଂକ୍ଷେପରେ ଉଲ୍ଲେଖ କରିବା ପରେ ଶ୍ରୀରାମ ଚରିତ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଛି । ରାବଣର ସୀତା ଚ଼ୋରି, ରାବଣ ସହ ଯୁଦ୍ଧକରି ସୀତା ଉଦ୍ଧାର, ରାମାୟଣ ଯୁଦ୍ଧରେ ମୃତ ଋକ୍ଷ କପିଙ୍କୁ ଅମୃତ ସିଞ୍ଚି ପୁନର୍ଜୀବନ ଦାନ, ସୀତାଙ୍କ ସହ ଅଯୋଧ୍ୟାରେ ପ୍ରବେଶ ଓ ଅଭିଷେକ ବିଷୟ ଉଲ୍ଲିଖିତ । ବିଭୀଷଣ ଓ ସୁଗ୍ରୀବଙ୍କ ଆପଣା ରାଜ୍ୟକୁ ବସ୍ତ୍ରାଦି ଅଳଙ୍କାର ଉପଢୌକନ ସହ ପ୍ରସ୍ଥାନ । ଶେଷରେ କବିଙ୍କ ପ୍ରାର୍ଥନା—

"ରାମ ମୋର ପିତା ମାତା, ରାମ ମୋର ବନ୍ଧୁ<br>
ଦୁଃସହ ଦୁର୍ଗତି ତ୍ରାହି କର ଜଗବନ୍ଧୁ ।<br>
ଏ ମାୟା ଅନ୍ଧକାରରୁ ମୋତେ ପାରିକର ।<br>
ରାଜା ଗୋବିନ୍ଦାଇ ରାମ ଶରଣ ତୁମ୍ଭର ।"

— ୦ —

Digitized by srujanika@gmail.com

# ବଉଳା ଚରିତ

ରାଜା ୰ ଗୋବିନ୍ଦ ଚନ୍ଦ୍ର ଭଞ୍ଜଙ୍କ ପ୍ରଣୀତ ଏହି ଉପାଖ୍ୟାନ ପୁସ୍ତକଟି ପଣ୍ଡିତ ବାନାମ୍ବରଙ୍କ ଦ୍ୱାରା ସମ୍ପାଦିତ ଓ କେନ୍ଦୁଝର ଗ୍ରନ୍ଥମାଳାର ଚତୁର୍ଥ ପୁସ୍ତକ ରୂପେ ବଳଭଦ୍ର ନାରାୟଣ ଭଞ୍ଜଙ୍କ ଦ୍ୱାରା ୧୯୪୦ରେ ପ୍ରକାଶିତ ।

ଓଡ଼ିଶାରେ ଚାରଣସ୍ଥାନୀୟ ନାଥ ଯୋଗୀମାନେ ଏହି ଉପଖ୍ୟାନଟିକୁ ଗାନ କରି ଭିକ୍ଷା କରନ୍ତି । ଆଧୁନିକ କାଳରେ ଏହି ନୀତି ଓ ନିବୃତ୍ତିମାର୍ଗ ପ୍ରଚାରକ ଯୋଗୀମାନଙ୍କୁ ଅଳସୁଆ ଓ ନିଷ୍କର୍ମା ଆଖ୍ୟାଦେଇ ଅନାଦର କରାଯାଉଅଛି । ରାଜପୁତାନାର ଚାରଣମାନେ ଦେଶ ଓ ଜାତିର ବୀରରସାତ୍ମକ ଐତିହ୍ୟ ଗାନ କରି ଉତ୍ସାହ ଉଦ୍ଦୀପନାର ସ୍ରୋତ ରାଜପୁତ ହୃଦୟରେ ପ୍ରବାହିତ କରୁଥିଲେ, ସେହିପରି ଏ ରାଜ୍ୟରେ ନାଥମାନେ ବିଶିକେଶନ, ବଉଳାଚରିତ, ଲକ୍ଷ୍ମୀପୁରାଣ, ଗୋବିନ୍ଦ ଚନ୍ଦ୍ର ପ୍ରଭୃତି ତ୍ୟାଗ, ସତ୍ୟ, ଅହିଂସା, ସାମ୍ୟ, ମୈତ୍ରୀ, ସଦାଚାର ଓ ବୈରାଗ୍ୟମୟ ଉପାଖ୍ୟାନମାନ ଗାନ କରି ଉତ୍କଳର ଶାନ୍ତି ଓ ସେବା ଭାବର ବୈଶିଷ୍ଟ୍ୟ ପ୍ରଚାର କରୁଥିଲେ । ରାଜପୁତାନାର ଚାରଣଗୀତ ବିଶେଷତଃ ପୁରୁଷମାନଙ୍କ ପ୍ରତି ଉଦ୍ଦିଷ୍ଟ ଥିବାବେଳେ ଉତ୍କଳୀୟ ଯୋଗୀମାନଙ୍କ ଗାନ ପୁରବାଳାମାନଙ୍କ ପାଇଁ ଅଭିପ୍ରେତ ଥିଲା । ଶ୍ରୀ ଜଗନ୍ନାଥ ଓ ଶ୍ରୀବଳରାମ ଠାକୁରଙ୍କ ଉଦ୍ଦେଶ୍ୟରେ ଏହି ରଚନାଗୁଡ଼ିକ ପ୍ରାୟତଃ କବି ବଳରାମ ଦାସ, ଯଶୋବନ୍ତ ଦାସ ଆଦିଙ୍କ ଦ୍ୱାରା ରଚିତ ହୋଇ ସର୍ବତୋମୁଖୀ ଓ ସାର୍ବଜନୀନ ହୋଇପାରିଥିଲା । ଚକୁଳିଆପଣ୍ଡାମାନେ ଦାନ ପ୍ରଶଂସାତ୍ମକ ଗଦ୍ୟଗୀତିକା ଗାନ କରି ଭିକ୍ଷା ସଂଗ୍ରହ କଲାପରି ଏ କବିତା ରଚନା ପୂର୍ବରୁ ନାଥମାନେ ସେହିପରି କିଛି ଗଦ୍ୟଗୀତିକା ଗାଇ ଭିକ୍ଷା ମାଗୁଥିବେ ବୋଲି ପଣ୍ଡିତ୍‌ଜୀ ମତ ଦେଇଛନ୍ତି ।

ଆଗକାଳରେ ମୁଦ୍ରାଯନ୍ତ୍ର ବ୍ୟବହାର ନ ଥିବାରୁ ଏଗୁଡ଼ିକ ତୁଣ୍ଡରୁ ତୁଣ୍ଡକୁ ପ୍ରଚାରିତ ହେଉଥିଲା । ତେଣୁ ନାଥମାନେ ନୀତିଶିକ୍ଷକ ରୂପେ ଆଦର ଲାଭ କରୁଥିଲେ ।

ଓଡ଼ିଆରେ ତିନିଖଣ୍ଡି ବଉଳା ଉପାଖ୍ୟାନ ଦେଖାଯାଏ । ତନ୍ମଧ୍ୟରୁ ଜଗନ୍ନାଥ ଓ ବଳରାମଙ୍କ ପୁସ୍ତକର ନାମ ବଉଳା ଅଧ୍ୟାୟ ଓ ତୃତୀୟ ଖଣ୍ଡକ ରାଜା ଗୋବିନ୍ଦ ଭଞ୍ଜଙ୍କ ଲିଖିତ ବଉଳାଚରିତ । ଏହାର ମୂଳ କଥାବସ୍ତୁ ଇତିହାସ-ସମୁଚ୍ଚୟ ନାମକ ସଂସ୍କୃତ ପୁସ୍ତକରୁ ଗୃହୀତ ।

Digitized by srujanika@gmail.com

''ଇତିହାସେ ବଉଳା ବ୍ୟାଘ୍ର ସମ୍ବାଦ ବାଣୀ
ଭାଷାରେ ରାଜା ଗୋବିନ୍ଦ ପ୍ରକାଶିଲେ ଆଣି ।''

ବଳରାମଙ୍କ ପୁସ୍ତକରେ ଏହାର ମୂଳସୂତ୍ର ବିଷୟରେ କିଛି ଉଲ୍ଲେଖ ନାହିଁ । ବଉଳାର ପାଳକ, ସ୍ୱାମୀ ଓ ଦେଶର ନାମ ଏହିସବୁ ପୁସ୍ତକମାନଙ୍କରେ ଭିନ୍ନ ଭିନ୍ନ, ହେଲେହେଁ ସତ୍ୟ ଓ ଅହିଂସାର ପ୍ରଗ୍ୱର ସବୁରି ଲକ୍ଷ୍ୟ । ଏହି ଲକ୍ଷ୍ୟ ପ୍ରତିପାଦନ ପାଇଁ ଗୋବିନ୍ଦ ସପକ୍ଷ ଓ ବିପକ୍ଷ ଯୁକ୍ତି ଦର୍ଶାଇ ସତ୍ୟର ଜୟଗାନ କରିଛନ୍ତି । ଏତଦ୍ୱାରା ଅହିଂସା ନିଜେ ଆସିଯାଏ ।

ଏଥିରେ ପ୍ରଥମ ପ୍ରସୂତି ଧେନୁର ସନ୍ତାନବାତ୍ସଲ୍ୟ, ବାଳ ସନ୍ତାନର ମାତୃଭକ୍ତି, ପୁତ୍ରବାନ୍‌ର ଭାଗ୍ୟ, ଅପୁତ୍ରକର ଦୁଃଖ ଯେ କୌଣସି ଉପାୟରେ ଶରୀର ରକ୍ଷାକୁ ପରମ ଧର୍ମ ବୋଲି ମନେକରୁଥିବା ନୀତିଜ୍ଞମାନଙ୍କ ଯୁକ୍ତିକୁ ଉପକ୍ଷୋ କରି ବଉଳା ଧେନୁର ଦୃଢ଼ ସତ୍ୟାଗ୍ରହ, ତଦ୍‌ଫଳରେ ଚିରକ୍ରୂର ବ୍ୟାଘ୍ରର ପାଷାଣ-ପୁରୁଷ-ହୃଦୟର ଦ୍ରବୀଭାବ ଓ ଅହିଂସାଚରଣ ପ୍ରଭୃତି ମହନୀୟ ଭାବରାଜି ଅତି ସହଜ ଭାଷାରେ ବର୍ଣ୍ଣିତ ହୋଇଛି ।

ବ୍ୟାସଶିଷ୍ୟ ମହାଭାରତର ଭୀଷ୍ମଦେବ ଶରଶଯ୍ୟାରେ ଶାୟିତ ଥିବାବେଳେ ଯୁଧିଷ୍ଠିରଙ୍କୁ ଉପଦେଶ ଦେଇ ସତ୍ୟଫଳ ଲାଭ କରିଥିବା ବଉଳାଗାଈର ଚରିତ ଅବତାରଣା କରିଛନ୍ତି ।

ମଥୁରା ନଗ୍ରର ରାଜା ଚନ୍ଦ୍ରସେନ । ସେ ରାଜ୍ୟରେ ଜଣେ ବିପ୍ରର ବଉଳା ନାମରେ ଧେନୁଟିଏ ଥିଲା । ଗାଈଗୋଠରେ ବଉଳା ଯମୁନା ତୀରବର୍ତ୍ତୀ ଏକ ଅରଣ୍ୟକୁ ଚରିବାକୁ ଯାଇଥିଲା । ସେହି ଅରଣ୍ୟରେ ଭୟଙ୍କର ବ୍ୟାଘ୍ର ଥିବା ସ୍ଥାନରେ ଯାଇ ବଉଳା ପହଞ୍ଚିଲା । ବାଘ କହିଲା, ''ଆଜି ତୋତେ ମୁଁ ଖାଇବି ।'' ବଉଳା କହିଲା, ''ହେ କାଳରୂପୀ ବ୍ୟାଘ୍ର ! ତୋତେ ନମସ୍କାର । ତୋ ପାଖରେ ଯେଉଁ ପ୍ରାଣୀ ପହଞ୍ଚେ, ସେ କେବେ ଜୀବନ ଘେନି ଫେରେ ନାହିଁ । ତେବେ ମୋର ଜୀବନ ପାଇଁ ଶୋଚନା ନାହିଁ । ମାତ୍ର ମୋର ଗୋଟିଏ ବାଛୁରୀ ଅଛି । ସେ ଅତି ବାଳୁତ । କେବଳ ମୋର କ୍ଷୀର ଆହାର କରି ବଞ୍ଚେ । ମୁଁ ଥରେ ମାତ୍ର ଯାଇ ତାକୁ ସ୍ତନ୍ୟ ପିଆଇ ପୁଣି ତୋ ପାଖକୁ ଫେରିବି ।'' ବାଘ କହିଲା, ''ଗୋଠକୁ ଗଲେ ଆଉ କି ଫେରିବୁ ?'' ବଉଳା ବହୁତ ପ୍ରମାଣ ଦେଇ ଫେରିଆସିବାକୁ କହି ସତ୍ୟ କଲା । ଘରକୁ ଯାଇ ବାଛୁରୀକୁ ''ମନଇଚ୍ଛା କ୍ଷୀରପାନ କର ଓ ଆଜି ହେଉଛି ମୋର ଜୀବନର ଶେଷ ଦିନ'' କହିଲା । ବାଛୁରୀ କହିଲା, ''ମା, ମୁଁ ମଧ୍ୟ ତୋ ସଙ୍ଗେ ଯିବି । ତୋ ସହିତ ମୋତେ ମଧ୍ୟ ବାଘ ଖାଉ ।'' ପୁତ୍ରକୁ ବୁଝାଇ ତାହାର ସଙ୍ଗିନୀମାନେ କହିଲେ, ''ଏପରି ଆଶ୍ଚର୍ଯ୍ୟ କଥା ତ କେବେ ଶୁଣା ନ ଥିଲା । ବଉଳା ! ତୁ ଆଉ ବଣକୁ ଯା'ନା । ଦୁର୍ଗମ ଘୋର ବିପତ୍ତି ନାଶ ପାଇଁ ସିନା ପ୍ରାଣୀ ସତ୍ୟ କରେ ।'' ସତ୍ୟବାଦୀ ଋଷିମାନେ କହିଛନ୍ତି— ''ପ୍ରାଣତ୍ୟାଗ, ବିବାହ, ବିବାଦ, ଧନନାଶ କାଳରେ ମିଥ୍ୟା କହିଲେ ପାପ

Digitized by srujanika@gmail.com

ଲାଗେ ନାହିଁ । ସତ୍ୟ ପାଳି ବଳି ରାଜା ପାତାଳକୁ ଗଲା, ଅଗସ୍ତି ମୁନିଙ୍କଠାରେ ସତ୍ୟ କରି ବିନ୍ଧ୍ୟଗିରି ମୁଣ୍ଡ ନୁଆଁଇ ରହିଲା, ଏଣୁ ମୋର ବ୍ୟାଘ୍ର ମୁଖକୁ ଯିବା ନିଶ୍ଚିତ ବୋଲି ବଉଳା ଉତ୍ତର ଦେଲା । "ସତ୍ୟ ଥିଲେ ପ୍ରାଣୀର ମୋକ୍ଷ, ନଚେତ୍ ନର୍କ ଗତି । ତେଣୁ ସମସ୍ତେ ମୋର ଅରକ୍ଷ ବାଳକଟିକୁ ରକ୍ଷାକରିବ ।" ଏହାପରେ ବଉଳା ଅରଣ୍ୟକୁ ଫେରି ସେହି ତୀକ୍ଷ୍ଣଦନ୍ତ ଭୟଙ୍କର ବଦନ ବ୍ୟାଘ୍ରର ସମ୍ମୁଖବର୍ତ୍ତୀ ହେଲା । କହିଲା, "ଆ ବାଘ ! ମୋତେ ଖାଇ ଆଜି ଦିନକର କ୍ଷୁଧା ନିବାରଣ କର ।" ବାଘ କହିଲା, "ବଉଳା ତୁ ଧନ୍ୟ ! ସତ୍ୟ ବଚନ ରଖିବୁ । ସତ୍ୟରେ ଦେବତାମାନେ ତୃପ୍ତ ହୁଅନ୍ତି, ପିତୃଲୋକେ କଲ୍ୟାଣ କରନ୍ତି ।" ବଉଳାର ସତ୍ୟରକ୍ଷାରେ ବ୍ୟାଘ୍ର ମନରେ ପରିବର୍ତ୍ତନ ଆସିଲା । ସେ କହିଲା— ପର୍ବତରୁ ଡେଇଁ କିମ୍ବା ଅଗ୍ନିରେ ପଶି ମୋର ଜୀବନ ନାଶିବି । ବଉଳା ! ତୁ ସତ୍ୟବାଦୀନୀ । ପୂର୍ବଜନ୍ମରେ ଦେବତାଙ୍କ ଶାପ ପାଇ ଜ୍ଞାନ ନାଶ ହେତୁ ମୁଁ ହିଂସାଚରଣ କରୁଥିଲି । ତୋହପରି ସାଧୁସଙ୍ଗ ଓ ଉପଦେଶ ପାଇ ଏବେ ମୋର ପୂର୍ବଜ୍ଞାନ ସ୍ମରଣ ହେଲା । ସେ ଯୋଗ ଆଶ୍ରାକରି ପରଂବ୍ରହ୍ମରେ ମତି ରଖି ପ୍ରାଣତ୍ୟାଗ କରି ସ୍ୱର୍ଗକୁ ଚାଲିଗଲା । ଏହାପରେ ବଉଳା ଗୋଠକୁ ଫେରି ଖୁସିରେ ରହିଲା । ବଉଳା ଚରିତରୁ ସତ୍ୟପାଳନର ପୁରସ୍କାର ଲାଭ ବିଷୟ ଭୀଷ୍ମଦେବ ଯୁଧିଷ୍ଠିରଙ୍କୁ ବୁଝାଇ ଏହି ଚରିତ ଶ୍ରବଣର ଫଳଶ୍ରୁତି ବିଷୟ ପ୍ରକାଶ କରିଛନ୍ତି । ବହୁ ନୀତି ଶ୍ଳୋକର ଅନୁବାଦ ଦେଇ କବି ଗୋବିନ୍ଦ ଭଞ୍ଜ ଏହାକୁ ଅତ୍ୟନ୍ତ ଉପାଦେୟ କରିଛନ୍ତି ।

— ୦ —

Digitized by srujanika@gmail.com

# କାଳିଦାସ ସ୍ମୃତି-ପୁଷ୍ପାଞ୍ଜଳି

୧୧।୧୧।୧୯୫୯ ମସିହାରେ ମହାକବି କାଳିଦାସ ସ୍ମୃତି-ପୁଷ୍ପାଞ୍ଜଳି ନାମରେ ନଅଟି ପୁଷ୍ପରେ ଅଞ୍ଜଳି ପ୍ରଦାନ କରିଥିଲେ ଓଡ଼ିଶା ସାହିତ୍ୟ ଏକାଡ଼େମୀ । ତହିଁରେ ସର୍ବପଣ୍ଡିତ ଆନନ୍ଦ ମିଶ୍ର (ପୁରୀ) ବାସୁଦେବ ମିଶ୍ର (ପୁରୀ) ରାଧାମୋହନ ବକ୍ସି, (ଚିକିଟୀ) ଅଧ୍ୟାପକ ଜୟକୃଷ୍ଣ ମିଶ୍ର ନାରାୟଣ ମହାପାତ୍ର (ପୁରୀ), ବାନାମ୍ବର ଆଚାର୍ଯ୍ୟ (କଟକ), ରମାନାଥ ମିଶ୍ର (ବାଲେଶ୍ୱର) ଓ ସଦାଶିବ ଦାଶ (ବଲାଙ୍ଗିର) କାଳିଦାସ ସମାରୋହ ପାଳନ ଅବସରରେ ପୁଷ୍ପଗୁଡ଼ିକ ପ୍ରସ୍ଫୁଟିତ କରାଇଥିଲେ ଏବଂ ସେଗୁଡ଼ିକ ଚୟନ କରିଥିଲେ ଦକ୍ଷ ମାଳାକାର ତଦାନୀନ୍ତନ ଏକାଡ଼େମୀର ସଂପାଦକ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା । ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ଉତ୍ସବରେ ଏ ପୁସ୍ତକଟି ଉନ୍ମୋଚିତ ହୋଇଥିଲା । ବିଦ୍ୟାଭୂଷଣ ପଣ୍ଡିତ ବାନାମ୍ବରଙ୍କ ଲିଖିତ ସ୍ମୃତି-ପୁଷ୍ପଟି ଏଠାରେ ଉଦ୍ଧୃତ ହେଲା ।

## ସପ୍ତମ ପୁଷ୍ପମ୍

(୧)

ଦେଶଂ କଂ ବା କବିକୁଳମଣେ ! ଜନ୍ମନା ଭାଗ୍ୟଭା
ଚକ୍ରେ ଶୁକ୍ରୋସ୍ମିତମଥ ଭବାନିତ୍ୟମାଲୋଚୟନ୍ତି ।
କୋଽଥୋ ବ୍ୟର୍ଥଶ୍ରମ ବିରସୟା ଚିନ୍ତୟା ବା ତସ୍ୟା ନଃ
ଯସ୍ମିନ୍ କସ୍ମିନ୍ ଭବତୁ ଚ ଭବାନ୍ ଭୂଷଣଂ ଭାରତସ୍ୟ ।।

(୨)

ଅକୈଳାସାଲ୍ଲବଣ ଜଳଧେ ନୀଳବେଳାପ୍ରଦେଶଂ
ଯାବଦ୍ ଗ୍ରାମାଦ୍ରି ନଗରନଦୀ କାନନାଦୀନି ଯାନି ।
ସର୍ବାଣି ତ୍ୱଦ୍ୱଚନ ସୁଧୟା ପ୍ରୋକ୍ଷିତାନ୍ୟେନ ସଦ୍ୟଃ
କାଳେ ଯାତୋଽପି ଚ ବହୁତିଥେ ବିଶ୍ୱମୁଲ୍ଲାସୟନ୍ତି ।।

(୩)

ବାଲାଂ ଯକ୍ଷୀଂ ମଳିନବସନାଂ କାନ୍ତ ଚିନ୍ତାତିତାନ୍ତା—
ମନ୍ତ୍ୟାମିନ୍ଦୋସ୍ତନୁମିବ କଳାଂ ପୌରହୂତ୍ୟାଂ ବିଶୀର୍ଣ୍ଣାମ୍ ।
ଯାମତ୍ୟାକ୍ଷୀଃ କଥିତ ହୃଦୟାଂ ଚକ୍ରବାକୀମିବୈକା—
ମାକ୍ରନ୍ଦାସ୍ୟାନୁରଣ ନମହୋ ଶ୍ରୁୟତୋଽଦ୍ୟାପି ତସ୍ୟାଃ ।।

Digitized by srujanika@gmail.com

(୪)

ପ୍ରାଲେୟାଦ୍ରେଃ ସରସି ଶିଶିରେ ବହ୍ନିମଧ୍ୟେ ଚ ଗ୍ରୀଷ୍ମେ,
ତମ୍ବୋଲମ୍ବୋଧରମୟଦିନେ ସ୍ଥଣ୍ଡିଲେ ୟା ଶୟାନା ।
ତେପେ ଭୂୟଃ କନକ କମଲ ସ୍ପର୍ଦ୍ଧି ରୂପଂ ବିଶୋଷ୍ୟ
ସା କିଂ ନ ସ୍ୟାଦ୍ ସ୍ମରହର ଶରୀରାର୍ଦ୍ଧହାରେ ସମର୍ଥା ।।

(୫)

କାମଂ ବାମାଚରଣ ନିପୁଣଂ ରୂପମାବାବଲମ୍ବଂ
ହିତ୍ୱା ତପ୍ତ୍ୱା ତପ ଇହ କଥଂ ଲଭ୍ୟତେ ପ୍ରେମ ପୁଣ୍ୟମ୍ ।
ଲୀଲାବ୍ୟାଜାଦିତି ଗିରିସୁତାଶୂଲିନୋର୍ବର୍ଣ୍ଣିତଂ ଯଦ୍
ବ୍ୟାମୁଗ୍ଧାନାଂ ବିହିତମଧୁନା ତତ୍ତୁ ଦିଗ୍ଦର୍ଶନଂ ନଃ ।।

(୬)

ରାଜ୍ୟଂ ପ୍ରାଜ୍ୟଂ ସ୍ୱଜନକକୃତେ ତ୍ୟାଜମେବଂ ପ୍ରଜାଃ ସ୍ମାଃ
ନିତ୍ୟଂ ସତ୍ୟବ୍ରତପରତୟା ଶାସକୈ ରଞ୍ଜନୀୟାଃ ।
ସର୍ବାବସ୍ଥାସ୍ୱପି ପତିରିହାଭ୍ୟର୍ଥନୀୟଃ ସତ୍ୟଭି—
ରିତ୍ୟେତତେ ରସମୟଗିରାଂ ସାରସାରୋ ବିଗ୍ରହଃ ।।

(୭)

''ପ୍ରବର୍ତ୍ତତାଂ ପ୍ରକୃତିହିତାୟ ପାର୍ଥିବଃ
ସରସ୍ୱତୀ ଶ୍ରୁତିମହତୀ ମହୀୟତାମ୍ ।''
ଇଦଂ ବଚେଽପ୍ୟାଂବତଥତାଂ ବ୍ରଜତ୍ୱଥୋ
ପୁନର୍ଭବୀ ଭବତୁ ଚ ତେଽତ୍ର ଭାରତେ ।।

*ପଣ୍ଡିତ ଶ୍ରୀ ବାନାମ୍ବରାଚାର୍ଯ୍ୟ ଶର୍ମା, କଟକ*

— ୦ —

Digitized by srujanika@gmail.com

# ରସକଳ୍ପଦ୍ରୁମ

ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କ ପ୍ରଣୀତ ରସକଳ୍ପଦ୍ରୁମ ପୁସ୍ତକ ବିଦ୍ୟାଭୂଷଣଙ୍କ ଦ୍ୱାରା ସମ୍ପାଦିତ ହୋଇ ୧୯୬୫ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶ ପାଇଥିଲା । ରସବାଦ ଅଧ୍ୟୟନ ନିମନ୍ତେ ଏହା ଅତ୍ୟନ୍ତ ଉପାଦେୟ । ଅଳଙ୍କାର ଶାସ୍ତ୍ରରେ 'ରସ'ର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ପ୍ରକାଶକୀୟରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ତତ୍କାଳୀନ ସଂପାଦକ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଏହାକୁ ସୁବିଖ୍ୟାତ ପଣ୍ଡିତ ବିଶ୍ୱନାଥ କବିରାଜଙ୍କ ସାହିତ୍ୟ ଦର୍ପଣର ଏକ ସହଚର ଭାବରେ ଅଭିହିତ କରିଛନ୍ତି ।

ଉପୋଦ୍‌ଘାତରେ ପଣ୍ଡିତଜୀ କହିଛନ୍ତି— କେନ୍ଦୁଝରରେ ସଂସ୍କୃତ ବିଦ୍ୟାଳୟର ପ୍ରଧାନାଚାର୍ଯ୍ୟ ଥିବା କାଳରେ ୧୯୩୨ ଖ୍ରୀଷ୍ଟାବ୍ଦରେ ରାଜଦରବାରର ଗ୍ରନ୍ଥାଗାରରେ ଜୀର୍ଣ୍ଣ ପୋଥି ସ୍ତୂପ ମଧ୍ୟରୁ ଏହି ରତ୍ନଟିକୁ ସେ ଆବିଷ୍କାର କରିଥିଲେ । ଗ୍ରନ୍ଥର ନାମକରଣ ସଂପର୍କରେ ଗ୍ରନ୍ଥକର୍ତ୍ତାଙ୍କ ଲେଖାରୁ ଉଦ୍ଧାର କରିଛନ୍ତି ।

''ବିଭାବାଦ୍ୟୈର୍ଦଳୈରେଭିଃ ପଞ୍ଚଭିଃ ପଲ୍ଲବଃ ସ୍ଫୁଟଃ ।
ସର୍ବେଷ୍ୱେବ ରସେଷ୍ୱେବଂ କଳ୍ପଦ୍ରୁତ୍ୱଂ ପ୍ରକଳ୍ପତେ ।।

ଏଥିରେ ରସର ବିସ୍ତରଧାରା ପ୍ରାଚୀନ ମତକୁ ଅନୁସରଣ କରି ରସର ପ୍ରାଧାନ୍ୟ ''ଶ୍ରୁତଂ ସୁଖବିଶେଷ କୃଦି'ତି ଭାବରେ ପ୍ରଦର୍ଶିତ ହୋଇଅଛି ।

ବିଭିନ୍ନ ଆଭ୍ୟନ୍ତରୀଣ ଓ ବାହ୍ୟ ପ୍ରମାଣ ଆଲୋଚନା କରି ଏ ଗ୍ରନ୍ଥ ଖ୍ରୀ : ୧୬୨୫— ୧୬୬୫ ମଧ୍ୟରେ (ଗଜପତି ହରିକୃଷ୍ଣ ଓ ବୀରକିଶୋରଙ୍କ ରାଜତ୍ୱରେ) ରଚିତ ହୋଇଥିବା ସ୍ଥିର କରିଛନ୍ତି ।

ଏହି ଗ୍ରନ୍ଥରେ କୃଷ୍ଣଦେବ ରାୟ (ବିଜୟନଗର ରାଜା ୧୪୦୬-୧୫୩୦), ମୁକୁନ୍ଦଦେବ (ଉତ୍କଳର ସ୍ୱାଧୀନ ନରପତି ୧୫୫୬-୬୮) ଗୋବିନ୍ଦ ବିଦ୍ୟାଧର (୧୫୩୪-୧୫୪୬) ରାମଚନ୍ଦ୍ର ଦେବ (୧୫୬୨-୧୬୦୪), ଜଲ୍ଲାଲୁଦ୍ଦିନ (ମୋଗଲ ସମ୍ରାଟ ଆକବରଙ୍କ ନାମାନ୍ତର, ରାଜତ୍ୱକାଳ-୧୫୫୬-୧୬୦୫), ମାନସିଂହ (ଆକବରଙ୍କ ସେନାପତି) ଆଦି ଐତିହାସିକ ନାମମାନଙ୍କର ସୂଚନା ରହିଛି । ଏତଦ୍‌ବ୍ୟତୀତ ଅଭିନନ୍ଦଃ

Digitized by srujanika@gmail.com

ବାବୁକଃ, ମୁରାରି ମିଶ୍ର, ଗୋବର୍ଦ୍ଧନ, ମମ୍ମଟ, ପକ୍ଷଧର, ଦଣ୍ଡୀ, ଜୀବଦାସ, କବିଚନ୍ଦ୍ର, ସରୋଜାକ୍ଷୀ ଭଟ୍ଟାଚାର୍ଯ୍ୟ, ଭୋଜରାଜ, କବିକୋକିଳ, କୃଷ୍ଣାନନ୍ଦ, ଭାନୁଦତ୍ତ, ରୂପଗୋସ୍ୱାମୀ ଓ କେଶବ ମିଶ୍ର ଆଦି କବିମାନଙ୍କର ନାମ ମିଳୁଅଛି । ଗ୍ରନ୍ଥ ଦଶମି ପଲ୍ଲବ ପଞ୍ଚମ ଦଳରେ ଶେଷ ହୋଇ ବିଭିନ୍ନ ପ୍ରକାର ରସ, ବିଭାବ, ଆନୁଭାବ ଓ ବ୍ୟଭିଚାରୀଭାବ ଆଦିର ଆଲୋଚନାରେ ପୂର୍ଣ୍ଣ ହୋଇଅଛି ।

— ୦ —

Digitized by srujanika@gmail.com

# ସଙ୍ଗୀତ ନାରାୟଣ

ଓଡ଼ିଶୀ ନୃତ୍ୟ ଓ ସଂଗୀତର ମୌଳିକତା ପ୍ରତିପାଦନ ପାଇଁ ପାରଳାଖେମୁଣ୍ଡି ମହାରାଜା ଗଜପତି ନାରାୟଣ ଦେବ (ଖ୍ରୀ: ୧୭୧୮ — ୧୭୬୭)ଙ୍କ କୃତ 'ସଙ୍ଗୀତ ନାରାୟଣ' ଗ୍ରନ୍ଥଟି ପଣ୍ଡିତଜୀଙ୍କ ଦ୍ୱାରା ସଂପାଦିତ ହୋଇ ୧୯୬୬ ମାର୍ଚ୍ଚ ପହିଲାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲା ।

ଆଦିତାଳ, ପଡ଼ିତାଳ, ନିସାରିତାଳ, ମଠା, ବଡ଼ଝମ୍ପା, ରୂପକ, ଦୁଆଡ଼ି ଓ ଛକ ତାଳ ଆଦିର ଉଲ୍ଲେଖ ଥିବାରୁ ଏ ଗ୍ରନ୍ଥ ଓଡ଼ିଶୀ ସଂଗୀତର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିବାରେ ଏକ ପ୍ରମାଣିକ ଗ୍ରନ୍ଥ ।

ସାତଟି ସ୍ୱର ସା, ରି, ଗ, ମ, ପ, ଧ ଓ ନି, ମୟୂର, ଗୃତକ, ଛାଗ, କ୍ରୌଞ୍ଚ, କୋକିଳ, ଦର୍ଦ୍ଦୁର ଓ ଗଜଠାରୁ ଏହି ସପ୍ତସ୍ୱର ଉଦ୍ଭୁତ ବୋଲି ବର୍ଣ୍ଣିତ ।

ମଙ୍ଗଳାଚରଣ ଭାବେ ପ୍ରଥମ ପରିଚ୍ଛେଦରେ କବି ଏକ ସୁନ୍ଦର ଶ୍ଳୋକ ଅବତାରଣା କରିଛନ୍ତି ।

''ନୀଳାଦ୍ରିକନ୍ଦରାନନ୍ଦି ମନ୍ଦରାଳୟ ବନ୍ଦିତମ୍
ବନ୍ଦେ ବନ୍ଦାଗ୍ର-ମନ୍ଦାରମିନ୍ଦିରାମନ୍ଦିରଂ ମହଃ ।

ପ୍ରବୃତ୍ତ ତାଳଂ କରତାଳିକା ଭିରାଭୋରିକାଣାଂ କଳବେଣୁଗୀତୟ ନୃତ୍ୟନ୍ତମତ୍ୟନ୍ତ ମୁଦିତହାସଂ ରାସଂ ଭଜନ୍ତଂ ହରିମନ୍ତରୀତେ ।

ସଙ୍ଗୀତ ଉତ୍ପତ୍ତି ସଂପର୍କରେ କହନ୍ତି—

ପୁରା ଚତୁର୍ଣ୍ଣାଂ ବେଦାନାଂ ସାରମାକୃଷ୍ୟ ପଦ୍ମଭୂଃ
ଏବଂ ତୁ ପଞ୍ଚମଂ ବେଦଂ ସଙ୍ଗୀତାଖ୍ୟମକଳ୍ପୟତ୍ ।
ତୋଡ଼ୀ ରାଗ ସମ୍ବନ୍ଧେ କହନ୍ତି,
ମଧ୍ୟମାଂଶ ଗ୍ରହନ୍ୟାସା ତୋଡ଼ିକା ଶୁଦ୍ଧଷାଡ଼ବାତ୍ ।
ଜାତା ମଧ୍ୟାହ୍ନ ସମୟେ ଗେୟା ଶୃଙ୍ଗାରବୀରୟୋଃ ।

Digitized by srujanika@gmail.com

ଓଡ଼ିଶୀ ସଂଗୀତର ଶାସ୍ତ୍ରୀୟତା ପ୍ରତିପାଦନ ପାଇଁ ଏ ଗ୍ରନ୍ଥ ଓଡ଼ିଶାର ସଙ୍ଗୀତଜ୍ଞମାନଙ୍କୁ ଯଥେଷ୍ଟ ସହାୟକ ହେବ । ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ପଦ୍ଧତିଠାରୁ ଆମର ରାଗମାନଙ୍କ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ ପାଇଁ ନାରାୟଣଙ୍କ କୃତି ଏକ ପ୍ରମାଣିକ ଗ୍ରନ୍ଥରୂପେ ବ୍ୟବହାର କରାଯାଇପାରେ । କାରଣ ଅଷ୍ଟାଦଶ ଶତାବ୍ଦୀରେ ଏ ଗ୍ରନ୍ଥ ରଚିତ ହୋଇଥିବାରୁ ତା' ଉପରେ ପ୍ରତିବେଶୀମାନଙ୍କର ପ୍ରଭାବ ପଡ଼ି ନଥିବା ସମ୍ଭାବନା । ଏଣୁ ମୌଳିକ ଗ୍ରନ୍ଥଭାବରେ ଏ ଗ୍ରନ୍ଥ ଆମର ନୃତ୍ୟ ଓ ସଙ୍ଗୀତର ବୈଶିଷ୍ଟ୍ୟ ପ୍ରଦର୍ଶନ କରିବାକୁ ସମର୍ଥ ଥିବାରୁ ସେହି ଗ୍ରନ୍ଥକର୍ତ୍ତା ଓ ଗ୍ରନ୍ଥର ସଂପାଦକ ଉଭୟେ ଉତ୍କଳବାସୀଙ୍କର ଧନ୍ୟବାଦାର୍ହ ।

— ୦ —

Digitized by srujanika@gmail.com

# ସଙ୍ଗୀତ ମୁକ୍ତାବଳୀ

ପଣ୍ଡିତଜୀଙ୍କ ସମ୍ପାଦିତ ଏକ ବିରଳ ଗ୍ରନ୍ଥ ସଙ୍ଗୀତ ମୁକ୍ତାବଳୀ । ୧୯୫୫ ମସିହାରେ ଏହା ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ହୋଇଥିଲା ।ଏହି ଗ୍ରନ୍ଥଟିକୁ ପଣ୍ଡିତଜୀ କେନ୍ଦୁଝରଗଡ଼ ନିବାସୀ ଶ୍ରୀ ବୈଷ୍ଣବଚରଣ ପଟ୍ଟନାୟକଙ୍କ ଗ୍ରନ୍ଥାଗାରରୁ ପାଇଥିଲେ । ପୁଷ୍ପିକାରେ ଲିଖିତ ଅଛି— ଇତି ଶ୍ରୀମଦ୍ ବୀରାଧିବୀରବର ନୃପତି ଚୂଡ଼ାମଣି ଶ୍ରୀ ଗୋପୀନାଥ ଭଞ୍ଜ ରାଜକୁମାର ଶ୍ରୀହରିଚନ୍ଦନ ବିରଚିତା ସଙ୍ଗୀତ ମୁକ୍ତାବଳୀ ସମାପ୍ତ ।ବୀର ଶ୍ରୀ ରାମଚନ୍ଦ୍ରଦେବ ନୃପତେରେ କୋନ ବିଂଶତ୍ୟଙ୍କେ ବୃଶ୍ଚିକସ୍ୟ ସପ୍ତମଦିବସେ ମହାରାଜାଧିରାଜ ଶ୍ରୀ ବିଶ୍ୱେଶ୍ୱର ଭଞ୍ଜ ମହାରାଜ ପଠନାର୍ଥଂ ଦାମୋଦର ବେଦବ୍ରହ୍ମଣା ଲିଖିତମିଦଂ ପୁସ୍ତକଂ ସମାପ୍ତଂ ।

ଶ୍ରୀ ବିଶ୍ୱେଶ୍ୱର ଭଞ୍ଜଦେବ ମହାରାଜଙ୍କ ପଠନାର୍ଥେ ଶ୍ରୀ ହରିଚନ୍ଦନଙ୍କ କୃତ ସଙ୍ଗୀତ ମୁକ୍ତାବଳୀ ଗ୍ରନ୍ଥ ଲିଖିତ ହୋଇଥିଲା । ଗ୍ରନ୍ଥକର୍ତ୍ତା ହରିଚନ୍ଦନ ଥିଲେ କନିକାରାଜ ଗୋପୀନାଥ ଭଞ୍ଜଙ୍କ ପୁତ୍ର । ଇତିହାସରୁ ଜଣାଯାଏ— ଗୋପୀନାଥ ଭଞ୍ଜ ଖ୍ରୀଷ୍ଟୀୟ ୧୫୫୨ ଅବ୍ଦରେ କନିକାରେ ସିଂହାସନାରୂଢ଼ ହୋଇଥିଲେ ।ତାହାଙ୍କ ପୁତ୍ର ଶ୍ରୀ ହରିଚନ୍ଦନ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ନବମ ଦଶକରେ ଏହି ଗ୍ରନ୍ଥ ରଚନା କରିଥିବା ଅନୁମିତ ହୁଏ ।ଯବନ ଆକ୍ରମଣ ଓ ମୁକୁନ୍ଦଦେବଙ୍କ ମୃତ୍ୟୁ ଯୋଗୁଁ ସେତେବେଳେ ଉତ୍କଳର ସ୍ୱାଧୀନତା ଅସ୍ତମିତ ହୋଇଥିଲା । ଦେଶସାରା ଯବନ ଉପଦ୍ରୁତ ।ଗ୍ରନ୍ଥକାର ସୂଚନା ଦେଇଛନ୍ତି, ''ସ୍ୱୀୟାଂ ମହୀଂ ଯମନ (ଯବନ) ଜାଳମହାବ୍ଧିମଗ୍ନାଂ, ବାଢ଼ଂ ବରାହ ଇବ ଯଃ ସହସୋଦ୍ଧାର ।'' ଅନ୍ୟତ୍ର ଗ୍ରନ୍ଥ ମଧ୍ୟରେ ହରିନାୟକଙ୍କ ନାମ ଅଛି ।ସେ କର୍ଣ୍ଣାଟକବାସୀ 'ସଙ୍ଗୀତସାର'ର ଲେଖକଙ୍କ ସମସାମୟିକ ବା ତତ୍‌ପୂର୍ବବର୍ତ୍ତୀ ଥିବା A.H. Strangway ଙ୍କ Masic of Hindustan ପୁସ୍ତକରେ ଲିଖିତ ଅଛି ।ତହିଁରେ ସଙ୍ଗୀତ ନାରାୟଣର ନାମ ମଧ୍ୟ ଦେଖାଯାଏ । ପୁରୁଷୋତ୍ତମ ମିଶ୍ର ନାରାୟଣ ଦେବ ଏହିଭଳି ଦୁଇଟି ଗ୍ରନ୍ଥ ରଚନା କରିଥିବା ଜଣାଯାଏ ।ସେହି ଉତ୍କଳବାସୀ ପଣ୍ଡିତଙ୍କ ସମୟ ୧୭୦୩—୧୭୯୫ ବୋଲି Strangway ସ୍ଥିର କରିଛନ୍ତି । ଗୋପୀନାଥ ଭଞ୍ଜଙ୍କଠାରୁ ରାଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜଙ୍କ ପର୍ଯ୍ୟନ୍ତ ୨୧ ପୁରୁଷ ରାଜପଣ କରିଛନ୍ତି । ସଙ୍ଗୀତ ଶାସ୍ତ୍ର ସଂପର୍କରେ ଏହାହିଁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ ପ୍ରଥମ ଗ୍ରନ୍ଥ ।ଗ୍ରନ୍ଥଟି ଚାରି ଭାଗରେ ବିଭକ୍ତ ।

**ପ୍ରଥମ ଗ୍ରଥନମ୍—** ମଙ୍ଗଳାଚରଣ, କବିବଂଶ ପରିଚୟ, ସଙ୍ଗୀତର ପ୍ରୟୋଜନ, ସଙ୍ଗୀତୋତ୍ପତ୍ତି, ଏହାର ପ୍ରଶସ୍ତି, ସଂପ୍ରଦାୟଶୁଦ୍ଧି, ସଙ୍ଗୀତର ସ୍ୱରୂପ, ସଙ୍ଗୀତ ବିଭାଗ, ନାଦ,

Digitized by srujanika@gmail.com

ନାଦୋତ୍ପତ୍ତି ପ୍ରକାର, ନାଦଭେଦ, ଅନାହତ ନାଦର ବ୍ରହ୍ମୈକ୍ୟ, ଆହତଭେଦ, ଶ୍ରୁତିଃ ସ୍ୱରମାତର, ଶ୍ରୁତିମାନଙ୍କ ଦେବତା, ସ୍ୱର ଓ ସେମାନଙ୍କ ନାମ, ସ୍ୱରଭେଦ, ଷଡ଼ଜ ସ୍ୱର, ଋଷଭ ସ୍ୱର, ଗାନ୍ଧାର, ମଧ୍ୟମ, ପଞ୍ଚମ, ନିଷାଦ ଆଦି ସ୍ୱର, ସ୍ୱରମାନଙ୍କର ଧ୍ୱନିସାମ୍ୟ । ସେମାନଙ୍କ ବାଦ୍ୟାଦି ଭେଦ, ଗ୍ରହାଦିଭେଦ, ଗ୍ରହାଂଶ ଓ ଅନ୍ୟ ସ୍ୱରମାନଙ୍କ ଲକ୍ଷଣ, ଷଡ଼ଜ ଆଦି ଗ୍ରାମ ନିର୍ମାଣ, ମୂର୍ଚ୍ଛନା ଲକ୍ଷଣ, ଷଡ଼ଜାଦି ଗ୍ରାମ ମୂର୍ଚ୍ଛନା ଲକ୍ଷଣ, ମୂର୍ଚ୍ଛନାର ପ୍ରୟୋଜନ-ଗାନ୍ଧାର ଗ୍ରାମ ମୂର୍ଚ୍ଛନା ସ୍ୱର୍ଗରେ ପ୍ରଚଳିତ ଥିବାରୁ କେବଳ (୧)-ବୈଷ୍ଣବୀ (୨) ଖେଚରୀ (୩) ବରା (୪) ନାଦା (୫) ବତୀ (୬)ବିଶାଳା ଓ (୭) ବିଚିତ୍ରା ଆଦି ନାମଗୁଡ଼ିକ ଦିଆଯାଇଛି ।

**ଦ୍ୱିତୀୟ ଗ୍ରଥନ**— ଧାତୁଲକ୍ଷଣ, ମାତୁଲକ୍ଷଣ, ରାଗଲକ୍ଷଣ, ରାଗୋତ୍ପତ୍ତି ପ୍ରକାର, ଷଟ୍ ପୁଂରାଗ ନାମ, ବସନ୍ତରାଗ ଲକ୍ଷଣମୂର୍ତ୍ତି, ଭୈରବରାଗ, ମେଘରାଗ, ନଟନାରାୟଣ, ଶ୍ରୀରାଗ ଓ ସ୍ତ୍ରୀରାଗ, ଦେଶଭେଦରେ ରାଗମାନଙ୍କ ଭେଦ, ଆଦି ପ୍ରଦତ୍ତ ।

**ତୃତୀୟ ଗ୍ରଥନ**— ଷାଡ଼ବରାଗ ନାମ ଓ ଲକ୍ଷଣ, ଔଡ଼ବ ରାଗ ନାମ ଓ ଲକ୍ଷଣ, ସଂକୀର୍ଣ୍ଣ-ରାଗ, ଗଣବିବେକ କଥା କୁହାଯାଇଛି । ତାଳ ଶବ୍ଦର ବ୍ୟୁତ୍ପତ୍ତି ସମ୍ବନ୍ଧେ—

'ତ'କାର ଇଶୋ ଗିରିଜା 'ଳ'କାର—
ସ୍ତାଳସ୍ତତଃ ସ୍ୟାଚ୍ଛିବଶକ୍ତି ଯୋଗାତ୍,
ତଳେସ୍ତୁ ଧାତୋର୍ଘଦ୍ଵିବେହ ତାଳ—
ସ୍ତାଲୋଃଥବା ସ୍ୟାତ୍ତଳୟୋସ୍ତୁ ଯୋଗାତ୍ ।"

**ତାଳ ନିରୂପଣ**— ଶିବ ସଂହିତା ଓ ସଂଗୀତସାର ଗ୍ରନ୍ଥରେ ତାଳ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ଯାହା ଲିଖିତ ଅଛି, ତା' ଅର୍ଥ, 'ତ' ବର୍ଣ୍ଣ ଅର୍ଥ ଶିବ ଓ ଳ ବର୍ଣ୍ଣର ଅର୍ଥ 'ଶକ୍ତି' । ଏହି ଶିବ ଓ ଶକ୍ତିରୂପ 'ତ' ଓ 'ଳ' ବର୍ଣ୍ଣର ଯୋଗରେ 'ତାଳ' ଶବ୍ଦର ଉତ୍ପତ୍ତି ହୋଇଛି ।

**ଚତୁର୍ଥ ଗ୍ରଥନ**— ଗୀତବିଭାଗ, ନିବଦ୍ଧଲକ୍ଷଣ, ଶୁଦ୍ଧଲକ୍ଷଣ, ଆଳାପ ଲକ୍ଷଣ,ଧାତୁଲକ୍ଷଣ ଭେଦ, ଉଦ୍‌ଗ୍ରାହାଦି ଲକ୍ଷଣ, ପ୍ରବନ୍ଧାଙ୍ଗାଦି ଲକ୍ଷଣ, ତାଳଭେଦ, ପ୍ରବନ୍ଧମାନଙ୍କ ଜାତି, ଶୁଦ୍ଧଚ୍ଛାୟାଲ୍‌ଗକ୍ଷୁଦ୍ରାଣାଂ ଲକ୍ଷଣ, ଶୁଦ୍ରଗୀତଭେଦ, ପାଞ୍ଚାଳୀ ଲକ୍ଷଣ ଗୀତର ଦେବ୍ୟାଦି ଭେଦ, ଗୀତଗୁଣ, ଗ୍ରହଲକ୍ଷଣ, ଅନାଗତାଦିମାନଙ୍କ ଲକ୍ଷଣ ଉଦାହରଣ, ଖଣ୍ଡ, ଯତିଲକ୍ଷଣ, ମାନ ଲକ୍ଷଣ, ଗୀତଗୁଣଦୋଷ, ଅନିବଦ୍ଧଲକ୍ଷଣ, ଗାୟକର ଗୁଣ, ଗାୟକ ଦୋଷ, ବାଦ୍ୟଲକ୍ଷଣ ଭେଦ, ଓ ତା'ର ପ୍ରକରଣାଦି ବର୍ଣ୍ଣିତ ।

## ସଙ୍ଗୀତ ମୁକ୍ତାବଳୀରେ ଉଦ୍ଧୃତ ଗ୍ରନ୍ଥମାନଙ୍କ ନାମ

| | | |
|---|---|---|
| ୧। ଭରତ ନାଟ୍ୟଶାସ୍ତ୍ର | ୨। ବିଷ୍ଣୁପୁରାଣ | ୩। ଶିବସଂହିତା |
| ୪। କୋହଳୀୟ | ୫। ନାରଦ ସଂହିତା | ୬। ସଙ୍ଗୀତ କୌମୁଦୀ |
| ୭। ଗୀତ ପ୍ରକାଶଃ | ୮। ସଙ୍ଗୀତସାରଃ (ହରିନାୟକ) | ୯। ବ୍ରହ୍ମସଂହିତା |

Digitized by srujanika@gmail.com

୧୦। ମତଙ୍ଗତନ୍ତ୍ରମ୍ ୧୧। ସଙ୍ଗୀତରତ୍ନମାଳା (ମମ୍ମଟାଚାର୍ଯ୍ୟ)
୧୨। କଳାଙ୍କୁରନିବନ୍ଧଃ ୧୩। ପଞ୍ଚମସାର ସଂହିତା ୧୪। ରାଗବିବେକଃ
୧୫। ସଂଗୀତ ଚନ୍ଦ୍ରିକା ୧୬। ସଙ୍ଗୀତନାରାୟଣମ୍ ୧୭। ବାଦ୍ମୟ ବିବେକଃ
୧୮। ଶିବବିନୋଦ / ପ୍ରବନ୍ଧ (ଉତ୍କଳଭାଷାଗ୍ରନ୍ଥ) ୧୯। ସଙ୍ଗୀତ ଦାମୋଦରଃ
୨୦। ଗୀତଗୋବିନ୍ଦମ୍ ।

ସଙ୍ଗୀତର ପୂର୍ବାଚାର୍ଯ୍ୟ ଭାବରେ ବିଷ୍ଣୁ, ଶିବ, ବ୍ରହ୍ମା, ଦୁର୍ଗା, ନାରଦ, ଭରତ, ରାବଣ, ରମ୍ଭା, ହନୁମାନ୍, ବାୟୁ, କୋହଳ, କାଶ୍ୟପ, ହାହା, ହୁହୁ, ନନ୍ଦୀ ଓ ସରସ୍ୱତୀଙ୍କ ନାମ ଉଲ୍ଲେଖ କରିଛନ୍ତି ।

ମାର୍ଗୀ ଓ ଦେଶୀ ଭେଦରେ ସଂଗୀତ ଦୁଇପ୍ରକାର । ମାର୍ଗୀ ସଙ୍ଗୀତ ସ୍ୱର୍ଗରେ ଓ ଦେଶୀ ସଂଗୀତ ମର୍ତ୍ତ୍ୟରେ ପ୍ରଚଳିତ ।

ଶିବସଂହିତା ଅନୁସାରେ ଯେଉଁମାନେ ତିନିଲୋକବାସୀଙ୍କ ହୃଦୟକୁ ରାଗରଞ୍ଜିତ କରନ୍ତି, ସେମାନେ ରାଗ ବୋଲି କଥିତ । ସେହି ରାଗଗୁଡ଼ିକୁ ରାସକ୍ରୀଡ଼ା ଅନୁରକ୍ତ ଗୋପୀମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ ଗାନ କରିଥିବାରୁ ସେମାନଙ୍କ ସଂଖ୍ୟା ଅନୁସାରେ ରାଗ ସଂଖ୍ୟା ୧୬ ହଜାର ।

୧୬ଶ ଶତାବ୍ଦୀର ଏହି ଗ୍ରନ୍ଥଟିର ସଂସ୍କୃତ ଶ୍ଳୋକ ସହିତ ଓଡ଼ିଆ ଅର୍ଥ ଦିଆଯାଇ ସଂଗୀତ ଶାସ୍ତ୍ରର ମୌଳିକ ତତ୍ତ୍ୱ ଆଲୋଚିତ ହୋଇଥିବାରୁ ଏହାର ବୈଶିଷ୍ଟ୍ୟ ରହିଅଛି ଓ ଓଡ଼ିଶୀ ସଂଗୀତର ଶାସ୍ତ୍ରୀୟତା ପ୍ରମାଣ କରିବା ନିମିତ୍ତ ଏଥିରେ ଭୂରି ଭୂରି ଉପାଦାନ ରହିଅଛି ।

ଏହି ଗ୍ରନ୍ଥର ସଂପାଦନାକାଳରେ ପଣ୍ଡିତ ବାନାମ୍ବର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟର ଅବତରଣା କରିଛନ୍ତି । ଦଣ୍ଡିଆଦି ପଣ୍ଡିତମାନେ ପ୍ରାକୃତ କାବ୍ୟମାନଙ୍କରେ ସ୍କନ୍ଧ ସଂଜ୍ଞା ଉଲ୍ଲେଖ କରିଥିବା ଦୃଷ୍ଟ ହୁଏ । ଉତ୍କଳଭାଷାରେ 'ଛାନ୍ଦ' ଶବ୍ଦ ଏହି ଅର୍ଥରେ ବ୍ୟବହୃତ । କ୍ଷୁଦ୍ରଗୀତ ଲକ୍ଷଣରେ 'ସ୍କନ୍ଧସମନ୍ୱିତାଃ' ଇତ୍ୟାଦି ସ୍କନ୍ଧଶବ୍ଦର ପରିଚ୍ଛେଦ ଅର୍ଥରେ ପ୍ରତାପରୁଦ୍ରୀୟ ଯଶୋଭୂଷଣ ଟୀକାରେ ଦେଖାଯାଏ । ରାଗ ଓ ତାଳ ନିର୍ଦ୍ଦେଶରୁ ଅଙ୍ଗ, ପ୍ରବନ୍ଧ ଜାତ ହୋଇ ସେଗୁଡ଼ିକୁ 'ତାରାବଳୀ' କୁହାଯାଏ । କାଳିଦାସଙ୍କ ରଘୁବଂଶରେ ଉଦାହୃତ 'ଜୟ' ମାଘଙ୍କ ଶିଶୁପାଳ ବଧରେ 'ଭୋଗାବଳୀ' । ଏହିପରି ପ୍ରତିପଦର ଆଦ୍ୟରେ 'କୋଇଲି' ପଦର ଆବୃତ୍ତି ଆମ ଓଡ଼ିଆରେ ଅଛି । ସଙ୍ଗୀତ ରତ୍ନାକରରେ 'ଓବୀ' ଓ 'ଲୋଲୀ'ରୁ 'କୋଇଲି'ର ସୃଷ୍ଟି ବୋଲି ପଣ୍ଡିତଜୀଙ୍କ ମତ ।

- ସମାପ୍ତ -

— ୦ —

Digitized by srujanika@gmail.com

# କୃତଜ୍ଞତା ସ୍ୱୀକାର

ଓଡ଼ିଶା ସାହିତ୍ୟ ଏକାଡେମୀ

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ

କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର

କନିକା ଗ୍ରନ୍ଥାଗାର, ରେଭେନ୍‌ସା ସ୍ୱୟଂଶାସିତ ମହାବିଦ୍ୟାଳୟ, କଟକ

ନଳିନୀ ଗ୍ରନ୍ଥାଗାର, ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

ଅଧ୍ୟାପକ ରାଜକିଶୋର ମିଶ୍ର ଓ ଶ୍ରୀମତୀ ରେଣୁକା ମିଶ୍ର

ଶ୍ରୀ ଶ୍ରୀନିବାସ ଉଦ୍‌ଗାତା

ଶ୍ରୀ ବିଭୁତିଭୂଷଣ ଆଗ୍ରର୍ଯ୍ୟ

ଡାକ୍ତର ବିକ୍ରମ ଦାସ

ଡକ୍ଟର ରାମଚନ୍ଦ୍ର ନାୟକ, ଶ୍ରୀ ଭରତ ଚନ୍ଦ୍ର ଦାଶ (କେନ୍ଦୁଝର)

Digitized by srujanika@gmail.com